# ସାରଳା ରତ୍ନଭଣ୍ଡାର
# ରସସାଗର

(ଓଡ଼ିଆ ପ୍ରବାଦ ଓ ଢଗ ଢମାଳି)



ବିନୋଦବିହାରୀ ଦାସ

# ସାରଳା ରତ୍ନଭଣ୍ଡାର

# ରସସାଗର

## (ସପ୍ତମ ଖଣ୍ଡ)

ଅଭିମତ

ପଦ୍ମଶ୍ରୀ ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକ

ଭୁବନେଶ୍ୱର

ସଙ୍କଳୟିତା

ବିନୋଦବିହାରୀ ଦାସ

# ସାରଳା ରତ୍ନଭଣ୍ଡାର ରସସାଗର (ସପ୍ତମ ଖଣ୍ଡ)

**SARALA RATNABHANDAR RASASAGAR (7th. Volume)**

***ଉପଦେଷ୍ଟା, ପୃଷ୍ଠପୋଷକ, ସ୍ମାରକ ଓ ନିର୍ଦ୍ଦେଶକ :***

# ମା' ସାରଳା


| | | |
|---|---|---|
| ସଙ୍କଳୟିତା | : | ବିନୋଦବିହାରୀ ଦାସ |
| ପ୍ରକାଶକ, ସର୍ବସ୍ୱତ୍ୱାଧିକାରୀ © | : | ବିପିନବିହାରୀ ଏଜୁକେସନାଲ ଆଣ୍ଡ ପବ୍ଲିକ ଚେରିଟେବୁଲ ଟ୍ରଷ୍ଟ, ବାଗଲପୁର ପୋଷ୍ଟ-ଅଠାନ୍ତର-୭୫୨୧୦୨ |
| ଡ଼ି.ଟି.ପି. | : | ଦତ୍ତ କମ୍ପ୍ୟୁଟର୍ସ, ପ୍ରୁଫ୍‌ରୋଡ଼, ବାଲେଶ୍ୱର-୭୫୬୦୦୧ |
| ମୁଦ୍ରାକର | : | ରାମକୃଷ୍ଣ ପ୍ରିଣ୍ଟର୍ସ, ୬/ବି. ରମାନାଥ ମଜୁମଦାର ଷ୍ଟ୍ରିଟ୍ କଲିକତା - ୯ |
| ପ୍ରଚ୍ଛଦଶିଳ୍ପୀ | : | ସୁଧୀର କୁମାର ଲେଙ୍କା ୯, ଷ୍ଟେସନ ସ୍କୋୟାର, ଭୁବନେଶ୍ୱର |
| ପ୍ରଥମ ପ୍ରକାଶନ | : | ତା୨୪-୧୧-୦୫ରିଖ (ପ୍ରଥମାଷ୍ଟମୀ) |
| ମୂଲ୍ୟ | : | ଟ ୧୦୦.୦୦ (ଏକ ଶତ ଟଙ୍କା) |

## ପୁସ୍ତକ ପ୍ରାପ୍ତିସ୍ଥାନ

**ସୁନୀଲ ଦତ୍ତ (ପ୍ରକାଶକ ଓ ପୁସ୍ତକ ବିକ୍ରେତା)**

ପ୍ରୁଫ୍‌ରୋଡ଼, ପଢୁଆଁ ପଦା, ପୋ-ବାଲେଶ୍ୱର-୭୫୬୦୦୧, ଫୋନ-୨୬୨୩୭୨

ମୋବାଇଲ-୯୪୩୭୦୬୨୩୭୨

**ପଦ୍ମାଳୟା**

୩୧/ଏ, ଜନପଥ, ୟୁନିଟ - ୩

ଭୁବନେଶ୍ୱର (ଫୋନ - ୨୫୩୧୦୧୫)

**ଦି. ଲ. (The Law)**

ନିମଚଉଡ଼ି, କଟକ-୨

(ଫୋନ - ୨୬୨୦୭୬୮)

# ସାରଳା ରତ୍ନଭଣ୍ଡାର
# ରସସାଗର
## (ସପ୍ତମ ଖଣ୍ଡ)

ଉଦ୍‌ବେଳିତ ମହାସିନ୍ଧୁ : ତରଙ୍ଗର ମଧୁର ଝଙ୍କାର

ପ୍ରଫେସର ଡକ୍ଟର ସଂଘମିତ୍ରା ମିଶ୍ର
ଭୁବନେଶ୍ୱର

ସଙ୍କଳୟିତା
ବିନୋଦବିହାରୀ ଦାସ

# ସାରଳା ରତ୍ନଭଣ୍ଡାର ରସସାଗର (ସପ୍ତମ ଖଣ୍ଡ)

## ଅଂଶୀଦାର ବୃନ୍ଦ

| | |
|---|---|
| ପୁଥି-ପୁଞ୍ଜି ଓ ପ୍ରତ୍ନତତ୍ତ୍ୱ ନିର୍ଦ୍ଦେଶକ | : ଗୋପାଳ ପ୍ରସାଦ ନନ୍ଦ,<br>ଅବସରପ୍ରାପ୍ତ ମୁଖ୍ୟ ଆୟକର କମିଶନର, ଓଡ଼ିଶା ଓ<br>ପୁଥି-ପୁଞ୍ଜି, ପ୍ରତ୍ନତତ୍ତ୍ୱ ଗବେଷକ । |
| ସମ୍ପାଦନା-ନିର୍ଦ୍ଦେଶକ | : ମହେଶ୍ୱର ମୂଳିଆ,<br>ବରିଷ୍ଠ ସାମ୍ବାଦିକ ଓ ସୁସାହିତ୍ୟିକ |
| ମୁଖ୍ୟ-ସମ୍ପାଦକ | : ଡକ୍ଟର ହରିଶ୍ଚନ୍ଦ୍ର ବେହେରା,<br>ଅଧ୍ୟାପକ, ଫକୀରମୋହନ କଲେଜ୍, ବାଲେଶ୍ୱର |
| ସହକାରୀ | : କିଶୋରୀମୋହନ ସାମନ୍ତରାୟ,<br>ଶିକ୍ଷକ ଓ ସୁସାହିତ୍ୟିକ |
| ସଂଗ୍ରାହକ | : ଝରଣାରାଣୀ ଦାସ, ଆଡ଼ଭୋକେଟ୍ |
| ସହାୟକ | : ଡାକ୍ତର କୃଷ୍ଣା ଦାସ, ଏମ.ଡ଼ି.<br>ଅବସରପ୍ରାପ୍ତ ଯୁଗ୍ମନିର୍ଦ୍ଦେଶକ, ସ୍ୱାସ୍ଥ୍ୟ ବିଭାଗ, ଓଡ଼ିଶା |
| ବ୍ୟବସ୍ଥାପକ | : ଚକ୍ରଧର ପ୍ରଧାନ, ଆଡ଼ଭୋକେଟ |
| ବ୍ୟବସାୟିକ ପରାମର୍ଶଦାତା | : ବନଓ୍ୱାରିଲାଲ ଅଗ୍ରଓ୍ୱାଲ, ମରଚେଣ୍ଟ୍ |
| ଅଲଙ୍କରଣ | : ଚନ୍ଦ୍ରଶେଖର ପାତ୍ର |
| ତତ୍ତ୍ୱାବଧାରକ | : ସୁନୀଲ ଦତ୍ତ |



# ଉତ୍ସର୍ଗ

ପିତାଙ୍କ ମୃତ୍ୟୁ ଅନ୍ତେ - ୧୯୫୪ରେ ଆଇନ୍ ପରୀକ୍ଷାରେ ପାସ୍ କରି କଟକ ସହରରେ ବାତରାୟଣଙ୍କ ଭଳି ବୁଲୁଥିବାବେଳେ ବକ୍ସିବଜାର ଛକରେ ଅକସ୍ମାତ୍ ସେଲ୍ସ୍‌ଟାକ୍ସ ଇନ୍‌ସପେକ୍ଟର **ଶ୍ରୀଯୁକ୍ତ କ୍ଷେତ୍ରମୋହନ ମହାନ୍ତି** ଓରଫ **ଭଂକୁଦାଦାଙ୍କ** ସଙ୍ଗେ ଭେଟ ହୋଇଥିଲା । ତାଙ୍କରି ଅନୁକମ୍ପାରୁ ମୁଁ ଆଇନ୍‌ଜୀବୀ ବୃତ୍ତିରେ ଦାଖଲ ହୋଇ ନିଜର ହତଶ୍ରୀ ପରିବାରକୁ ସୁପ୍ରତିଷ୍ଠିତ କରିବାରେ ସମର୍ଥ ହୋଇପାରିଛି ।

ସେଇ ଦେବତୁଲ୍ୟ ବ୍ୟକ୍ତିଙ୍କ ସ୍ମୃତିରେ **ସାରଳା ରତ୍ନଭଣ୍ଡାର ରସସାଗର** ଗ୍ରନ୍ଥର ୭ମ ଖଣ୍ଡ ବିନମ୍ରତାର ସହ ଉତ୍ସର୍ଗ କରୁଛି ।

**-ସଙ୍କଳୟିତା**

# ସୂଚୀ ପତ୍ର

# -ମଙ୍ଗଳାଚରଣ-

## ସାରଳା ମା'ଙ୍କୁ ବନ୍ଦନା

### (୧)

କାହିଁକି କରୁଣା ଊଣା
ଏ ଛୋକାର (=ବେହିଆ) ତୋର କିଣା ।
ଜନମଧ୍ୟେ ନୁହେଁ ଜଣା
ଅକାରଣେ ହେଲି ବଣା
ମାର (=ମୃତ୍ୟୁ) ଶରେ ହଜିଗଲା ଜ୍ଞାନ ।
ଦିଅ ଆହେ ଦରଶନ
ଯାଉ ମୋ ଦୁର୍ଦ୍ଦଶାମାନ ।
ସତ୍ୟ କରୁଅଛି ଘେନ,
ତବ ମଧୁର ବଦନ
ନ ଦେଖିଲେ ଯିବ ମୋ ଜୀବନ ।
ଏବେ ହେଲେ ଦୟାକର
ପାଶେ ପାଶେ ରୁହ ମୋର
ନ କରିବ ଅଭିମାନ
କରୁଥିବି ତବ ଜୟ ଗାନ
କରି ମକରନ୍ଦ ପାନ ।
ତୋର ଆଜ୍ଞାରେ ମା'ଗୋ କରିବି
**ରସ ସାଗର** ମନ୍ଥନ ।

### (୨)

ଯେତେ ଅପବାଦ ଯେବେ ହେଲା ହେଉ
ଯେ ଯାହା ବୋଲିବ ପଛେ ବୋଲୁଥାଉ ।
ଲଜ୍ଜାରେ ମୋ ନାହିଁ ଭୀତି
ବଜାରେ ବୁଲିବା ଜାତି ।
ହଜାର ଦୁଆରେ ବୁଦ୍ଧି ବିକି ଯାଉଁ ।
ପାଟକ ଜାତି ସହଜେ
ହାଟକୁ ଗଲେ କି ଲାଜେ,

ହାଟ ବସାଇଣ ଦାଣ୍ଡେ
ଢ଼ଟାଚାର କରି ତୁଣ୍ଡେ
ବଟାତ (=କଳଙ୍କ) ଲଗାଇ ନ ପାରେ ଆଉ ।
ମୋ ଅନ୍ତର ଭାବେ ଭଲେ,
ଅପବାଦ ହେଉ ହେଲେ
**ସାରଳା ମା'ଙ୍କ ଚରଣେ ମୋ ଚିତ୍ତ ଥାଉ ।**

## (୩)

## ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କୁ ବନ୍ଦନା

ମିତ କିଏ ସେ ଗୋ
ମୋ ମନ ରହିଲା ଲାଖି
ଭାଲୁଣୀ ପରାୟେ କାଳିଆ ମୁହଁକୁ
ଚାଲୁଣି ପରାୟେ ଆଖି ।
ପଣ୍ଡା ରନ୍ଧାଭାତ ତିଅଣକୁ ଯେବେ
ଆଖିରେ ଦିଅଇ ଦେଖି
ଭଣ୍ଡାରି ବହନ୍ତି ବ୍ରାହ୍ମଣେ ନେଇଣ
ତାହାକୁ ଦିଅନ୍ତି ଚାଖି ।
ନିରତେ (=ସର୍ବଦା) ପୁରତେ (=ଆଗରେ) ବସିଛି ଯାହାର
ଦିଗୁଣ ଶାଗୁଣା ପକ୍ଷୀ
ଲୋକମାନେ ତାର ପାଦେ ପଡୁଥାନ୍ତି
କେଉଁ ଗୁଣ ତାର ଦେଖି ।
ଭେଣ୍ଡା ଭେଣ୍ଡା ଦୁଇ ଭାଇଙ୍କି ବସାଇ
ସିଂହାସନ ଦୁଇ ପାଖି ।
ଜଗତ ଯାକର ମନ ମୋହୁଅଛି
ବନ ହଳଦିଆ ମୁଖୀ ।
'ବିନ-ଦାସ' ବୋଲେ ଗଲେ ପରଲୋକେ
କରି ପାରନ୍ତି ସେ ସୁଖୀ
ନାମ ଜପୁଥିଲେ ପାପ ପୁଣି ଯମ
କରଣ ନପାରେ ଲେଖି ।

**ପଦ୍ମଶ୍ରୀ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ**
ବି -୧୮୮, ବରମୁଣ୍ଡା,ଡୁପ୍ଲେକ୍ସ, ଏବ୍.ଆଇ.ଡି.,
ଭୁବନେଶ୍ୱର

# ଅଭିମତ

ଲୋକକଥା ଲୋକ ମୁହଁର କଥା । ଏହା ପରମ୍ପରାକ୍ରମେ ମୁହେଁ ମୁହେଁ ଗୋଟିଏ ପିଢ଼ିରୁ ଆଉ ଗୋଟିଏ ପିଢ଼ିକୁ ପ୍ରସରେ । ଲୋକକଥା ସାମାଜିକ ଓ ସାଂସ୍କୃତିକ ଜୀବନର ପରିଚାୟକ । ଲୋକଗୀତ ଲୋକକଥାର ପରିଚୟ ବହନ କରେ । ଗୋଟିଏ ଗୋଟିଏ କଥା ଗୀତରେ ବାନ୍ଧି ହୋଇଯାଏ । ସମାଜରେ ପ୍ରଚଳିତ ମୂଲ୍ୟବୋଧର ରୂପାୟନ ଏହାରି ମାଧ୍ୟମରେ ହୋଇଥାଏ ।

ବିଭିନ୍ନ ଜାଗାରେ କଥାର କହିବା ଢଙ୍ଗ ଭିନ୍ନ । ଓଡ଼ିଶାରେ କଥାର ଆରମ୍ଭରେ ଓ ଶେଷରେ ଗୀତ ଥାଏ ।

କଥା ଆରମ୍ଭରେ -

''କଥାଟିଏ କହୁଁ ।
କିସ୍ କଥା? ତେଲି ମଥା ।
କିସ୍ ତେଲି ? ଘଣା ପେଲି ।
କିସ୍ ଘଣା ? ଆଖୁ ଘଣା ।
କିସ୍ ଆଖୁ ? କନ୍ତାରି ଆଖୁ
କିସ୍ କନ୍ତାରି ? ବୁଢ଼ୀ ମନ୍ତାରି ।
କିସ୍ ବୁଢ଼ୀ ? ଯାଉଥାଏ ଯେ ଗଡ଼ିଗଡ଼ି ।''

ଏହାର ପୁଣି ରୂପଭେଦ ଅଛି ।

କଥା ଶେଷରେ -

''ମୋ କଥାଟି ସରିଲା, ଫୁଲଗଛଟି ମରିଲା ।
କି'ରେ ଫୁଲଗଛ ତୁ କାହିଁକି ମଲୁ ? ମତେ ମାଳି ପାଣି ଦେଲା ନାହିଁ ।
କି'ରେ ମାଳି ତୁ କାହିଁକି ପାଣି ଦେଲୁ ନାହିଁ ? ମୋ ପୁଅ କାନ୍ଦିଲା ।
କି'ରେ ପୁଅ ତୁ କାହିଁକି କାନ୍ଦିଲୁ ? ମତେ ଧୂଳିଆ ଜନ୍ଦା କାମୁଡ଼ିଲା ।
କି'ରେ ଧୂଳିଆ ଜନ୍ଦା ତୁ କାହିଁକି କାମୁଡ଼ିଲୁ ?

ମୁଁ ଭୂଇଁ ତଳେ ତଳେ ଥାଏ ।
କଅଁଳ ମାଉଁସ ଟିକିଏ ପାଇଲେ ରୁଟ୍ କିନା ଖାଏ ।''

ଏହାର ମଧ୍ୟ ନାନା ପ୍ରକାର ଭେଦ ଅଛି ।

କଥା ମଝିରେ ବହୁ ଜାଗାରେ ଗୀତ ଅଛି । କଥା କହିବାର ମନୋଟନି ଭାଙ୍ଗିବା ପାଇଁ ହେଉ କିମ୍ବା କଥାରେ ସରସତା ଆଣିବା ପାଇଁ ହେଉ ଏହି ଗୀତଗୁଡ଼ିକର ସରସତା, ସରଳତା ଓ ବିଚିତ୍ରତାକୁ ମାନିବାକୁ ପଡ଼ିବ । ଯେଉଁମାନେ ଏଗୁଡ଼ିକୁ ଗୀତ ବୋଲି ମାନିବାକୁ ନାରାଜ ତାଙ୍କୁ ଏତିକି କହିଲେ ଯଥେଷ୍ଟ ହେବ ଯେ ସଙ୍ଗୀତ ଶାସ୍ତ୍ରରେ ଛ' ପ୍ରକାର ଗଦ୍ୟକୁ 'ଗାତବ୍ୟ' କୁହାଯାଇଛି । ତହିଁରେ 'ଉତ୍କଳିକା' ଅନ୍ୟତମ । ଗୋପୀନାଥ ମହାନ୍ତିଙ୍କର ଗଦ୍ୟ ଅନେକ ସମୟରେ ଯେ ପଦ୍ୟାତ୍ମକ ହୋଇ ଉଠିଛି ଏ ବିଷୟରେ କାହାରି ସନ୍ଦେହ ରହିବା ଉଚିତ୍ ନୁହେଁ । ଉପରେ ଲେଖା ହୋଇଥିବା କଥାଂଶ ଗୀତ ପରି ବୋଲା ହେଉଥିବା ମୁଁ ଶୁଣିଛି ।

ପଶ୍ଚିମୀ କଥା କହିବା ଢଙ୍ଗ ଆମଠାରୁ ଭିନ୍ନ । ପ୍ରତ୍ୟେକ କଥା ଅଲଗା ଅଲଗା । ପ୍ରତିଘର ଲଗାଲଗି ହୋଇ ମଧ୍ୟ ଅଲଗା । ଆମ ପାରମ୍ପାରିକ ଘର ପରସ୍ପର ନିର୍ଭର । ଚାଳକୁ ଚାଳ ଲଗାଲଗି । ଆମ କଥା ଗୋଟିଏ ଗଛଶାଖା ପ୍ରଶାଖା ମେଲି ଅନେକ କଥା ହୁଏ । ଚାଇନିଜ୍ ବାକ୍ସ ପରି ଗୋଟିଏ ଖୋଲିଲେ ତା' ଭିତରେ ଆଉ ଗୋଟିଏ । ଏମିତି ଖୋଲି ଖୋଲି କେତେ ଗହୀରକୁ ଯେ ଯାଇହୁଏ କଳ୍ପନା କରିବା କଷ୍ଟ ।

ଲୋକକଥା ଜରିଆରେ ଆମ ସଂସ୍କୃତି ସହ ପରିଚୟ ହୁଏ । ଅପର ସଂସ୍କୃତି ସାଙ୍ଗରେ କୁଟୁମ୍ବିତ ହୁଏ । ଲୋକକଥା ଓ ଲୋକଗୀତ ଆମକୁ ଜଣା । ପୃଥିବୀରୁ ଅଜଣା କଳ୍ପନା ରାଜ୍ୟକୁ ଘେନି ଯାଆନ୍ତି । ଲେଖା ପଢ଼ିବା ଓ କହିବା ଭିତରେ ବହୁତ ପାର୍ଥକ୍ୟ ଅଛି । କହିବା ଶବ୍ଦର ଧ୍ୱନି 'ସଖି! କେବା ଶୁନାଇଲ ଶ୍ୟାମନାମ, କାନେର ଭିତର ଦିୟା ମରମେ ପଶିଲଗୋ ଆକୁଲ କରିଲ ମୋର ପ୍ରାଣ' ଓ ତା'ପରେ ସିଏ ଆତ୍ମାକୁ ହଲେଇ ଦିଏ । ଏହାହିଁ ସେହି କାଞ୍ଚନିକ ପରୀରାଜ୍ୟରେ ପରିଭ୍ରମଣ ।

ଓଡ଼ିଆ ଲୋକକଥା ବିଷୟରେ ଆଲୋଚନା କଲେ ଯେଉଁମାନଙ୍କ ନାଁ ମନକୁ ଆସେ,ତାଙ୍କ ଭିତରେ ଚକ୍ରଧର ମହାପାତ୍ର ଓ କୁଞ୍ଜବିହାରୀ ଦାସ ଅନ୍ୟତମ । ଏମାନେ ଥିଲେ ସଂଗ୍ରାହକ । ପରବର୍ତ୍ତୀ ପିଢ଼ିର ଭାବଗ୍ରାହୀ ମିଶ୍ର କିମ୍ବା ଅରବିନ୍ଦ ପଟ୍ଟନାୟକ ମଧ୍ୟ ଏ ଦିଗରେ ଗୋଡ଼ ବଢ଼େଇଲେ ନାହିଁ । ଭାଷାକୋଷ ପ୍ରଣେତା ଗୋପାଳ ପ୍ରହରାଜ କିମ୍ବା ଓଡ଼ିଆ ଜ୍ଞାନମଣ୍ଡଳ ପ୍ରଣେତା ବିନୋଦ କାନୁନ୍‌ଗୋଙ୍କୁ ଏଠି ସ୍ମରଣ କରାଯାଇପାରେ । ଏମାନେ ମଧ ଲୋକକଥାର ସଂଗ୍ରାହକ । ତାହାର ବ୍ୟବହାର ସେମାନେ ବିଭିନ୍ନ ଭାବରେ କରିଛନ୍ତି ।

କବି ମାୟାଧର ମାନସିଂ ଇଂରାଜୀ ଶିକ୍ଷାକୁ ଲୋକଗୀତ ଓ ଲୋକକଥାର ବିଲୟ

ସାଙ୍ଗରେ ଯୋଡ଼ିଛନ୍ତି । ଏହା ଆଂଶିକ ସତ୍ୟ । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ୍ ନେହେରୁ ଓ ଭାରତ ସଂବିଧାନର ପିତା ବି. ଆର୍. ଆମ୍ବେଦକର ଗାଁ ବିରୋଧୀ ଥିଲେ । ୧୯୪୫ ଅଗଷ୍ଟ୍ ମାସରେ ଜବାହରଲାଲ୍ ଗାଁ ବିରୋଧୀ ଚିଠିଟିଏ ଗାନ୍ଧିଜୀଙ୍କୁ ଲେଖିଥିଲେ । ଗାନ୍ଧୀଙ୍କ ଉତ୍ତର ତାଙ୍କୁ ନିରୁତ୍ତର କରିଦେଇଥିଲା । କିନ୍ତୁ ସେଇ ୧୯୪୫ ଅଗଷ୍ଟରେ ଆମ୍ବେଦକର କନିଷ୍ଟିଚ୍ୟୁଏଣ୍ଟ୍ ଆସେମ୍ବ୍ଲିରେ ଗାଁ ବିରୁଦ୍ଧରେ ତାଙ୍କର ଅଗ୍ନିବର୍ଷୀ ଭାଷଣ ଦେଲେ । ଗାନ୍ଧୀ ଏକମାତ୍ର ରାଜନୀତିଜ୍ଞ ଯିଏ କହୁଥିଲେ ଯେ, ଭାରତ ପାଞ୍ଚଲକ୍ଷ ଗାଁରେ ବଞ୍ଚିଛି । ଯଦି ଆମ ଯୋଜନା ଗ୍ରାମଭିତ୍ତିକ ହୋଇଥା'ନ୍ତା, ତେବେ ଆଜି ଭାରତର ରୂପ ଭିନ୍ନ ହୋଇଥା'ନ୍ତା । କିନ୍ତୁ ପଶ୍ଚିମୀ ଶିକ୍ଷାରେ ଶିକ୍ଷିତ ଓ ପଶ୍ଚିମୀ ଦୀକ୍ଷାରେ ଦୀକ୍ଷିତ ପଣ୍ଡିତ୍ ଜବାହରଲାଲ୍ ନେହେରୁ ଓ ଡକ୍ଟର ଆମ୍ବେଦକରଙ୍କ ନେତୃତ୍ୱରେ ହୋଇଥିବା ଯୋଜନାର ଫଳାଫଳ ଯେ ଗାଁ ବିରୋଧୀ ଓ ଭାରତ ବିରୋଧୀ ହେବ ଏଥିରେ ଆଶ୍ଚର୍ଯ୍ୟ ହେବାର କଅଣ ଅଛି ?

ଗାଁର ବିଲୟରେ ଯେ ଭାରତୀୟ ପାରଂପରିକ ସଂସ୍କୃତିର ବିଲୋପ, ଏଥିରେ ମଧ୍ୟ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ଅନେକେ କହନ୍ତି ଯେ ଇଲେକ୍‌ଟ୍ରୋନିକ୍ ଯୁଗରେ ବହିର ଆବଶ୍ୟକତା ରହିବ ନାହିଁ । ଏହି ଜ୍ଞାନପ୍ରଧାନ ଯୁଗରେ ଲୋକକଥା, ପରୀକଥା ପରି ଉଭେଇଯିବ । ଆଉ କେହି କେହି କହନ୍ତି ଯେ ଆମ ଯୁକ୍ତ ପରିବାର ଭାଙ୍ଗିଯିବାରୁ ବୁଢ଼ୀମା' ଆଉ ନାହାନ୍ତି । ଘରେ ଗପ କହିବା ଅନୁଷ୍ଠାନ ଭାଙ୍ଗିରୁଜି ଗଲାଣି । ତେଣୁ ଚଳଣୀରୁ ଗପ ଲୋପ ପାଇଯାଉଛି । ତେଣୁ ଲୋକକଥା ସଂଗ୍ରହର ମୂଲ୍ୟ ନାହିଁ । ଏବେ ବି ବିଲାତ ଆମେରିକାର ପଣ୍ଡିତମାନେ ଆମକୁ ଆଧୁନିକ ମାନିବାକୁ କୁଣ୍ଠିତ । ଅଥଚ ସେମାନେ ଆମକୁ ଆଧୁନିକୋତ୍ତର ପ୍ରସଙ୍ଗ ଶୁଣେଇବାକୁ ବ୍ୟଗ୍ର । ଆମ ପଣ୍ଡିତମାନେ ସେମାନେ ଛାଡ଼ିଯାଇଥିବା ପାଦଚିହ୍ନକୁ ଅନୁସରଣ କରି ଆମ ସାମ୍ପ୍ରତିକ ସଂସ୍କୃତିରେ ଆଧୁନିକୋତ୍ତରତାର ଶଙ୍କୁ ଖୋଜି ବୁଲୁଛନ୍ତି । କିଏ କହୁଛନ୍ତି, ଇଣ୍ଟରନେଟ୍‌ରେ ବହି ଖୋଜ ତ ଆଉ କିଏ କହୁଛନ୍ତି ସିଡ଼ିରମରେ ବହି ଦେଖ । କିଏ କହୁଛନ୍ତି, ଇଂରାଜୀରେ ଲେଖା ହେଉଥିବା ବହି ଭାରତୀୟ ଭାଷାମାନଙ୍କରେ ଲେଖା ହେଉଥିବା ବହିକୁ ଅନାବଶ୍ୟକ କରିଦେବ । ଯେଉଁମାନେ ଏପରି ବିତର୍କ କରୁଛନ୍ତି, ସେମାନଙ୍କର ଧାରଣା ଯେ ସହରୀ ସଂସ୍କୃତି ଭାରତୀୟ ସଂସ୍କୃତି । ଗାନ୍ଧୀଙ୍କ କଥା, ଭାରତ ତା'ର ପାଞ୍ଚଲକ୍ଷ ଗାଁରେ ବଞ୍ଚିଛି ହୁଏତ ଏମାନେ ଦେଖି ପାରୁନାହାନ୍ତି କିମ୍ବା ଜାଣି ପାରୁନାହାନ୍ତି । ୧୯୯୮ ମସିହାରେ ଭାରତୀୟ ପ୍ରକାଶକ ସଂଘ ଦ୍ୱାରା ପ୍ରକାଶିତ ଏକ ଅଟକଳରୁ ଜଣାଯାଏ ଯେ ଇଂରାଜୀ ବହି ଭାରତୀୟ ଭାଷାମାନଙ୍କରେ ପ୍ରକାଶିତ ବହିମାନଙ୍କର ମାତ୍ର କୋଡ଼ିଏ ପ୍ରତିଶତ । ଭାରତୀୟ ଭାଷାମାନଙ୍କୁ ଶିକ୍ଷା, ଶାସନ ଓ ସଞ୍ଚାରର ମାଧ୍ୟମ କରିବାକୁ ସରକାରଙ୍କର ଅନାଗ୍ରହ ସତ୍ତ୍ୱେ ଏହି

ଭାଷାମାନଙ୍କର ବିଜୟ ଯାତ୍ରା ଚାଲିଛି । ଇଣ୍ଟର୍‌ନେଟ୍, ସିଡ଼ିରମ ସାଧାରଣ ଲୋକଙ୍କ ପାଖରେ ପହଞ୍ଚିବା କଷ୍ଟକର କଥା । ପହଞ୍ଚିଲେ ବି ବହିର ସ୍ୱାଭାବିକ ପ୍ରୟୋଜନୀୟତାକୁ କେହି ମେଣ୍ଟେଇ ପାରିବେ ନାହିଁ ।

ଆଡ଼ଭୋକେଟ୍ ବିନୋଦ ବିହାରୀ ଦାସ 'ସାରଳା ରତ୍ନଭଣ୍ଡାର ରସସାଗର' ଗ୍ରନ୍ଥର ପୂର୍ବରୁ ୧ମ ଖଣ୍ଡରୁ ୬ଷ୍ଠ ଖଣ୍ଡ ଏବଂ ଏବେ ସପ୍ତମ ଖଣ୍ଡ ରଚନା କରି ଏକ ଅଲୌକିକ କାର୍ଯ୍ୟସାଧନ କରିଛନ୍ତି । ଆପଣା ବୃତ୍ତି ଛାଡ଼ି, ଅଶନ ବ୍ୟସନରୁ ମନ ନିବୃତ୍ତ କରି କାଳିଦାସ ସରସ୍ୱତୀଙ୍କର ବରପୁତ୍ର ହେଲାପରି ଦେବୀ ସାରଳାଙ୍କ ଅନୁଗ୍ରହ ଓ ଆଶୀର୍ବାଦ ଲାଭ କରି ସେ ଏହି ସାରସ୍ୱତ କାର୍ଯ୍ୟରେ ସଫଳତା ଲାଭ କରିଛନ୍ତି । ଦୈବୀଶକ୍ତି ବିନା ଏହିପରି ସଫଳତା ଅସମ୍ଭବ । ପଶ୍ଚିମରେ ଲୋକକଥାର ଅଧ୍ୟୟନ, ବିଶ୍ଳେଷଣଧର୍ମୀ ଆଲୋଚନା ଖାଲି ଓଡ଼ିଆ ନୁହେଁ, ଭାରତୀୟ ଭାଷାମାନଙ୍କରେ ଦୁର୍ଲଭ ହୋଇଯାଇଛି । ଏଭଳି କ୍ଷେତ୍ରରେ ଶ୍ରୀ ଦାସଙ୍କର ଏହି ଗ୍ରନ୍ଥଗୁଚ୍ଛର ସୁଦୀର୍ଘ 'ଅବତରଣିକା' ଓ 'ଗ୍ରନ୍ଥପ୍ରବେଶ' ସମଗ୍ର ବିଦଗ୍ଧ ପାଠକଙ୍କୁ ଅଭିଭୂତ କରିବ । ଏଥିରେ ଲୋକକଥାର (ଢଗଢମାଳି, ପ୍ରବାଦ ପ୍ରଭୃତି) ବିଶ୍ଳେଷଣ ଧର୍ମୀ ଆଲୋଚନା ଏତେ ବିସ୍ତୃତ ଓ ବିରାଟ ଯେ ଗ୍ରନ୍ଥ ସମୂହର ବିଶେଷତ୍ୱ ଓ ମହତ୍ତ୍ୱ ଆକାଶଚୁମ୍ବୀ ହୋଇ ପାରିଛି । ଓଡ଼ିଆ ସାହିତ୍ୟରେ ଲୋକକଥାର ଏଭଳି ବିଶଦ ସମାଲୋଚନା ହୋଇଥିବାର ଦେଖାଯାଏ ନାହିଁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ମୁଁ ଆଶା କରୁଛି ଯେ ତାଙ୍କର ଗ୍ରନ୍ଥସବୁ ଲୋକପ୍ରିୟ ହେବ ।

**ଦେବୀପ୍ରସନ୍ନ ପଟ୍ଟନାୟକ**



ପ୍ରଫେସର ଡକ୍ଟର ସଂଘମିତ୍ରା ମିଶ୍ର
ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର,
ଭୁବନେଶ୍ୱର

# ଉଦ୍‌ବେଳିତ ମହାସିନ୍ଧୁ : ତରଙ୍ଗର ମଧୁର ଝଙ୍କାର

ଯେଉଁ ମହାସରସ୍ୱତୀ ମା' ସାରଳାଙ୍କ ଅହେତୁକ କୃପାରୁ ସିଦ୍ଧେଶ୍ୱର ପରିଡ଼ା ଆଦିକବି ସାରଳା ଦାସ ଭାବରେ ସିଦ୍ଧିଲାଭ କରିଥିଲେ, ସେହି ଜଗତ୍‌ଜନନୀଙ୍କ କରୁଣାକଣିକା ନେଇ ସମ୍ମାନନୀୟ ବିନୋଦ ବିହାରୀ ଦାସ ମହୋଦୟ **ସାରଳା ରତ୍ନଭଣ୍ଡାର ରସସାଗର** ରଚନାରେ ବ୍ରତୀ ହୋଇଛନ୍ତି । ୧୯୯୬ରୁ ୨୦୦୫ ପର୍ଯ୍ୟନ୍ତ ଦୀର୍ଘ ଦଶବର୍ଷ କାଳ ଏହି ରତ୍ନଭଣ୍ଡାରରୁ ସେ ଅହରହ ଖୋଜି ଚାଲିଛନ୍ତି ମଣିମାଣିକ୍ୟ । ଏହି ଶୁଭ ସଂକଳ୍ପ ଆମ ଭାଷା ସାହିତ୍ୟ ପାଇଁ ଆଶ୍ୱାସନା ।

ଏକବିଂଶ ଶତାବ୍ଦୀର ଆଦ୍ୟପାଦରେ ଆମେ ବିଶ୍ୱଗ୍ରାମ କଥା ଚିନ୍ତା କରୁଥିଲାବେଳେ ଆମ ପରଂପରାଠାରୁ ବିଚ୍ୟୁତ ହୋଇଯାଉଛୁ । ଢଗ ଢମାଳି ପ୍ରହେଳିକା ପ୍ରବଚନ ଯେ ଆମ ସଂସ୍କୃତିର ଆଧାର, ଏହା କ୍ରମେ ପାସୋରି ହୋଇଗଲାଣି । ଯେଉଁ ଗଛର ଚେର ଯେତେ ଗଭୀର, ସେ ଗଛ ସେତେ ଉଚ୍ଚକୁ ବଢ଼ିପାରେ, ଏହା ବିଜ୍ଞାନସମ୍ମତ ସତ୍ୟ । ଏହି ସତ୍ୟ ଭାଷା ସାହିତ୍ୟ ପାଇଁ ମଧ ପ୍ରଯୁଜ୍ୟ । ଲିଖିତ ସାହିତ୍ୟ ସୃଷ୍ଟିର ବହୁ ପୂର୍ବରୁ ମୌଖିକ ସାହିତ୍ୟର ,ଯେଉଁ ବିରାଟ ପଁରଂପରା ଥିଲା, ତାହା ସହଜ ଭାବରେ ମୁହଁରୁ ମୁହଁକୁ ଗଡ଼ିଚାଲିଥିଲା । ସେହି ମୌଖିବ ସାହିତ୍ୟର ସ୍ରଷ୍ଟା ଅଜ୍ଞାତ ମାତ୍ର ସୃଷ୍ଟି ଅତ୍ୟନ୍ତ କଳାକମନୀୟ ତଥା ଭାବଗମ୍ଭୀର । ନିଜର ସ୍‌ମର୍ଥ୍ୟ ନେଇ ଏହି ଢଗ ଢମାଳିଗୁଡ଼ିକ ସହଜରେ ଦାର୍ଶନିକ ତଥ୍ୟ ପରିବେଷଣ କରିପାର୍‌ଥିଲେ । ଗ୍ରାମ୍ୟଜୀବନକୁ ମୂଲ୍ୟବୋଧର ସୁନିୟନ୍ତ୍ରିତ ଧାରାରେ ପରିଚାଳିତ କରିବାରେ ଏହି ଢ ଢମାଳିର ଅବଦାନ ଅନସ୍ୱୀକାର୍ଯ୍ୟ । ଏହି ସମସ୍ତ ମୌଖିକ ସାହିତ୍ୟ ଆମ ଭାଷାର ଜୀବନୀ ଶକ୍ତିର ପରିଚାୟକ । 'ଲୋକ ସାହିତ୍ୟ' ଭାବରେ ଚିହ୍ନିତ ଏହି ବିପୁଳ ରତ୍ନଭଣ୍ଡାରରେ 'ବିଧି' ଅଛି ପୁଣି ଅଛି 'ବିଧିନିଷେଧ' । ଜୀବନପାଇଁ ଛଳଛଳ ଆବେଗ ଅଛି ଓ ତା ସହିତ ଅଛି ବୈରାଗ୍ୟର ନିର୍ଲିପ୍ତ ଭାବନା । ଲୋକସାହିତ୍ୟର ସବୁଠାରୁ ବଡ଼ ଐଶ୍ୱର୍ଯ୍ୟ ହେଉଛି ତା'ର ଭାବମୟତା, ରସାଳତା ତଥା ସାଂଗତିକତା । ଅଜ୍ଞାତ ସ୍ରଷ୍ଟାଟିଏ ଦ୍ୱିତୀୟ ଈଶ୍ୱର ଭଳି ନିଜ କୃତି ଭିତରେ ମୁହଁ ଦେଖାଏ । ସେ ରଜଦୋଳିଗୀତ ଗାଇ ଆନମନା ହୁଏ ପୁଣି କେତେବେଳେ ଶାଶୁଘରକୁ ଯାଉଥିବା ଝିଅଟିର ବାହୁନା ଭିତରେ ଲୁହଲୁଣ ଏକାକାର ହୁଏ । କେବେ ଜନନୀ ଭାବରେ ଅଝଟ ଶିଶୁ ପାଇଁ ଦୋଳିଗୀତ ଗାଏ ତ କେବେ ଶ୍ରମଲାଘବ ପାଇଁ ଲଘୁସଂଗୀତ

ଗାଇ ଗାଇ ଆନନ୍ଦ ଲାଭ କରେ । ସମୟର ପ୍ରବାହରେ ଶିଶୁ ସାହିତ୍ୟର ରୂପ ପ୍ରସ୍ଫୁଟିତ ହୁଏ ଓ ଖୁବ୍ ସହଜ ଭାବରେ ଏହି ଲୋକସାହିତ୍ୟ ଭିତରେ ପୁରାଣ ଓ କିମ୍ବଦନ୍ତୀ ଆଧାରିତ ଗଳ୍ପଗୁଡ଼ିକ ମିଶିଯାଆନ୍ତି । ଅଜ୍ଞାତ ସ୍ରଷ୍ଟାଟି ନିଜ ଅନୁଭୂତିଲବ୍ଧ ସତ୍ୟଟିଏ ପରିବେଷଣ କରିବା ସମୟରେ ପୁରାଣର ଲୋକପ୍ରିୟ ଆଖ୍ୟାନରୁ ଉଦାହରଣ ଦେଇ ନିଜ କଥାର ଗୁରୁତ୍ୱ ପ୍ରତିପାଦନ କରିଥାଏ । ଲୋକସାହିତ୍ୟ ଲୋକରୁଚିର ପରିଚାୟକ । ଏହା ଲୋକପ୍ରିୟ ସାହିତ୍ୟ, ଲୋକ ଉପଯୋଗୀ ସାହିତ୍ୟ ତଥା ଲୋକନିମିତ୍ତ ସୃଷ୍ଟି ସାହିତ୍ୟ ଯାହାର ଉଭା ଯେତେ ପୋତା ସେତେ । କେବେ ଭୌଗୋଳିକ ପରିବର୍ତ୍ତନରେ ଏହିଭଳି ଢଗ ଢମାଳିର କାୟା କିଞ୍ଚିତ ପରିବର୍ତ୍ତିତ ହୋଇଥିଲେ ମଧ୍ୟ ସେଗୁଡ଼ିକର ଭାବସାବଲ୍ୟ ଅତୁଟ ଥାଏ ।

ନିଜକୁ ସଂଗ୍ରାହକ ଭାବେ ପରିଚିତ କରି ସମ୍ମାନନୀୟ ବିନୋଦବିହାରୀ ଦାସ ମହୋଦୟ ଏତାଦୃଶ ଲୋକକଥା, ପ୍ରବାଦ, ପ୍ରବଚନ, ନାଁଦିଆଗୁଡ଼ିକୁ ଏକତ୍ର କରିଛନ୍ତି । ଢଗ ଢମାଳି, ଦନାଇବଚନ, ଖନାବଚନ ଓ ପ୍ରହେଳିକାଗୁଡ଼ିକ ମଧ୍ୟରେ ଶିଶୁସାହିତ୍ୟର ଯୁକ୍ତିସଂଗତି, ସ୍ୱତନ୍ତ୍ର ପ୍ରତିପାଦ୍ୟ ବିଷୟ ଓ ନିର୍ଦ୍ଦିଷ୍ଟ ବିଚାର ପରିଦୃଷ୍ଟ ହୋଇଥାଏ । ଏଥିସହିତ ଶ୍ରୀଯୁକ୍ତ ଦାସ ମହାଶୟ କେତେକ ଅଜ୍ଞାତ ତଥ୍ୟ ପରିବେଷଣ କରିଛନ୍ତି, ଯେମିତି ଦୀଣାକାର ଢମାଳି, ପାଇକବେଶ, ଢିଙ୍କିଗୀତ, ଝିଅକାନ୍ଦଣା, ଖୁଦୁରୁକୁଣୀ, ଭାଲୁକୁଣୀ, ସୁଆଦଖିଆ, ରଇଦୋଳି, କାଞ୍ଚି ଢମାଳି, କୋଇଲି ଢମାଳି, ଦହିବିକା ପ୍ରଭୃତି, 'କଲିକତିଆ ଜୋଇଁ ବାହୁନା' ଭଳି ଗୀତ ଯେ ବହୁ ପରବର୍ତ୍ତୀକାଳର ସଂଯୋଜନ ଏହା ଜଣାଯାଇଛି । ତେଣୁ ଲୋକଗୀତ ଯେ ଆପଣା ଛାଏଁ ଆପେ ଜୀବନୀଶକ୍ତି ସଂଗ୍ରହ କରେ, ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ । ଶ୍ରୀଯୁକ୍ତ ଦାସ ମହାଶୟ ପଶ୍ଚିମ ଓଡ଼ିଶାର ପ୍ରବାଦ ପ୍ରବଚନ, ମୟୂରଭଂଜର ଲୋକଗୀତ, ପୁରୀବୋଲି ଭଳି କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ପ୍ରଚଳିତ ଲୋକଗୀତର ସ୍ୱତନ୍ତ୍ର ବିଭାଜନ କରିଛନ୍ତି ।

ପ୍ରଥମ ଖଣ୍ଡ 'ସାରଳା ରତ୍ନଭଣ୍ଡାର ରସସାଗର'ର ଅଭିମତ ଲେଖିଛନ୍ତି, ଶ୍ରୀଯୁକ୍ତ ଦାସଙ୍କର ଶିକ୍ଷାଗୁରୁ ପ୍ରଫେସର ବିଧୁଭୂଷଣ ଦାସ । ଏହାର 'କିଞ୍ଚିଦ୍‌କଥନ' ଲେଖିଛନ୍ତି ଶ୍ରୀଯୁକ୍ତ ଗିରିଜାଭୂଷଣ ପଟ୍ଟନାୟକ, ଦ୍ୱିତୀୟଖଣ୍ଡର ମୁଖବନ୍ଧ ଲେଖିଛନ୍ତି ଶ୍ରୀଯୁକ୍ତ ସାତକଡ଼ି ହୋତା । ତୃତୀୟଖଣ୍ଡର ପ୍ରଫେସର ହୃଦାନନ୍ଦ ରାୟ, ଚତୁର୍ଥଖଣ୍ଡର ପ୍ରଫେସର ପଠାଣି ପଟ୍ଟନାୟକ । ଏହାର 'ମୁଖବନ୍ଧ' ଲେଖିଛନ୍ତି ପ୍ରଫେସର ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି । ପଞ୍ଚମଖଣ୍ଡର ଭୂମିକା ପ୍ରଫେସର ଗୌରୀକୁମାର ବ୍ରହ୍ମା ଓ 'ଟେକୋଟେକି ନାଇ' ଭଳି ଶୀର୍ଷକରେ ଶୁଭକାମନା ଜଣାଇଛନ୍ତି ଶ୍ରୀଯୁକ୍ତ କ୍ଷୀରୋଦ ପ୍ରସାଦ ମହାନ୍ତି । ଷଷ୍ଠଖଣ୍ଡର 'ମୁଖଶାଳା' ଡଃ ରତ୍ନାକର ଚଇନି ରଚନା କରିଛନ୍ତି ଓ 'ଗ୍ରନ୍ଥ ଆମୁଖ' ଲେଖିଛନ୍ତି ଡଃ ହେମନ୍ତ କୁମାର ଦାସ । ସପ୍ତମ

ଖଣ୍ଡ 'ସାରଳା ରତ୍ନଭଣ୍ଡାର ରସସାଗର' ନିମିତ୍ତ ମୁଖବନ୍ଧ ଲେଖିବାର ଦାୟିତ୍ୱ ଶ୍ରୀଯୁକ୍ତ ଦାସ ମହୋଦୟ ମୋତେ ଅର୍ପଣ କରିଛନ୍ତି । ଏଠାରେ ମୋର ସୂଚନା ଦେବା ଯଥାର୍ଥ ହେବ ଯେ ଏକକାଳୀନ ଛଅଟି 'ସାରଳା ରତ୍ନଭଣ୍ଡାର ରସସାଗର' ତଥା ଲେଖକଙ୍କର ଅନ୍ୟ କେତୋଟି ଉପନ୍ୟାସ ତଥା ଲୋକଗଳ୍ପ ସଂକଳନର ଉନ୍ମୋଚନ ଉତ୍ସବ ପାଇଁ ମୋତେ କିଛି କହିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ଲେଖକସାମ୍ମୁଖ୍ୟ ତରଫରୁ ଆୟୋଜିତ ସେହି ସଭାରେ ଶ୍ରୀଯୁକ୍ତ ସାତକଡ଼ି ହୋତା ସଭାପତିତ୍ୱ କରିଥିଲେ । ଅତିଥିମାନଙ୍କ ମଧ୍ୟରେ ପଦ୍ମଭୂଷଣ ଡଃ ସୀତାକାନ୍ତ ମହାପାତ୍ର, ପଦ୍ମଶ୍ରୀ ଡଃ ଦେବୀପ୍ରସନ୍ନ ପଟ୍ଟନାୟକ, ପ୍ରଫେସର ହୃଦାନନ୍ଦ ରାୟ ଓ ଶ୍ରୀଯୁକ୍ତ ବରେନ୍ଦ୍ରକୃଷ୍ଣ ଧଳ ପ୍ରମୁଖ ମଞ୍ଚାସୀନ ଥିଲେ । ସେହି ଉତ୍ସବ ପାଇଁ ମୋତେ କେତୋଟି ରତ୍ନ ଖୋଜି ଗୋଟିଏ ମାଳା ଗୁନ୍ଥିବାକୁ ପଡ଼ିଥିଲା । ବୋଧହୁଏ ସେହି ଭୂମିକାରେ ଯଥାସମ୍ଭବ ଅଭିନୟ କରିଥିବାରୁ ସମ୍ମାନନୀୟ ଶ୍ରୀଯୁକ୍ତ ଦାସ ମହାଶୟ ଆଜି ଏହି ଭୂମିକା ଲେଖିବାର ଦାୟିତ୍ୱ ମୋତେ ଅର୍ପଣ କରିଛନ୍ତି । ଏତାଦୃଶ ଗୁରୁତ୍ୱପୂର୍ଣ୍ଣ ବିଷୟ ପାଇଁ ମୁଁ ଉପଯୁକ୍ତ ନୁହେଁ ବୋଲି ବିନମ୍ର ଭାବରେ କହିବା ସମୟରେ ସେ କହିଥିଲେ ଯେ, 'ଏହା ମା' ସାରଳାଙ୍କ ନିର୍ଦ୍ଦେଶ' । ତା'ପରେ ତ ଆଉ ମନା କରିବାର ଉତ୍ସାହ ନଥିଲା । ଓଡ଼ିଶା ମାଟିରେ କଲମ ଧରି ଶିଖୁଥିବା କେହି ମଧ୍ୟ ମନା କରିପାରିନଥାନ୍ତା ବୋଲି ମୁଁ ଭାବୁଛି । ତେଣୁ ଏଭଳି ଦାୟିତ୍ୱ ମୁଁ ଗ୍ରହଣ କରିଛି । (ଯଦିଚ ଏହା ମଧ୍ୟ ମୁଁ ଜାଣେ ଯେ 'କା' ସବୁବେଳେ ବକୁଆ ଖେଳାଳୀଟିକୁ ଗ୍ରହଣ କରିବାକୁ ହୁଏ ।) ଜାଣେନାହିଁ କେତେ ସଫଳ ହେବି । ତଥାପି ପାରୁ ପର୍ଯ୍ୟନ୍ତ ଚେଷ୍ଟା କରୁଛି ସପ୍ତମଖଣ୍ଡର ନିର୍ଯ୍ୟାସ ସହିତ ପରିଚିତ ହେବି ଓ ଆପଣମାନଙ୍କୁ ପରିଚିତ କରାଇବି ।

ପୁସ୍ତକର ଆରମ୍ଭରେ ସାରଳା ମା'ଙ୍କ ବନ୍ଦନା ଓ ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ବନ୍ଦନା କରାଯାଇଛି । ଦୀର୍ଘ 'ଗ୍ରନ୍ଥପ୍ରବେଶ'ରେ ସଂଗ୍ରାହକ ମହାଶୟ କହନ୍ତି ଯେ 'x x ପ୍ରଥମେ ବିବେକ, ପରେ ବୁଦ୍ଧି । ଆଗେ ସିଦ୍ଧାନ୍ତ, ପରେ ପ୍ରମାଣ । ପ୍ରଥମେ ସ୍ଫୁରଣ, ତା'ପରେ ତା'ର ଅନୁକୂଳ ଓ ସମର୍ଥିତ ଯୁକ୍ତି । ଆଗେ କର୍ମ, ତା'ପରେ ବୁଦ୍ଧି । ତେଣୁ ବୁଦ୍ଧିକୁ କର୍ମାନୁସାରିଣୀ ବୋଲି କୁହାଯାଏ ।' ଦ୍ୱିତୀୟଖଣ୍ଡ 'ସାରଳା ରତ୍ନଭଣ୍ଡାର ରସସାଗର'ରେ ସେ ନିଜ ଜୀବନର ଦୁର୍ଦ୍ଦିନ, ତହିଁରୁ ମୁକ୍ତିର ପ୍ରୟାସ ଓ ପରେ ରିପୁକବଳିତ ହୋଇ ପରମାର୍ଥଠାରୁ ଦୂରକୁ ଯିବାର ମାନସିକତା ଇତ୍ୟାଦି ସଂପର୍କରେ ସ୍ପଷ୍ଟଭାବରେ ଉଲ୍ଲେଖ କରିଛନ୍ତି । ପାପବୋଧ ହିଁ ଜୀବନକୁ ଉର୍ଦ୍ଧ୍ୱତର ସତ୍ୟ ନିକଟରେ ପହଞ୍ଚାଇଥାଏ, ଯାହା ତାଙ୍କ ଭାଗ୍ୟରେ ଘଟିଛି ।

ସେ 'ଗ୍ରନ୍ଥପ୍ରବେଶ'ରେ ପ୍ରଥମେ ଗୋପାଳଚନ୍ଦ୍ର ପ୍ରହରାଜ, ଚକ୍ରଧର ମହାପାତ୍ର, ଚିନ୍ତାମଣି ମହାପାତ୍ର, ଡଃ କୁଞ୍ଜବିହାରୀ ଦାଶ ଓ ମାୟାଧର ମାନସିଂହ ପ୍ରଭୃତିଙ୍କର ଅବଦାନକୁ ସ୍ମରଣ କରିଛନ୍ତି । ସେହି ଦିବ୍ୟ ପ୍ରେରଣାର ବଶବର୍ତ୍ତୀ ହୋଇ ୨୮୯ ପୃଷ୍ଠାର ୧ମ ଖଣ୍ଡ +

୩୧୨ ପୃଷ୍ଠା ବିଶିଷ୍ଟ ଦ୍ୱିତୀୟ ଖଣ୍ଡ + ୩୦୨ ପୃଷ୍ଠା ବିଶିଷ୍ଟ ତୃତୀୟଖଣ୍ଡ + ୩୨୭ ପୃଷ୍ଠା ବିଶିଷ୍ଟ ଚତୁର୍ଥଖଣ୍ଡ + ୩୨୦ ପୃଷ୍ଠା ବିଶିଷ୍ଟ ପଞ୍ଚମଖଣ୍ଡ ଓ ୩୨୦ପୃଷ୍ଠାବିଶିଷ୍ଟ ଷଷ୍ଠଖଣ୍ଡ ଗ୍ରନ୍ଥ ଲେଖିସାରିଛନ୍ତି । ଅର୍ଥାତ୍ ସପ୍ତମ ଖଣ୍ଡର ପୃଷ୍ଠା ସଂଖ୍ୟା ଏକତ୍ର ହେଲେ ଅବଶ୍ୟ ଦୁଇହଜାରରୁ ଅଧିକ ପୃଷ୍ଠାର ପ୍ରବାଦ, ପ୍ରବଚନ, ପ୍ରହେଳିକା ଓ ଢଗଢମାଳି ପ୍ରଭୃତିର ସଂକଳନ ସେ କରିସାରିଛନ୍ତି । ଏହି ସଂକଳନରେ ସାରଳା ଦାସ, ବଳରାମ ଦାସ, ଦୀନକୃଷ୍ଣ ଦାସ, ଦାଶରଥି ଦାସ ପ୍ରଭୃତିଙ୍କ କାବ୍ୟରୁ ପ୍ରବାଦ ପ୍ରବଚନ ଏକତ୍ର କରିଛନ୍ତି । ପୁରାଣ ଓ ଇତିହାସ ପ୍ରସିଦ୍ଧ ବ୍ୟକ୍ତିମାନଙ୍କ ଜୀବନୀ ସମ୍ବଳିତ ପ୍ରହେଳିକା, ଧର୍ମଗୁରୁମାନଙ୍କୁ ନେଇ ରଚିତ ପ୍ରହେଳିକା, ପ୍ରଭୃତି ବିଷୟକ ପ୍ରହେଳିକା ଇତ୍ୟାଦିର ବର୍ଣ୍ଣନା ପରେ ଜ-ଝ ଅକ୍ଷରର ପ୍ରବାଦ ପ୍ରବଚନ ସଂକଳନ ଆରମ୍ଭ ହୋଇଛି । ରୁଢ଼ିପ୍ରୟୋଗ, ପୁରୀବୋଲି, ପ୍ରହେଳିକା ପହଲି, କୃଷିବଚନ, ଦୋଳିଗୀତ, ହଳିଆ ଚଉତିଶା, ହଳିଆଗୀତ, ମୃଗୁଣୀ ସ୍ତୁତି ସହିତ ମାଇପିଛଟାର ଦୃଷ୍ଟାନ୍ତ ଏଥିରେ ପ୍ରଦତ୍ତ ହୋଇଛି । ପ୍ରାରମ୍ଭରୁ ଅ-ଆ କ୍ରମରେ ରଚିତ ଏହି ପ୍ରବାଦ ପ୍ରବଚନ, ରୁଢ଼ି ଓ ପ୍ରହେଳିକାଗୁଡ଼ିକ ଏହି ସଂକଳନରେ 'ଜ' ଓ 'ଝ' ପର୍ଯ୍ୟନ୍ତ ଆସିଛି । ତେଣୁ ଖୁବ୍ ଶୀଘ୍ର 'ଞ', 'ଟ', 'ଠ' ଇତ୍ୟାଦି ଆଦ୍ୟବର୍ଣ୍ଣରେ ରଖି ରଚିତ ପ୍ରବାଦ ପ୍ରବଚନକୁ ନେଇ ଅଷ୍ଟମଖଣ୍ଡ ପୁସ୍ତକ ପ୍ରକାଶିତ ହେବ ବୋଲି ଆଶା କରିବା ସ୍ୱାଭାବିକ ।

ଏହି ସଂକଳନରେ ଭାଷାର ବିବିଧ ବୈଚିତ୍ର୍ୟ ଦୃଷ୍ଟିଗୋଚର ହୁଏ । ଯେମିତି ଜାମୁଡାଳି ଗୀତରେ 'ବିନ୍ଧି ଦିଏ ବୁଢ଼ା, ଭଟ୍ ଭଟ୍ ବେଟିଆରେ ଚଟ୍ ଚଟ୍' ।

'ମୁଇଁ ନେଇ ନାରେ କହୁଛେ ତତେ, ଖରିଆ ଖେବେଡ଼ି ଯାହାକୁ ଯେତେ' । ଏହା ବଉଦ ଅଞ୍ଚଳରେ ପ୍ରଚଳିତ ଭାଷା । ସେହିପରି 'କରମାକେ ଏକାଦଶୀ ଫୁଲ ଫୁଟେ ବାରମାସୀ 'ଭଳି ପ୍ରବାଦରେ ଆଦିବାସୀ ଦେବତା କରମାସାନିଙ୍କ ନୃତ୍ୟର ବର୍ଣ୍ଣନା ଦେଖାଯାଏ । ସଂଗ୍ରାହକ ମହାଶୟ ବିଭିନ୍ନ ସୁନ୍ଦର ଉଦାହରଣ ଦେବାକୁ ଯାଇ ରସକଲ୍ଲୋଳ, ବିଦଗ୍ଧ ଚିନ୍ତାମଣି, ଭାଗବତ, ଲାବଣ୍ୟବତୀ, ଗୋପୀନାଥ ବଲ୍ଲଭ ନାଟକ, ବିଶି ରାମାୟଣ ପ୍ରଭୃତିରୁ କେତେକ ପଦର ଉଦ୍ଧାର କରିଛନ୍ତି । ତେଣୁ ସଂଗ୍ରାହକ ଯେ ପ୍ରାଚୀନ କାବ୍ୟ କବିତା ଓ ତା'ର ରାଗରାଗିଣୀ ସଂପର୍କରେ ବିଶେଷ ଅନୁଧ୍ୟାନ କରିଛନ୍ତି ତାହା ନିଃସନ୍ଦେହ । ଏହି ଗ୍ରନ୍ଥପାଠ କରିବା ସମୟରେ ମୋର ଅତୀତର ଅନେକ ସ୍ମୃତି ଉଜ୍ଜୀବିତ ହୋଇଉଠିଛି । ଯେମିତି -

'ହସି ପଶେ ଉଇଁ ନ ଦିଶେ
ସଜ ଗୋବରରେ ଅଁସେଇ ବସେ
ତେବେ ଜାଣ ପୁତା ନିଶ୍ଚେ ବରଷେ ।'

ମୋର ନନା ବୋଉ ଉଭୟ ଏତାଦୃଶ ଢଗ ଢମାଳି, ଦନାଇବଚନ, ଖନାବଚନ

ମନେ ରଖୁଥିଲେ । କେବଳ ମୋ ନନା ବୋଉ ନୁହଁନ୍ତି, ସେ ସମୟରେ ଏହି ଢଗ ଢମାଳିଗୁଡ଼ିକ ଗ୍ରାମ୍ୟଜୀବନକୁ ପରିଚାଳିତ କରୁଥିଲେ । କଥାକଥାକେ ସେମାନଙ୍କ ତୁଣ୍ଡରୁ ଝରିପଡୁଥିଲା ସେହି ସ୍ୱୟଂଭୂ ସଂଗୀତ । ଅତି ଗେହ୍ଲାଝିଅକୁ ଶାଶୁଘରେ ଉଲୁଗୁଣା ଦେଇ କହନ୍ତି -

‘ଅତି ସେରନ୍ତାରେ ସେରନ୍ତ ଝିଅ କାନ୍ଦେନା
ଚାଉଳ ପଛେକେ ଖାଇବା ଭାତ ରାନ୍ଧେନା ।’

ଏହିଭଳି ଶତାଧିକ ଢଗ ଢମାଳି ଆମର ଦୈନନ୍ଦିନ ଜୀବନକୁ ନିୟନ୍ତ୍ରିତ କରୁଥିଲା । ଏଥି ସହିତ ପୁରାଣଜ୍ଞାନ ଯେମିତି ‘ଅତି ଦର୍ପେ ହତ ଲଙ୍କା’, ‘ନରେ ବା ଗୁଞ୍ଜରେ ଅଶ୍ୱତ୍ଥାମା ହତ’, ‘ଯେତେ କହିଲି ଭାଗବତ ତୋଷ ନୋହିଲା ମୋର ଚିତ୍ତ’ ବା ‘ସାତକାଣ୍ଡ ରାମାୟଣ’ ଇତ୍ୟାଦିର ପ୍ରୟୋଗ ଆଜି ମଧ୍ୟ ଆମ ସମାଜରେ ପ୍ରଚଳିତ । ଏଗୁଡ଼ିକୁ ଏକତ୍ର କରି ଅକ୍ଷରକ୍ରମରେ ସଜାଡ଼ି ତା’ର ଅର୍ଥ ସହିତ ପ୍ରୟୋଗବିଧି ଦର୍ଶାଇ ସଂଗ୍ରାହକ ମହାଶୟ ବାସ୍ତବିକ ଏକ ଦୁରୂହ କାର୍ଯ୍ୟ ସଂପାଦନ କରିଛନ୍ତି । ଏକାଧିକ ପଣ୍ଡିତ ବ୍ୟକ୍ତି ଏକତ୍ର ହୋଇ ଯେଉଁ କାର୍ଯ୍ୟ କରିବା କଷ୍ଟକର, ତାହା କରିବା ପଛରେ ଯେ, ଦୈବୀ ପ୍ରେରଣା ଅବଶ୍ୟ ନିହିତ, ଏହା ବିଶ୍ୱାସ କରିବାକୁ ହୁଏ । ନିଜର ବହୁପାଠିତା ନେଇ ସେ ବିଭିନ୍ନ କବିଙ୍କର କାଳନିରୂପଣ କରିବା ସହିତ ସେମାନଙ୍କ କୃତିତ୍ୱ ସଂପର୍କରେ ସଂକ୍ଷିପ୍ତ ସୂଚନା ପ୍ରଦାନ କରିଛନ୍ତି । ପଢ଼ିବାବେଳେ ମନେ ହୋଇଛି ଆମର ଆବଶ୍ୟକ ସମସ୍ତ ତଥ୍ୟ ଏହି ରତ୍ନଭଣ୍ଡାରରେ ଉପଲବ୍ଧ ମାତ୍ର ପୁଣି କ୍ଷଣକରେ ମନେ ହୋଇଛି ସବୁ ଅଧୁଆ ହୋଇଯାଉଛି । ଏହିଭଳି ମାନସିକତା ନେଇ ମୁଁ ଗ୍ରନ୍ଥଟକ ପାଠ କରିଛି । ଏହା ମୋର ପରମ ସୌଭାଗ୍ୟ । ବେଳେବେଳେ ଏକାଧିକଥର ଏକପ୍ରକାର ଢଗ ସ୍ଥାନିତ ହୋଇଛି ଓ ସ୍ଥାନଭେଦରେ କିଞ୍ଚିତ ଅକ୍ଷର ବଦଳି ଯାଇଛି । ତଥାପି ସଂଗ୍ରାହକ ମହାଶୟଙ୍କର ଆଗ୍ରହ ଯେ ବଳବତ୍ତର ରହିଛି ଏହା ନିଶ୍ଚୟ ସ୍ୱାଗତଯୋଗ୍ୟ ।

ସ୍ରଷ୍ଟାଟିଏ ନିଜ ମନଲାଖି ସୃଷ୍ଟି କରି ଆନନ୍ଦ ପାଏ, ମାତ୍ର ସଂଗ୍ରାହକ ପାଇଁ ସଂଗ୍ରହ, ସଂରକ୍ଷଣ ଓ ଉପସ୍ଥାପନ ପ୍ରତ୍ୟେକ ଦିଗ ଗୁରୁତ୍ୱପୂର୍ଣ୍ଣ । ଓଡ଼ିଶା ତଥା ଓଡ଼ିଶା ବାହାରେ ବିଭିନ୍ନ ସ୍ଥାନ ବୁଲି ସେ ବିଭିନ୍ନ ପ୍ରକାର ଢଗ ଢମାଳି ସଂଗ୍ରହ କରିଛନ୍ତି । ଏସବୁର ବିଶଦ ତଥ୍ୟ ସେ ଗ୍ରନ୍ଥପ୍ରବେଶ ଓ ଅବତରଣିକାରେ ଉଲ୍ଲେଖ କରିଛନ୍ତି । ତାଙ୍କର ସୃଷ୍ଟିଶୀଳତାର ସ୍ପର୍ଶରେ ସଂଗ୍ରହ ବିଷୟ ବ୍ୟାପକ ହୋଇଛି ଓ ଉପସ୍ଥାପନାଶୈଳୀ ହୋଇଛି କାବ୍ୟିକ ତଥା ପ୍ରାଣବନ୍ତ । ହୁଏତ ଶ୍ରୀଯୁକ୍ତ ଦାସଙ୍କ ପୂର୍ବରୁ ଏତେ ବ୍ୟାପକ ଭାବରେ କେହି ଗବେଷକ ଏତାଦୃଶ କାର୍ଯ୍ୟ କରିନାହାନ୍ତି । ସେ ସଂଗ୍ରାହକ ମାତ୍ର ନୁହଁନ୍ତି, ସେ ଯେ ଜଣେ ଉଚ୍ଚକୋଟୀର ଗବେଷକ, ଏହା ‘ସାରଳା ରତ୍ନଭଣ୍ଡାର ରସସାଗର’ ପାଠ କଲେ ସ୍ୱତଃ ହୃଦ୍‌ବୋଧ ହୋଇଥାଏ ।

ସଂଗ୍ରାହକ ମହାଶୟ ପୂର୍ବତନ ମୁଖ୍ୟ ଆୟକର କମିଶନର ଶ୍ରୀଯୁକ୍ତ ଗୋପାଳ ପ୍ରସାଦ ନନ୍ଦଙ୍କଠାରୁ ପ୍ରାପ୍ତ 'ଢେଗରତ୍ନ' ପୁସ୍ତକର ଉଲ୍ଲେଖ କରି ତହିଁରେ ସ୍ଥାନିତ ଢେଗଗୁଡ଼ିକ ଯେ ବେଶ୍ ରସୋତ୍ତୀର୍ଣ୍ଣ ଓ ଉଚ୍ଚକୋଟୀର ସାହିତ୍ୟପଦବାଚ୍ୟ, ତାହା ପ୍ରମାଣ କରିଛନ୍ତି । ଓଡ଼ିଆ ଛନ୍ଦ ସଂପର୍କରେ ତାଙ୍କର ଆଲୋଚନା ମଧ୍ୟ ବେଶ୍ ଯୁକ୍ତିଯୁକ୍ତ ତଥା ସମୟାନୁସାରୀ । ଶିଶୁ ମନୋରଂଜନ ପାଇଁ ଉଦ୍ଦିଷ୍ଟ ତମାଳିଗୁଡ଼ିକ ମଧ୍ୟ ଆକର୍ଷଣୀୟ । କେତେକ ଅବ୍ୟବହୃତ ପଦକୁ ମଧ୍ୟ ସେ ଯଥେଷ୍ଟ ଶ୍ରଦ୍ଧା ସହିତ ଉପସ୍ଥାପିତ କରିଛନ୍ତି, ଯେମିତି ଝଞ୍ଜା, ଝମ୍ପାଣ, ଝାଡ଼, ଝିଙ୍ଗା, ଜକଲା ମାଟିବା ଛବର୍ଜଂଘ, ଜଂଘାବୃତ୍ତି ପ୍ରଭୃତି । ଏହିଭଳି କେତେକ ଶବ୍ଦ କବିସୂର୍ଯ୍ୟଙ୍କର କିଶୋର ଚନ୍ଦ୍ରାନନ୍ଦ ଚମ୍ପୂରେ ପରିଦୃଷ୍ଟ ହୋଇଥାଏ ।

ଶ୍ରୀଯୁକ୍ତ ବିନୋଦବିହାରୀ ଦାସ ବୃତ୍ତିରେ ଓକିଲ । ତାଙ୍କ ଭିତରେ ସୁପ୍ତଥିବା ସାହିତ୍ୟିକଟିଏ ମା' ସାରଳାଙ୍କ କରୁଣାରୁ ଆତ୍ମପ୍ରକାଶ କରିଛି । ଓକିଲ ବୃତ୍ତି ମଧ୍ୟରେ ଯୁକ୍ତିସଂଗତ ଓ ନିଜ କଥାକୁ ପ୍ରମାଣ କରିବା ପାଇଁ ଆନୁସଂଗିକ ତଥ୍ୟ ଉପସ୍ଥାପନ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ସେହି ବୃତ୍ତିରେ ଦୀର୍ଘଦିନ ରହି ବହୁ ସୁନାମ ଅର୍ଜନ କରିଥିବା ଶ୍ରୀଯୁକ୍ତ ଦାସ ସହି ତଥ୍ୟ ସଂଗ୍ରହ କାର୍ଯ୍ୟରେ ନିଜର ସାମର୍ଥ୍ୟ ବିନିଯୋଗ କରିଛନ୍ତି । ତାଙ୍କର ପତ୍ନୀ ଆଡ୍‌ଭୋକେଟ୍ ଝରଣାରାଣୀ ଦାସ ଏସମସ୍ତ ଅମୂଲ୍ୟ ରତ୍ନସଂଗ୍ରହ ପାଇଁ ତାଙ୍କର ସହାୟିକା ହୋଇଛନ୍ତି । ଫଳରେ ଦଶବର୍ଷ ମଧ୍ୟରେ ଦୁଇହଜାରରୁ ଊର୍ଦ୍ଧ୍ୱ ପୃଷ୍ଠାବିଶିଷ୍ଟ ଏହି ପୁସ୍ତକ 'ସାରଳା ରତ୍ନଭଣ୍ଡାର ରସସାଗର'ର ସାତଟି ଖଣ୍ଡ ପ୍ରକାଶିତ ହୋଇପାରିଛି । ସହାୟିକା ହୋଇଛନ୍ତି ଶ୍ରୀଯୁକ୍ତ ଦାସଙ୍କର ଭଗିନୀ ଡାକ୍ତର କୃଷ୍ଣାଦାସ । ପାରିବାରିକ ସୌହାର୍ଦ୍ଦ୍ୟ ହିଁ ଏତାଦୃଶ ଗ୍ରନ୍ଥ ରଚନାର ମୂଳରେ ରହିଛି ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ।

ଏଭଳି ଜାତୀୟ କାର୍ଯ୍ୟ ବ୍ୟକ୍ତିଗତ ଉଦ୍ୟମରେ କରିବା ବେଶ୍ ଦୁରୁହ ବ୍ୟାପାର । ମାତ୍ର ଶ୍ରୀଯୁକ୍ତ ଦାସ ଏହି କାର୍ଯ୍ୟରେ ହିଁ ନିରନ୍ତର ମନୋନିବେଶ କରିଛନ୍ତି । ଓଡ଼ିଆ ମା' ମୁହଁର ଭାଷା, ଓଡ଼ିଆ ଶିଶୁର ଦରୋଟି, ଓଡ଼ିଆ ତରୁଣୀର ରଜଦୋଳି, କୁଆଁରପୁନେଇଁ, ଓଡ଼ିଆ କୃଷକର ଗୀତ, ଓଡ଼ିଆଣୀର କାନ୍ଦଣା ତଥା ବିଭିନ୍ନ ପର୍ବପର୍ବାଣିରେ ଗାନ କରାଯାଉଥିବା ଗୀତମାନଙ୍କୁ ସଜାଡ଼ି ପରଷି ଦେବାର ଯେଉଁ ଆଗ୍ରହ ସେ ଦେଖାଇଛନ୍ତି, ଭବିଷ୍ୟତ ହିଁ ତା'ର ସାଫଲ୍ୟର କଥା ଅବଶ୍ୟ କହିବ । ଏଗୁଡ଼ିକୁ ଯଥାସମ୍ଭବ ସଜାଇ ପୁନର୍ବାର ଲେଖିବାର ଦାୟିତ୍ୱ ଓଡ଼ିଆ ଭାଷାସାହିତ୍ୟକୁ ଭଲ ପାଉଥିବା ତଥା ସେଥିପ୍ରତି ଦାୟବଦ୍ଧ ପ୍ରତ୍ୟେକ ବ୍ୟକ୍ତିର । ମାଟିତଳେ ଅନେକ ରତ୍ନ ଲୁଚିରହିଛି । ସେହିଭଳି ଆମ ସାହିତ୍ୟର ପ୍ରାକ୍‌କାଳରୁ ଆମ ସାଙ୍ଗରେ ଗଢ଼ି ଆସିଥିବା ବିଭିନ୍ନ ପ୍ରବାଦ ପ୍ରବଚନକୁ ଏକାଠି କରି ଭଣ୍ଡାରରେ ସାଇତିଛନ୍ତି ଶ୍ରୀଯୁକ୍ତ ଦାସ ମହାଶୟ । ତାକୁ ଝାଡ଼ି ପୋଛି, ବିଭିନ୍ନ ଆକୃତିରେ କାଟି ଯୋଡ଼ି

ଅଳଙ୍କାର ତିଆରି କରିବା, ବିଦେଶକୁ ରପ୍ତାନୀ କରିବା ବା ପ୍ରିୟବ୍ୟକ୍ତିଙ୍କୁ ଉପହାର ଦେବାର ଦାୟିତ୍ୱ ଆମ ସମସ୍ତଙ୍କର ।

ଶ୍ରୀଯୁକ୍ତ ଦାସ ମହୋଦୟ ଖ୍ୟାତନାମା ଆଇନ୍‌ଜ୍ଞ । ବାରମ୍ବାର ବିଦେଶଗସ୍ତରେ ଯିବାର ସୁଯୋଗ ତାଙ୍କର ହୋଇଛି । ସେ ଓଡ଼ିଶା ରାଜ୍ୟ ବାର୍ କାଉନ୍‌ସିଲ୍‌ର ପୂର୍ବତନ ଉପସଭାପତି ଓ ଆନ୍ତର୍ଜାତିକ ବାର୍ ଏସୋସିଏସନ୍‌ର ସଦସ୍ୟ । ମାତ୍ର ସଂକଳୟିତା ଭାବରେ ଶ୍ରୀଯୁକ୍ତ ଦାସ ଯେଉଁ ନୂତନ ପରିଚୟ ସୃଷ୍ଟି କରିଛନ୍ତି, ସେଥିପାଇଁ ସେ ନିଜର ବିରାଟ କାବ୍ୟ ପରଂପରା ମୌଖିକ ତଥା ଲୋକସାହିତ୍ୟ ପରଂପରା ନିକଟରେ କୃତଜ୍ଞତା ସ୍ୱୀକାର କରିଛନ୍ତି । ବ୍ୟକ୍ତିର ମୂଲ୍ୟାୟନ ସମକାଳରେ ହୋଇପାରେ ନାହିଁ । ଯେଉଁଥିପାଇଁ ନିଜେ ଭବଭୂତି ନିରବଧିକାଳ, ବିପୁଳା ପୃଥ୍ୱୀ ତଥା ଭବିଷ୍ୟତର ବଂଶଧରମାନଙ୍କ ଉପରେ ଗଭୀର ଆସ୍ଥା ରଖିଥିଲେ । ଶ୍ରୀଯୁକ୍ତ ଦାସ ମହାଶୟ ନିଜ ଜାଣତ ବା ଅଜାଣତରେ ସେହି ଲୁପ୍ତପ୍ରାୟ ଲୋକସାହିତ୍ୟ ସଂଗ୍ରାହକମାନଙ୍କ ସହିତ ସାମିଲ ହୋଇସାରିଛନ୍ତି । ସମୟର କଷଟିରେ କଷି ହୋଇ ତାଙ୍କର ଆଇନ୍‌ଜ୍ଞ ବ୍ୟକ୍ତିତ୍ୱଠାରୁ ସାହିତ୍ୟିକ ବ୍ୟକ୍ତିତ୍ୱଟି ଅଧିକ ମନୋରମ ଅଧିକ ଉର୍ଜ୍ଜଶୂଳ ଦିଶୁଛି ।

ସେ ମହାଶୟଙ୍କର ସସ୍ନେହ ଅନୁରୋଧ ଏଡ଼ାଇ ନପାରି ମୁଁ ପଙ୍ଗୁ ହୋଇ ମଧ ଗିରିଲଂଘନର ଯେଉଁ ପ୍ରୟାସ କରିଛି, ସେଥିପାଇଁ ସେ ମୋର ନମସ୍ୟ ହୋଇ ରହିବେ । ସାରସ୍ୱତ ଜଗତରେ ହିଁ ଏହିଭଳି ଭାବମୟ ସଂପର୍କ ସ୍ଥାପିତ ହୋଇପାରେ । ଏହା ଶ୍ରୀଯୁକ୍ତ ଦାସଙ୍କର ସାହିତ୍ୟାନୁରାଗର ଅପୂର୍ବ ଫଳଶ୍ରୁତି ଓ ମା' ସାରଳାଙ୍କ ଗଳାରେ ଝୁଲିବାକୁ ଅପେକ୍ଷା କରିଥିବା ଅନୁପମ ଦିବ୍ୟ ପୁଷ୍ପର ମାଳା । ସେହି ବାକ୍‌ଦେବୀ ବିନୋଦବିହାରୀ ଦାସଙ୍କ ପ୍ରତି ଅଶେଷ କୃପାଦୃଷ୍ଟି ରଖିଥାଆନ୍ତୁ ଓ ସାହିତ୍ୟ ପ୍ରତି ତାଙ୍କର ଅନୁରାଗ ଅତୁଟ ରହୁ । ଏତିକି କାମନା ।

- ସଂଘମିତ୍ରା ମିଶ୍ର



ମୂଲ୍ୟ -୬୦/- ଟଙ୍କା
ଧନ-ମନ, ଯୌବନ-ଯୌନ-
ଜୀବନ ସମ୍ବଳିତ ସାମାଜିକ ଶୃଙ୍ଗାର
ରସ ଭରା ମର୍ମସ୍ପର୍ଶୀ ଅତ୍ୟାଧୁନିକ
ମୌଳିକ ଉପନ୍ୟାସ ।



ମୂଲ୍ୟ -୪୦/- ଟଙ୍କା
ସଙ୍ଗୀତାକାରରେ ବାଲାଂଦେଶର
୭ଟି ଲୋକଗୀତର ଅନୁବାଦ
ସହିତ ଗଦ୍ୟାନୁବାଦ ।

# ଗ୍ରନ୍ଥ ପ୍ରବେଶ

ଇଂରାଜୀରେ ଗୋଟିଏ ପ୍ରବାଦ ଅଛି - **'ମାନସିକ ଶକ୍ତି ଉପରେ ଶାରୀରିକ ଶକ୍ତି ନିର୍ଭରଶୀଳ ।'** ମଣିଷ ବୟସରେ ବୃଦ୍ଧ ହୁଏ ନାହିଁ, ମନ ନିଜକୁ ବୃଦ୍ଧ ବୋଲି ଭାବି ବାର୍ଦ୍ଧକ୍ୟ ହସ୍ତରେ ଆତ୍ମସମର୍ପଣ କରିଦିଏ । ଯୌବନ ରକ୍ଷା କରିବାକୁ ମନର ବଳ ହିଁ ଆବଶ୍ୟକ । ନୈରାଶ୍ୟ ଓ ହତାଶା ଭାବ ଅନେକ ଯୁବକଙ୍କୁ ବୃଦ୍ଧାବସ୍ଥାକୁ ଟାଣିନିଏ । ମାନସିକ ଶକ୍ତିର ତାରତମ୍ୟ ହିଁ ଏହାର କାରଣ । ତେବେ ଏହି ମାନସିକ ଶକ୍ତି ତଥା ମନର ବଳ ଐଶୀ ଶକ୍ତି ବିନା ସମ୍ଭବ ନୁହେଁ । ଏହା ମୋତେ ପ୍ରତିଟି ମୁହୂର୍ତ୍ତରେ ତୁଙ୍ଗ ବୟସର ଉପଲବ୍ଧି ଆଣିଦେଉଛି ।

ପରଶ୍ରୀକାତର ଓ ସଙ୍କୀର୍ଣ୍ଣମନା ଲୋକେ ସୌଭାଗ୍ୟଶାଳୀ ବ୍ୟକ୍ତିର ଅକସ୍ମାତ ଉନ୍ନତି ଦେଖିଲେ, ଅସତ୍ ଉପାୟରେ ବଡ଼ ଲୋକ ହୋଇଛି ବୋଲି ଜନସମାଜରେ କୁ-ପ୍ରଚାର କରି ବୁଲନ୍ତି । କୌଣସି ବ୍ୟକ୍ତିବିଶେଷଙ୍କ ପ୍ରତିଭାର ସୀମା ଆକଳନ ନ କରି କପୋଳକଳ୍ପିତ ଦୋଷାରୋପ କରି ଲୋକଟିର ପ୍ରତିପତ୍ତି ନଷ୍ଟଭ୍ରଷ୍ଟ କରି ଦେବାର ଚେଷ୍ଟା କରନ୍ତି । ନୀଚମନା ପ୍ରତିଦ୍ୱନ୍ଦ୍ୱୀଙ୍କର ନିନ୍ଦା କରିବା ମଧ୍ୟ ନୀଚତାର ପରିଚାୟକ । ମା' ସାରଳାଙ୍କ ଶକ୍ତିବଳରେ ଆମ୍ଭେ 'ପରବାଏ ଲେଦୁ' ଭାବରେ ଅହୋରାତ୍ର ତାଙ୍କରି ନିର୍ଦ୍ଦେଶରେ କାର୍ଯ୍ୟ କରି ଚାଲିଛୁ ଓ ଚାଲୁଥିବୁ ।

ମରଶରୀରରେ ଯାହା କିଛି ଲୁପ୍ତ, ଗୁପ୍ତ ବା ସୁପ୍ତ ଥାଏ, ଏହାକୁ ଭଗବତ କୃପା ବିସ୍ତାରିତ କରି ପ୍ରକଟିତ କରାଏ । ଅନ୍ତଃକରଣ, ବହିଃକରଣ, ବିଷୟ, ପ୍ରମାଣ, ବିପର୍ଯ୍ୟୟ, ବିକଳ୍ପ, ନିଦ୍ରା, ସ୍ଥିତି, ଅବିଦ୍ୟା, ଅସ୍ମିତା, ରାଗ-ଦ୍ୱେଷ, ଅଭିନିବେଶ, ମୂଢ଼କ୍ଷିପ୍ତ, ବିକ୍ଷିପ୍ତ, ଏକାଗ୍ର, ନିରୁଦ୍ଧ, ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଆଦି ସବୁ ପ୍ରକାର ସ୍ଥୂଳ, ସୂକ୍ଷ୍ମ ବିଷୟଗୁଡ଼ିକର ବିସ୍ତାର - ସେହି କୃପାରୁ ହିଁ ହୋଇଥାଏ ।

ଅବିଦ୍ୟା ନିଦ୍ରାରେ ସୁସୁପ୍ତ ମୋ'ପରି ଜୀବକୁ ଏବେ ସବୁ କିଛି ପ୍ରତୀତ ହେବାକୁ ଲାଗିଲା । ସିଂହଦ୍ୱାର ଖୋଲିଗଲା । ମୋର ନେତ୍ର, ଶିଶୁଙ୍କ ଆଖି ଫିଟିଲା ଭଳି ଖୋଲିଗଲା । ମନ ଛାଏଁ ଛାଏଁ କାମ କରିବାକୁ ଲାଗିଲା । ଏହା ହେଉଛି ମା' ସାରଳାଙ୍କର ଦ୍ୱାରା ପ୍ରାପ୍ତ ସାମାନ୍ୟତମ ଶକ୍ତି ।

ମଣିଷ ତାହାହିଁ କରିବ ଯାହା ତା'ର ବିବେକ କରିବାକୁ କହିବ । ପ୍ରଥମେ ବିବେକ, ପରେ ବୁଦ୍ଧି । ଆଗେ ସିଦ୍ଧାନ୍ତ, ପରେ ପ୍ରମାଣ । ପ୍ରଥମେ ସ୍ଫୁରଣ, ତା'ପରେ ତା'ର ଅନୁକୂଳ ଓ ସମର୍ଥିତ ଯୁକ୍ତି । ଆଗେ କର୍ମ, ତା'ପରେ ବୁଦ୍ଧି । ତେଣୁ ବୁଦ୍ଧିକୁ କର୍ମାନୁସାରିଣୀ ବୋଲି କୁହାଯାଏ । ମଣିଷ ଯାହା କିଛି କରିବାକୁ ଚାହିଁବ ବା କିଛି କରିବ, ତା'ର ସମର୍ଥନ କରିବାକୁ

ପ୍ରମାଣ ମଧ୍ୟ ଖୋଜି ବାହାର କରି ନେବ ।

ସେଥିପାଇଁ ମା' ସାରଳାଙ୍କର ଦୁର୍ଲ୍ଲଭ ସାମାନ୍ୟତମ ଶକ୍ତି ମୋ' ପାଇଁ ଯେଉଁ ଅର୍ଥ ବହନ କରୁଛି, ତାହା ହୁଏତ ସମସ୍ତଙ୍କ ପାଇଁ ସମର୍ଥିତ ଯୁକ୍ତି ନ ହୋଇ ପାରେ ।

ଏକନିଷ୍ଠ ଗଭୀର ଭକ୍ତି ସହକାରେ ସାରସ୍ୱତ ଅଭ୍ୟାସ, ସଂସାର ପ୍ରତି ବୈରାଗ୍ୟ, ନିଷ୍ଠା ଓ ଏକାଗ୍ରତାର ଜଳରେ ନିଜକୁ ପଖାଳି ସମସ୍ତ ରିପୁଙ୍କ କବଳରୁ ମୁକ୍ତ ହୋଇ, ବାଧା ପ୍ରତିବନ୍ଧ ଅତିକ୍ରମ କରିଛି । ଏହାହିଁ ମୋତେ ଅପାର ଆନନ୍ଦ ପ୍ରଦାନ କରୁଛି ।

ଅର୍ଥରେ ମୋର ମମତା ରହିଲା ନାହିଁ । ନ ମିଳିଲେ, ଠକିଗଲେ ବା ଠିକିରିଗଲେ ଅନୁତାପ କରିବାର ନାହିଁ । କାରଣ ମୋ' ଟଙ୍କା ପଇସାର ହିସାବ ଈଶ୍ୱର ରଖନ୍ତି ବୋଲି ମୋର ଅବବୋଧ ହୁଏ । ଏହାର ଚାକ୍ଷୁଷ ପ୍ରମାଣ ମୋ ସହିତ ଯେଉଁମାନେ ଅଙ୍ଗାଅଙ୍ଗୀ ଭାବରେ ଜଡ଼ିତ, ସେମାନେ ଏହାର ନଜିର ବାରମ୍ବାର ଉପଲବ୍ଧି କରିଛନ୍ତି ଓ କରୁଛନ୍ତି । ମା' ସାରଳା ମୋର ପୂର୍ବ ଜୀବନ ଓ ଜୀବିକାକୁ ତୁଛେଇ ନୂଆ କଳେବର ପ୍ରଦାନ କରି ମୋତେ ଏପରି ବିନୋଦନରେ ବିଭୋର କରିଦେଲେ ଯେ, ଏତେ ଆନନ୍ଦକୁ ସମ୍ବରଣ କରି ନପାରି କେବଳ ଦି'ପଦ ଗାଇ ତାଙ୍କରି ପାଦପଦ୍ମରେ ନିର୍ଲିପ୍ତ ହେବାକୁ ଚାହୁଁଛି ।

ସ୍ୱଭାବେ ମୁହିଁତ ଓକିଲ
　　କେମନ୍ତେ ଚିହ୍ନିବା ମହତ ।
ତୋ' ପାଇଁ ଉଚ୍ଚାଟ ହୋଇଲି
　　ଭାବକୁ ଭାବରେ ଦେଖିଲି ।
ଅର୍ପିଲି ଦେହ ମନ ପ୍ରାଣ
　　ଘୋର ସଂକଟୁ ହେଲି ତ୍ରାଣ ।
ସର୍ବ ମଙ୍ଗଳା କୃପା କଲେ
　　ନବଜୀବନ ମୋତେ ଦେଲେ ।

ଡକ୍ଟର ମାୟାଧର ମାନସିଂହ **'ଉତ୍କଳ ଗାଉଁଲି ଗୀତ ପରିଚୟ'** ଶୀର୍ଷକ ଆଲୋଚନାରେ ଲେଖିଛନ୍ତି :

'ଇଂରାଜୀ ଶିକ୍ଷାର ପ୍ରସାର ପୂର୍ବେ ଏ ଦେଶରେ ପଲ୍ଲୀ କାବ୍ୟ ମୁଖର ଥିଲା । ଦିନର ନାନା ଘଟଣା ପଲ୍ଲୀବାସୀର କର୍ମକୁ କବିତା ଓ ଗାନ ଉତ୍ସାହିତ ଓ ରସବନ୍ତ କରୁଥିଲା । ଘରେ, ଅନ୍ତଃପୁରରେ ନାରୀମାନଙ୍କ ମୁଖରୁ ପ୍ରତ୍ୟେକ କଥାରେ ଢଗ, ଢମାଳି, ବଚନିକା ଫୁଟି ଉଠୁଥିଲା । କିଶୋରୀମାନେ ଗୋଧୂଳି ଦାଣ୍ଡକୁ କ୍ରୀଡ଼ା ଓ ସଙ୍ଗୀତରେ ମୁଖର ଓ ମଥିତ କରି ରଖୁଥିଲେ । ପ୍ରୌଢ଼ାମାନେ କର୍ମାବସରରେ ବାଳବଚାଙ୍କୁ କୋଳରେ ଶୁଆଇ ସଙ୍ଗୀତ ଦ୍ୱାରା

ଜାତିର ପ୍ରାଣ କଥା ଶିଖାଇ ରଖୁଥିଲେ । ଏହିପରି ଚାରିଆଡ଼େ କବିତାର ମଧୁର ପ୍ରଭାବରେ ପଲ୍ଲୀଜୀବନ ରସାଳ ହୋଇ ଉଠୁଥିଲା ।

ସେ ସ୍ୱର୍ଣ୍ଣଯୁଗ କିନ୍ତୁ ଆଉ ନାହିଁ । ଇଂରାଜୀ ଶିକ୍ଷା ଫଳରେ ଜାତିର ପ୍ରାଣରୁ କବିତା ନିଗାଡ଼ି ପୋଛି ବାହାର କରି ଦିଆଯାଇଛି । ତା'ରି ଫଳରେ ଜାତିର ଆନନ୍ଦରସ ଏବେ ପ୍ରାୟ ସମ୍ପୂର୍ଣ୍ଣ ଶୁଷ୍କ । ଦେଶରେ ନୂତନ ଶିକ୍ଷା ପ୍ରଣାଳୀ ପ୍ରବର୍ତ୍ତିତ ହେବାରୁ ଓ ଜାତିର ଜ୍ଞାନ କେନ୍ଦ୍ର ସହସ୍ର ସହସ୍ର ପଲ୍ଲୀକୁ ଅନ୍ଧକାର କରି କେତୋଟି ସହରକୁ ଉଠି ଆସିବାରୁ ଏହି ଗ୍ରାମ୍ୟ କବିତାର ଚର୍ଚ୍ଚା ରହିଲା ନାହିଁ ଓ କିଶୋର କିଶୋରୀମାନଙ୍କ ଜୀବନରେ ତା'ର ପ୍ରଭାବ ପଡ଼ିଲା ନାହିଁ । ତାହାରି ଫଳରେ ଜାତିର ଜୀବନରେ ସମସ୍ତଙ୍କ ଅଜ୍ଞାତସାରରେ କି ଘୋର ଅନିଷ୍ଟ ସାଧିତ ହୋଇଅଛି, ତା'ର ଆଲୋଚନା ଲାଗି ସ୍ଥାନ ଅନ୍ୟତ୍ର ।'

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଥରେ କହିଥିଲେ -'ପଲ୍ଲୀର ଓଡ଼ିଆ ଯେଉଁ ଭାଷା ବୁଝେ, ତାହାହିଁ ଯଥାର୍ଥ ଓଡ଼ିଆଭାଷା ।'

ପଲ୍ଲୀ ସଙ୍ଗୀତଗୁଡ଼ିକ ଲୁପ୍ତ ହୋଇ ଯାଉଥିବା ବେଳେ ଏଗୁଡ଼ିକ ସଂଗ୍ରହ କରି ରଖିବା ଓଡ଼ିଆ ଜାତି ପାଇଁ ଅତ୍ୟନ୍ତ ପ୍ରୟୋଜନ । ପଣ୍ଡିତ ଗୋଦାବରୀଶଙ୍କ କହିବା ଅନୁସାରେ -

'ଏ ଶ୍ରେଣୀର ଗୀତ ପ୍ରାୟ ଲୋପ୍ ପାଇବାକୁ ବସିଲାଣି । ଏହି ୫/୧୦ ବର୍ଷ ଭିତରେ ସଂଗୃହୀତ ନହେଲେ ଆଉ ସଂଗ୍ରହର ସମ୍ଭାବନା ରହିବ ନାହିଁ । ସାହିତ୍ୟର ଭବିଷ୍ୟତ ଓ ସର୍ବତ୍ର ମୂଳଦୁଆ ଉପରେ ନିର୍ଭର କରେ ।'

ପଣ୍ଡିତ ଗୋଦାବରୀଶ ଏ କଥା ଆଜକୁ ପ୍ରାୟ ୭୦ ବର୍ଷ ଆଗରୁ ସୂଚିତ କରାଇ ଥିଲେ । କେତେଜଣ ହାତ ଗଣତି ପଣ୍ଡିତ ଯଥା (୧) ଗୋପାଳ ଚନ୍ଦ୍ର ପ୍ରହରାଜ, (୨) ଚକ୍ରଧର ମହାପାତ୍ର, (୩) ଡକ୍ଟର କୁଞ୍ଜବିହାରୀ ଦାସ, (୪) ଚିନ୍ତାମଣି ମହାପାତ୍ର ପ୍ରମୁଖଙ୍କୁ ଛାଡ଼ିଦେଲେ, କାରଣ ଯାହା ହେଉନା କାହିଁକି, ଆଉ କେହି ତ୍ୟାଗପୂତ ହୋଇ ଏ ଦିଗରେ ଅଗ୍ରସର ହେବାର ଜଣାନାହିଁ । ବୋଧହୁଏ ଏଇଥିପାଇଁ ମା' ସାରଳା ଯେପରି 'ଶାରଳା ଦାସ'ଙ୍କ ଦ୍ୱାରା ଓଡ଼ିଆରେ ସର୍ବ ପ୍ରଥମେ ଏକ ବିରାଟ 'ମହାଭାରତ' ଗ୍ରନ୍ଥ ରଚନା କରାଇଥିଲେ, ସେହିପରି ତାଙ୍କରି ଆଶୀର୍ବାଦରୁ, ତାଙ୍କରି ପ୍ରେରଣାରୁ, ତାଙ୍କରି ନିର୍ଦ୍ଦେଶନାରୁ, ଆମ୍ଭେ ସେଇ ଲୁପ୍ତପ୍ରାୟ ଓଡ଼ିଆ ଢଗ ଢମାଳି, ପ୍ରବାଦ, ଗାଉଁଲି ଗୀତ ପ୍ରଭୃତି ସଂଗ୍ରହ କରି ଓଡ଼ିଆ ସାହିତ୍ୟର ମୂଳଦୂଆ ଓ ଐତିହ୍ୟ ସମ୍ପର୍କରେ ଅନୁଧ୍ୟାନ କରି ଓଡ଼ିଆ ଜାତିର ପରାକାଷ୍ଠାର ନଜିର ସହ ସମଗ୍ର ଜାତି ପାଖରେ ଉପସ୍ଥାପନ କରିବା ପାଇଁ ପ୍ରୟାସୀ ହୋଇଛୁ । ଆମ୍ଭ ପକ୍ଷରେ ଏହା ସମ୍ଭବ କି ନୁହେଁ, ତା' ଆମ୍ଭେ ଜାଣୁନା ।

ସଂଘର୍ଷ ସଂଗ୍ରାମ କରି କରି ଜୀବନରେ ସ୍ୱାଛନ୍ଦ୍ୟ ଖୋଜି ପାଇଲା ପରେ ଏଭଳି ଗୋଟିଏ ନିରୁପଦ୍ରବ କ୍ଷେତ୍ରଟିଏ ଧରି ନିଆ ଯାଏ, ଯେଉଁଠାରେ ଦ୍ୱନ୍ଦ୍ୱ ସଂଘର୍ଷ ପ୍ରାୟ ନଥାଏ । ତେଣିକି ଆମେ ସେଇ ନିଦକ ସ୍ଥାନରୁ ବାହାରି ଆସିବାକୁ ଭୟ କରୁ । ଜୀବନପ୍ରତି ଏ ଯେଉଁ ଭୟ, ପୁଣି ଜୀବନ ସଂଗ୍ରାମରୁ ନୂଆ ଅନୁଭୂତି ଲାଭ କରିବାକୁ ଏ ଯେଉଁ ଭୟ, ଏହା ଆମ ଠାରେ କୌଣସି ପ୍ରକାର ଦୁଃସାହସିକ ପଦକ୍ଷେପ ନେବାର ଉତ୍ସାହକୁ ନଷ୍ଟ କରିଦିଏ ।

ଆମେ ନିଜ ବଂଧୁ ବାନ୍ଧବ, ସାଇଭାଇଙ୍କ ଠାରୁ ଭିନ୍ନ ଭାବରେ ବା ଭିନ୍ନ ପ୍ରକାରରେ ଚଳିବାକୁ ଭୟ କରୁ । ସମାଜର ପ୍ରଚଳିତ ଚଳଣି ଠାରୁ ଫରକ କିଛି କରିବାତ ଦୂରର କଥା, ଭାବିବାକୁ ସୁଦ୍ଧା ଭୟ ଲାଗେ । କର୍ତ୍ତୃତ୍ୱ ଓ ପରମ୍ପରାକୁ ବୃଥାରେ ସମ୍ମାନ ଜଣାଇବାକୁ ପଡ଼େ । ପରିବେଶ ଓ ଲୋକମାନଙ୍କର ଅସନ୍ତୋଷ ଓ ବିଦ୍ରୂପରେ ପ୍ରକୃତ ଉତ୍ସାହ ଓ ଉଦ୍ଦୀପନା ରସାତଳଗାମୀ ହୁଏ ।

ମୋ' ପକ୍ଷରେ ମଧ ଏଇୟା ଘଟିବା କିଛି ବିଚିତ୍ର ନୁହେଁ । ସଂଗ୍ରାମ ଓ ସଂଘର୍ଷ ପରେ ଜୀବନରେ ସୁଖ-ସ୍ୱାଛନ୍ଦ୍ୟ ମଜ୍ଜାଗତ ଭାବରେ ଭୋଗ କରିକରି ବର୍ଷ ପରେ ବର୍ଷ ବିତେଇ ଦେଇଛି । ତଥାପି ଅନାହୂତ କାରଣ ପାଇଁ ମୋର ଅନ୍ତର ଆତ୍ମା ଅସ୍ଥିର, ଆନ୍ଦୋଳିତ ଓ ବ୍ୟାକୁଳିତ ହେଉଥିଲା । ଜୀବନର ସାୟାହ୍ନରେ ଅଲୌକିକ ଭାବରେ ମା' ସାରଳାଙ୍କର କୃପା ବାରି ମୋ' ଉପରେ ୧୯୯୦ ମସିହା ଡିସେମ୍ବର ୪ ତାରିଖ ରାତି ସାଢ଼େ ଦଶଟା ପରେ (୨ୟଖଣ୍ଡ ଗ୍ରନ୍ଥପ୍ରବେଶ ୧୧ ପୃଷ୍ଠା ଦ୍ରଷ୍ଟବ୍ୟ) ମୋ' ଉପରେ ବର୍ଷିଲା । ସେହି ଦିନ ଠାରୁ ଆମ୍ଭେ ସମାଜର ପ୍ରଚଳିତ ଚଳଣି ଠାରୁ ପୃଥକ ହୋଇ ଏକ ନୂତନ ମାର୍ଗରେ ଧାବିତ ହେବାକୁ ଲାଗିଲୁ । କର୍ତ୍ତୃତ୍ୱ ଓ ପରମ୍ପରାକୁ ପରାହତ କରି ମା'ଙ୍କ କୃପାରୁ ପ୍ରବଳ ଉତ୍ସାହ ଓ ଉଦ୍ଦୀପନା ପ୍ରାପ୍ତ ହେଲୁ । ସେଇ ବଳରେ ବଳିୟାନ ହୋଇ ଓଡ଼ିଆ ସାହିତ୍ୟ ସମ୍ବନ୍ଧରେ କିଛି ନ ଜାଣି ନଶୁଣି ଓଡ଼ିଆ ଲୋକ ସାହିତ୍ୟର ସଙ୍କଳନ କରିବା ପାଇଁ ଏକ ଦୁଃସାହସିକ ପଦକ୍ଷେପ ନେଲୁ । ଭୟ ଭ୍ରାନ୍ତି ସବୁ ଯାଇ ଚୁଲିରେ ପଶିଲା । ସେଇ ଉତ୍ସାହ ଉଦ୍ଦୀପନାରେ ଦି'ପଦ ଗାଇ ମା' ସାରଳାଙ୍କ ଶରଣ ଯାଉଛି ।

ଚାରି ପ୍ରହରକୁ ମୋର ନିଦ୍ରା ନ ଥାଇ
ଚାରି ଦିଗରେ ଘେରି ରହିଛୁ ତୁହି
ଏହି କର୍ମେ ଥିଲା ଏତେ ବିପତ୍ତି
ନ ଜାଣି ଏ ରୀତି ଛାଡ଼ିଲି କର୍ମ ବୃତ୍ତି
ଝରଝର ନୟନୁ ବୁହଇ ନୀର
ଝଙ୍କଡ଼ ବାସିନୀ ଉଦ୍ଧାର କର ।

ଜଗି ବସିଛୁ ସିନା ଚଉ ପାଶର
ରୋଦନ କରୁଛି ମୁହିଁ କୋଦଣ୍ଡଧର ।
ଥୋଇଲୁ ସିନା ଏହା କପାଳେ ମୋର
ଧିକ ଜୀବନ କିମ୍ପା ନ ଯାଏ ମୋର ।

ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଧରାକୋଟ ରାଜା କୃଷ୍ଣସିଂହ (୧୭୨୯ରୁ୧୭୮୮) ୪୨ ବର୍ଷ ବୟସରେ ୧୭୮୧ ଖ୍ରୀଷ୍ଟାବ୍ଦରେ ରାଜ୍ୟାଭିଷିକ୍ତ ହୋଇଥିଲେ । ସଂସ୍କୃତ ମହାଭାରତକୁ ଓଡ଼ିଆରେ ଅନୁବାଦ କରିବାର ଅଭିଳାଷ ତାଙ୍କ ମନରେ ରାଜା ହେବାର ବର୍ଷକ ପରେ ଉଦୟ ହେଲା । ସେ ହରିହର ଛାମୁ ପଟ୍ଟନାୟକ ଓ ଜୟ ବେବର୍ତ୍ତାଙ୍କ ହସ୍ତରେ ରାଜ୍ୟ ଭାର ଅର୍ପଣ କରି ଦେଇ ପାଞ୍ଚଜଣ ପଣ୍ଡିତଙ୍କୁ ପାଖରେ ରଖି ଏହି ଗୁରୁତର କାର୍ଯ୍ୟରେ ରତ ହେଲେ । ଅବଶିଷ୍ଟ ଜୀବନ କାଳ ଏହି ଜାତୀୟ କାର୍ଯ୍ୟରେ ସେ ବିନିଯୋଗ କରିଥିଲେ ।

ଏହି ପ୍ରଥିତଯଶା ରାଜା ଓ କବି କୃଷ୍ଣସିଂହ ଯେପରି ବିନୟ ଭାବରେ ନିଜ ସମ୍ପର୍କରେ ଲେଖିଛନ୍ତି, ତାଙ୍କ ପାଦଧୂଳି ଠାରୁ ହୀନ ନଗଣ୍ୟ ମୋ' ଭଳି ସଙ୍କଳୟିତା ତାଙ୍କ ଦ୍ଵାରା ଲିଖିତ ପଦାବଳୀକୁ ଅନୁସରଣ କରି ଲେଖୁଛି :-

ସାଧୁ ସଙ୍ଗେ ଶାସ୍ତ୍ର କିଛି ନ ପଢ଼ିଲି
ମୂର୍ଖପଣେ ଢମାଳି ଗୀତ ଆରମ୍ଭିଲି ।

ମୋ' ଭଳି ଜଣେ ପେଟକଟା, ଛାତିକଟା, ଅଣ୍ଟାଭଙ୍ଗା, ଆଖିଫୋଡ଼ା, ଗରିବ ଗୁରୁବା ବୃତ୍ତିଗତ ଜୀବକୁ ପରିଣତ ବୟସରେ ଏହି ଦଶା ଘୋଟିଛି । ତେଣୁ ମୁଁ ସେଇ ବିଶ୍ଵବିହାରୀଙ୍କ ଉଦ୍ଦେଶ୍ୟରେ କବି-ରାଜା କୃଷ୍ଣସିଂହଙ୍କ ଭାଷାରେ ଦି'ପଦ ଗାଇଲି -

'ଅନାକୃତ ଆକୃତ ପ୍ରାଣୀଙ୍କ କରତା
ଅଜ ଅବିନାଶୀ ଦେବଙ୍କ ଦେବତା ।'

ତାଙ୍କରି ପାଦପଦ୍ମରେ ଶରଣାଗତ ହୋଇ ଅବିରତ ସେଇ, 'ଅଘ ନିବାରଣ ଶକଟ ଭଞ୍ଜନ ଅଷ୍ଟବକ୍ରାଦିଙ୍କର ତପ ବର ଧନ'ଙ୍କୁ ସନ୍ତୋଷ ପ୍ରଦାନ କରିବା ପାଇଁ ପ୍ରାର୍ଥନା କରୁଛି ।

୧୯୪୬ ମସିହାରେ ରେଭେନ୍ସା କଲେଜରେ ପଢ଼ା ଆରମ୍ଭର ଦୋ'ଟି ବର୍ଷ ପରେ ଆମ୍ଭେ ନୃତ୍ୟ, ଗୀତ, ତାମସା ଆଡ଼କୁ ଢଳିଲୁ । ବର୍ଷ ପରେ ବର୍ଷ ଏହି ଭଳି କଟିଲା ।ମୋର ୨୨ ବର୍ଷ ବେଳକୁ ୧୯୫୩ ମସିହା ନଭେମ୍ବର ୩୦ତାରିଖ ଦିନ ପିତା ସ୍ଵର୍ଗାରୋହଣ କଲେ । ବିଧବା ମାତାଙ୍କ ସହିତ ତିନୋଟି ଅଭିଆଡ଼ା ଭଉଣୀ ଓ ବାଳୁତ ଭାଇର ସମସ୍ତ ଭାର ଅଚାନକ ମୋ' ଉପରେ ପଡ଼ିଲା । ବିଭୁକୃପାରୁ ସବୁ ବ୍ୟତିକ୍ରମକୁ ପାର ତାର ହେଲି ସିନା, ନାଚ, ଗୀତ, ତାମସା କିନ୍ତୁ ଶନିଗ୍ରହର ବଳୟ ଭଳି ଘେରି ରହିଲା । ଆୟକର-ବିକ୍ରିକର ଆଇନଜୀବୀ

ହେଲି । ଯାଁଶୀ କୃପାରୁ ଐଶ୍ୱର୍ଯ୍ୟ ପ୍ରାପ୍ତ ହେଲା । ଐଶ୍ୱର୍ଯ୍ୟର ପ୍ଲାବନରେ ଉଡ଼ାବୁଡ଼ା ହୋଇ ସୋମରସର କୁହେଳିକାରେ ଆଚ୍ଛନ୍ନ ହୋଇ ଉଚ୍ଛନ୍ନ ହେଲି । ଦିନେ କାଳେ ଈଶ୍ୱରଙ୍କୁ ଚିନ୍ତା କଲି ନାହିଁ । କବି-ରାଜା କୃଷ୍ଣଚନ୍ଦ୍ରଙ୍କ ଭାଷାରେ -

'ହରିକଥା ଦିନେ ନ କଲି କୀର୍ତ୍ତନ ।

ବଳାଇଲି ନର୍ତ୍ତନ ଗୀତ ମଦ୍ୟେ ମନ । '

ଏତେ ସରି ହେଲେ ମଧ ଈଶ୍ୱର ଛପର ଫାଡ଼ି ଧନ-ଧାନ୍ୟ ପ୍ରାପ୍ତ କରାଇଲେ । ଆହୁରି ଆହୁରି ଧନ ଚାହୁଁଛି ବୋଲି 'ଧନ ଭଣ୍ଡାର' ଭର୍ତ୍ତି କରିଦେଲେ । ଆହୁରି ଆହୁରି ସୋମରସ ପ୍ଲାବନର ଲାଳସାରେ ଉଚାଟ ହେଲାରୁ 'ସୋମରସ ସାଗର'ରେ ବୁଡ଼ାଇ ଦେଲେ । ଧନ୍ୟ ପ୍ରଭୁ, ଧନ୍ୟ ତୋ'ର ଲୀଳା, ଧନ୍ୟ ତୋହର ମହିମା । ପରିଣତ ବୟସ ପର୍ଯ୍ୟନ୍ତ ସେଇ ଗତାନୁଗତିକ 'ଧନ' ଆହରଣ ଓ 'ସୋମରସ' ଆସ୍ୱାଦନ ପାଇଁ ମରୀଚିକା ପଛରେ ଦୌଡ଼ାଇ ଦୌଡ଼ାଇ ମୋ' ହଂସା ଉଡ଼ାଇଦେଲ । ମୋ' ଆଖି ସାମ୍ନାରେ ମୋ'ର ନିକଟତମ ବନ୍ଧୁମାନେ ଗୋଟାକୁ ଗୋଟା ଟଳି ପଡ଼ିଲେ । ମୁଁ ମଧ ଟଳି ପଡ଼ିବା ସୀମାରେ ଥିଲି । ହେଲେ ପ୍ରଭୁ, ଏ ପୁଣି କ'ଣ କଲ ? - ମୋ'ର ଅନ୍ତିମ କାଳରେ ମୋର 'ଧନ ଭଣ୍ଡାର' ଓ 'ସୋମରସ ସାଗର'କୁ ତୁଚ୍ଛେଇ ଦେଇ 'ଧନ' ବଦଳରେ 'ରତ୍ନ', 'ସୋମରସ' ବଦଳରେ 'ରସ' ଭରି ଦେଲ । ତହିଁରୁ ଉତ୍ପତ୍ତି ହେଲା 'ରତ୍ନ ଭଣ୍ଡାର' 'ରସ ସାଗର', ଆଉ ନାମକରଣ କରାଇଲ 'ସାରଳା ରତ୍ନ ଭଣ୍ଡାର ରସ ସାଗର' । ଏତେ ସରି ହେଲେ ମଧ ଏହି 'ରତ୍ନ ଭଣ୍ଡାର'ରେ ଡୁବି 'ରସସାଗର'ରେ ଭାସିଲା ଉତ୍ତାରୁ ମୋର ତୁଙ୍ଗାବୟସ ପ୍ରାପ୍ତ ହେଲା । ମୁଁ ଏବେ ନବ ଯୌବନରେ ଉଦ୍ଦୀପ୍ତ ।

ପରିବର୍ତ୍ତନ କଠୋର, ମାତ୍ର ଯେଉଁ ପରିବର୍ତ୍ତନ ମୋ' ଗତରରେ ସନ୍ନିତ ହେଲା, ସେଥିପାଇଁ ଦି'ପଦ ଗାଇ ନିଜ ଅରମାନ୍ ମେଣ୍ଟାଉଛି -

ହୟ ପରେ ହୟ କଲା ପ୍ରହାର,

ସାଗର ଯେହ୍ନେ ମନ୍ଥଇ ମନ୍ଦର ।

ତୋହ ଆଜ୍ଞାରେ ମା'ତ ରଚିବ ମୋ' ମନ

ତେଣୁ ଆଜ୍ଞା ଦିଅ ମୋତେ ପତିତ-ପାବନ ।

ଏହି ମନ୍ଥନରୁ ନିର୍ଗତ ଯୌବନାମୃତର ସ୍ୱାଦ ଚାଖି ଉନ୍ମାଦରେ ଦି'ପଦ ଗାଉଛି -

ନବ ବିନୋଦ ସ୍ୱାଦ,

ଚାଖିଲା ମୋର ହୃଦ ।

ମଣି ଅମୃତ କନ୍ଦ,

ମନ ହେଲା ଆନନ୍ଦ ।

ପ୍ରାଚୀନ କାଳରେ କେବଳ ଯେ ଓଡ଼ିଆମାନେ ଓଡ଼ିଆ ଭାଷାର ଉନ୍ନତି ସାଧନ କରୁଥିଲେ, ତାହା ନୁହେଁ; ଅନ୍ୟାନ୍ୟ ପ୍ରାଦେଶିକ ଭାଷାରେ ମଧ ଓଡ଼ିଆମାନେ ଗ୍ରନ୍ଥ ରଚନା କରୁଥିଲେ ଓ କରୁଛନ୍ତି ମଧ । **(ଏହାର ପ୍ରତ୍ୟକ୍ଷ ନଜିର 'ସାରଳା ରତ୍ନଭଣ୍ଡାର ରସସାଗର' ଗ୍ରନ୍ଥର ୨ୟ ଖଣ୍ଡ ଅବତରଣିକାରେ ଦର୍ଶାଯାଇଛି ।)** ସେହିପରି ଅନ୍ୟାନ୍ୟ ପ୍ରଦେଶର ଭାଷାଭାଷୀ ଲୋକେ ମଧ ଓଡ଼ିଆ ଭାଷାରେ ଗ୍ରନ୍ଥ ରଚନା କରୁଥିଲେ । ଏହି ଓଡ଼ିଆ ହିତାକାଂକ୍ଷୀମାନଙ୍କ ମଧରେ ଜଣେ ପଶ୍ଚିମା **('ପ୍ରେମପଞ୍ଚାମୃତ' -ରଚୟିତା କବି ଭୂପତି)**, ଜଣେ ବଙ୍ଗାଳୀ **('ପରିମଳା'- ପ୍ରଣେତା ନରସିଂହ ସେଣ)** ଓ ଜଣେ ତେଲେଙ୍ଗା **(ଆଧ୍ୟାତ୍ମ ରାମାୟଣ ଅନୁବାଦକ - କବି 'ଗୋପାଳ' ବା 'ଗୋପାଳୟା' ।)** ଏହି କବି ଲେଖିଛନ୍ତି -

'ତେଲେଙ୍ଗା କୁଳେ ମୁହିଁ ଜାତ
ମୋ' ନାମ ଗୋପାଳ ପତିତ ।'

ଏହି କବି ଦକ୍ଷିଣରୁ ଯାଇ 'ଅଜିତ ସିଂହ' ମହାରାଜାଙ୍କ ପାଖରେ ଥିଲେ । ସେ 'ଆଧ୍ୟାତ୍ମ ରାମାୟଣ'ର ଶେଷରେ ଲେଖିଛନ୍ତି -

'ତାହାଙ୍କ ଅନ୍ନବସ୍ତ୍ର ଖାଇ,
କ୍ଷେତ୍ରି ବୃତ୍ତିର ଆଶ୍ରେ ଥାଇ ।
ଶ୍ରୀ ମହାରାଜାଙ୍କ ସେବାରେ,
କେବଳ ଥାଇ ନିରନ୍ତରେ ।'

ଓଡ଼ିଆରେ ଏ ସମ୍ପର୍କରେ ପ୍ରବାଦଟି ହେଲା -

**'ଯାହାର ଲୁଣ ଖାଇ ତାହାର ଗୁଣ ଗାଇ ।'**

**ଦୀନକୃଷ୍ଣ (ରସ ବିନୋଦରେ)** ଭକ୍ତ ବଳରାମ ଦାସ ସାମନ୍ତ ସିଂହାରଙ୍କୁ ଆନ୍ତରିକ କୃତଜ୍ଞତାର ପରିଚୟ ଦେଇ ଲେଖିଛନ୍ତି -

'ଯାହାର ଅନ୍ନ ବସ୍ତ୍ର ଖାଇ ।
ତା' ସୁଖ ଚିନ୍ତା କରୁଥାଇ ।'

ଏହି ରାଜା ଅଜିତ ସିଂହ ଖ୍ରୀଷ୍ଟାବ୍ଦ ୧୬୬୦ରୁ ୧୭୩୨ ପର୍ଯ୍ୟନ୍ତ ରାଜତ୍ୱ କରିବାର ତଥ୍ୟ 'ସମ୍ବଲପୁର ରାଜବଂଶ'ର ଇତିହାସରୁ ମିଳେ । ତେଣୁ ଏହା ନିଛକ ଭାବରେ କୁହାଯାଇ ପାରିବ ଯେ ସପ୍ତଦଶ ଶତାବ୍ଦୀର ଶେଷ ଭାଗରେ ମହାରାଜା ଅଜିତ ସିଂହଙ୍କ ସେବାରେ ଥାଇ ସେ ଓଡ଼ିଆରେ 'ଆଧ୍ୟାତ୍ମ ରାମାୟଣ' ଅନୁବାଦ କରିଥିଲେ ୩୦୦ ବର୍ଷ ପୂର୍ବରୁ ଏହି ତେଲଙ୍ଗା କବି 'ଗୋପାଳ' । ଏହି ଅନୁବାଦ ଗ୍ରନ୍ଥରେ ନିଜ ସମ୍ପର୍କରେ ଯେଉଁ ସୌଜନ୍ୟ

ପ୍ରକାଶ କରିଛନ୍ତି, ତାହା ମୋ' ପାଇଁ ମଧ୍ୟ ଅକ୍ଷରେ ଅକ୍ଷରେ ପ୍ରଯୁକ୍ତ । ସେଇ ବରେଣ୍ୟ ମୁକ୍ତଭାଷୀ କବିଙ୍କର ପଦାଙ୍କ ଅନୁସରଣ କରି ତାଙ୍କରି ଲେଖାକୁ ମୋ' ପାଇଁ ଦୋହରାଇଲି -

ନିତ୍ୟେ ଅଧର୍ମ ଆଚରଇ ।
ପରସ୍ତିରୀଙ୍କି ମନ ଦେଇ ।।
ହୋଇଣ ଇନ୍ଦ୍ରିୟ ଆୟର ।
ଧନେ ବ୍ୟାକୁଳ ମୋର ଚିତ୍ତ ।।
ଆବର ଆବୃତରେ ଥାଇ ।
ନାନା ଜୀବିକା ଆଚରଇ ।।
ପରର ହିତ ବୁଦ୍ଧି ତେଜି ।
ଅପକାରରେ ମନ ମଜ୍ଜି ।।
ମିଥ୍ୟା ମୁଁ କହଇ ବହୁତ ।
ଅନେକ ଲଙ୍ଘଇ ସୁକୃତ ।।
ଏଣୁ ପାତକୀ ମୋ' ସମାନ ।
ନାହିଁ ନୋହିବ ଜଗତେଣ ।।

**ଏହି ଗ୍ରନ୍ଥର ୪ର୍ଥ ଖଣ୍ଡ 'ଅବତରଣିକା'ରେ ପ୍ରହେଳିକା/ନାଁଦିଆ ସମ୍ପର୍କୀୟ ଆଲୋଚନାର ପୃଷ୍ଠା ୭୮ରେ** 'ପ୍ରହେଳିକାକୁ ଇଂରାଜୀରେ riddle ଏବଂ ଓଡ଼ିଆରେ 'ପହଳି ବା ନାଁ ଦିଆ' କୁହାଯାଏ ବୋଲି ଦର୍ଶାଯାଇଛି ।'

**ପୁଣି ପୃଷ୍ଠା ୮୧ରୁ ୮୩ ମଧ୍ୟରେ** ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ଓ ଭିନ୍ନ ଭିନ୍ନ ଭାଷାରେ ପ୍ରଚଳିତ ପ୍ରହେଳିକାର ନାମକରଣମାନ ସନ୍ନିବେଶିତ ହୋଇଛି ।

ପଶ୍ଚିମବଙ୍ଗ ଓଡ଼ିଶା ସୀମା ନିକଟବର୍ତ୍ତୀ ଗ୍ରାମମାନଙ୍କରେ ପ୍ରହେଳିକାର ନାମ 'ଢକ' । ଏହା କଞ୍ଚା ଓଡ଼ିଆ ଶବ୍ଦ 'ଢଗ'ରୁ ସୃଷ୍ଟି ବୋଲି ଉଲ୍ଲେଖ କରା ହୋଇଛି ।

ଓଡ଼ିଆରେ ପ୍ରହେଳିକାକୁ ଛଅପ୍ରକାର ନାମକରଣ କରାଯିବାର ସୂଚନା ମିଳେ ଯଥା:- (୧) ପ୍ରହେଳିକା, (୨) ପହଳି, (୩) ପହଡ଼ି, (୪) ନାଁଦିଆ, (୫) ଶ୍ଳୋକ, (୬) ଧନ୍ଦା । ଏହି ଛଅପ୍ରକାର ନାମକରଣ ମଧ୍ୟରେ ମୌଳିକ ଓଡ଼ିଆ ଶବ୍ଦ ନାହିଁ ବୋଲି ଆମ୍ଭେ ମର୍ମେ ମର୍ମେ ଅନୁଭବ କରୁଥିଲୁ ମାତ୍ର ଆମ୍ଭ ପାଖରେ କୌଣସି ତଥ୍ୟ ବା ନଜିର ନଥିବାରୁ ଆଜକୁ ଦୁଇବର୍ଷ ହେବ ଧନ୍ଦି ହେଉଥିଲି ।

ମା' ସାରଳାଙ୍କ ଅନୁକମ୍ପାରୁ ଏକ ଅଲୌକିକ ଘଟଣାଚକ୍ରର ପରିପାକରେ ପଡ଼ି ପ୍ରହେଳିକାର ମୌଳିକ ତଥା କଞ୍ଚା ଓଡ଼ିଆ ଶବ୍ଦ ଯେ **'ଢେଗ'** ତାହା ଉଦ୍ଧାର କରିପାରିଛି ।

ଘଟଣାଟି ଏହିପରି -

'ଆୟକର ଅପିଲ କମିସନର ମୋର ଗୋଟିଏ ଅପିଲ୍‌ର ବିଚାର ଦିନ ସମ୍ବଲପୁରରେ ଧାର୍ଯ୍ୟ କଲେ । ମୁଁ ସମ୍ବଲପୁର ଟ୍ରେନ୍‌ରେ ଯାଇ କମିସନର ଶ୍ରୀ ଚନ୍ଦ୍ରଶେଖର ଦାସ, ଆଇ.ଆର.ଏସଙ୍କ ଇଜଲାସରେ ବିଚାର କାର୍ଯ୍ୟ ସମ୍ପାଦିତ କଲି । କୌଣସି କାମ ନଥିଲେ ମଧ ସମ୍ବଲପୁର ଆଞ୍ଚଳିକ ଆୟକର କମିସନର ଶ୍ରୀ ଦୁର୍ଗାପ୍ରସାଦ କର, ଆଇ.ଆର.ଏସ'ଙ୍କ ସହିତ ସୌଜନ୍ୟତାମୂଳକ ସାକ୍ଷାତ କରିବାକୁ ତାଙ୍କ ଅଫିସ କମରାରେ ପଶିଲି । କଥା ପ୍ରସଙ୍ଗରେ ସେ ମୋତେ ଆଦିବାସୀମାନଙ୍କ ସମ୍ପର୍କରେ 'ଭେରିଆର ଏଲୁଇନ୍' (Verrier Elwin) ପ୍ରଣୀତ ଏକ ନିର୍ଦ୍ଦିଷ୍ଟ ଗ୍ରନ୍ଥ ପଢ଼ିବାକୁ କହିଲେ । ଏହି ଗ୍ରନ୍ଥ ପୂର୍ବତନ ମୁଖ୍ୟ ଆୟକର କମିସନର ଶ୍ରୀଯୁକ୍ତ ଗୋପାଳ ପ୍ରସାଦ ନନ୍ଦଙ୍କ ପାଖରେ ମିଳିବ ବୋଲି ସୂଚନା ମଧ ଦେଲେ ।

ମୁଁ ତତ୍‌କ୍ଷଣାତ ଗ୍ରନ୍ଥ ଓ ଲେଖକଙ୍କର ନାମ ଟିପି ରଖିଲି । ଭାବିଲି ବର୍ତ୍ତମାନ ତ ହେବ ନାହିଁ, ପରେ କେବେବେଳେ ସମୟ କରି କଟକ ଗଲେ ଶ୍ରୀଯୁକ୍ତ ନନ୍ଦଙ୍କ ଠାରୁ ସେ ଗ୍ରନ୍ଥଟି ଆଣିବି ।

ସମ୍ବଲପୁରରୁ ଫେରିଲି ଟ୍ରେନ୍‌ରେ । ଟ୍ରେନ୍ ସମ୍ବଲପୁରରୁ କଟକ ଦେଇ ପୁରୀ ଯାଏ । ଟ୍ରେନ୍ କଟକରେ ଭୋର ଭୋର ପହଞ୍ଚେ । ସେତିକିବେଳକୁ ବାଲେଶ୍ୱର ଯିବା ପାଇଁ ତିନୋଟି ଟ୍ରେନ୍ ଆଗପଛ ହୋଇ ମିଳେ । ଏହି ନିୟମାନୁସାରେ ପୂର୍ବେ ଆମେ ପ୍ରତ୍ୟେକଥର ଯେକୌଣସି ଟ୍ରେନ୍ ଧରି ବାଲେଶ୍ୱରରେ ଦିନ ୯ଟା/୧୦ଟା ସୁଦ୍ଧା ପହଞ୍ଚିଯାଉ, ବ୍ୟତିକ୍ରମ ହୁଏ ନାହିଁ ।

ମାତ୍ର ସେଦିନ ଟ୍ରେନ୍ ପ୍ରାୟ ଦୁଇଘଣ୍ଟା ବିଳମ୍ବରେ କଟକରେ ପହଞ୍ଚିଲା । ବାଲେଶ୍ୱର ଆଡ଼କୁ ଯିବାର ତିନୋଟିଯାକ ଟ୍ରେନ୍ ସେତେବେଳକୁ ଚାଲି ଯାଇଥାଏ । ତେଣୁ ବାଧ ହୋଇ ହୋଟେଲ୍‌ରେ ଆଶ୍ରାନେଇ କଟକରେ ରହିଲୁ ।

ଶ୍ରୀଯୁକ୍ତ ନନ୍ଦଙ୍କ କଥା ମନରେ ଉଦୟ ହୁଅନ୍ତେ ତାଙ୍କ ସହିତ ସାକ୍ଷାତ କରିବି ବୋଲି ପ୍ରବଳ ଭାବାବେଗ ହେଲା । ସେ ତାଙ୍କ କଟକ ବସାରେ ଅଛନ୍ତି କି ନାହିଁ, ଜାଣିବି କେମିତି ? ମୋ ପାଖରେ ତାଙ୍କ କଟକ ଟେଲିଫୋନ୍ ନମ୍ବର ନଥିଲା । ଶ୍ରୀଯୁକ୍ତ ନନ୍ଦଙ୍କର ପୂର୍ବତନ ପ୍ରାଇଭେଟ୍ ସେକ୍ରେଟାରୀ ଶ୍ରୀଯୁକ୍ତ ଏସ୍. ଏନ୍. ପାଢ଼ି ଭୁବନେଶ୍ୱରରେ ଥାଆନ୍ତି । ତାଙ୍କ ସହିତ ଟେଲିଫୋନ୍‌ରେ ଯୋଗାଯୋଗ କରି ଶ୍ରୀଯୁକ୍ତ ନନ୍ଦଙ୍କ ଟେଲିଫୋନ ନମ୍ବରଟି ହସ୍ତଗତ କରି ତାଙ୍କୁ ଫୋନ୍ କଲି । ସେ ତାଙ୍କ ଘରେ ଥିଲେ । ମୋ ସହିତ ସାକ୍ଷାତ କରିବେ ବୋଲି ଆଗ୍ରହ ପ୍ରକାଶ କଲେ । ତତ୍‌କ୍ଷଣାତ ମୁଁ ତାଙ୍କୁ ଯାଇ ମୁଲାକାତ କଲି । ଯେଉଁଥିପାଇଁ ଗଲି, ତାହା ଫଳପ୍ରଦ ହେଲା ନାହିଁ - ଉକ୍ତ ଗ୍ରନ୍ଥ ମିଳିଲା ନାହିଁ । ନିରାଶ ହେଲି । ଓ୍ୱାପସ ଆସିଲା ବେଳକୁ

ଶ୍ରୀଯୁକ୍ତ ନନ୍ଦ ତାଙ୍କ ଭାଇଙ୍କ କୋଠରୀରେ ଗୁଡ଼ାଏ ପୁରୁଣା କିତାବ ସବୁ ଦେଖାଇଲେ । ତନ୍ମଧ୍ୟରୁ ଆଠପୃଷ୍ଠିଆ ଡିମେଇ ସାଇଜର ଅଧା ଚଟି ବହିଖଣ୍ଡେ ଦେଲେ । ପୁସ୍ତିକାଟିର ନାମ **'ଢେଗରତ୍ନ'** ରଚୟିତା ୰ କବି ଭୁବନେଶ୍ୱର କବିଚନ୍ଦ୍ର । ପ୍ରକାଶକ - **ଶ୍ରୀ ରାଧାକୃଷ୍ଣ ପାଠୀ ଶର୍ମା, ହିଞ୍ଜଳୀକାଟୁ, ଗଞ୍ଜା । ମୂଲ୍ୟ - ଟ୦୯ (ପୁରୁଣା ପଇସା । ଟଙ୍କାକ ୬୪ ପଇସା ବେଳେ ।) (ପ୍ରକାଶକାଳ ନଥିଲା)** । ଏଥିରେ କେବଳ ୩୨ ଗୋଟି ପ୍ରହେଳିକା ଶୃଙ୍ଗାର ରସରେ ଜୁଡୁବୁଡ଼ ହୋଇ ଛନ୍ଦରେ ଲିପିବଦ୍ଧ ହୋଇଛି ଏବଂ ତା'ର ଉତ୍ତର ମଧ୍ୟ ଦିଆଯାଇଛି । ଏହାକୁ ପାଠ କଲେ ଏହା ଯେ ଓଡ଼ିଆ ପ୍ରହେଳିକାର ଲୁପ୍ତ ପ୍ରାୟ ଅମୂଲ୍ୟ ରତ୍ନ ଓ ରସର ସାଗର ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । **'ଢେଗ ରତ୍ନ'** ପୁସ୍ତିକାଟିର **'ଗୌରଚନ୍ଦ୍ରିକା'** ପଦଟି ନିମ୍ନରେ ଉଦ୍ଧାର କଲି -

କେଉଁ ନାଗରବର ନାଗରୀକି
　　କଉତୁକେ ବୋଲେ ତୁତ ବିବେକୀ,
କହି ପାରିବୁ କି ଢେଗ ରତନ ?
　　କଥା ପଚାରିବି ବଡ଼ ଯତନ,
କହିବି ବୋଇଲା,
　　କଟାକ୍ଷେ ଅନାଇ ନବଛଇଳା ।

ଏହି ପୁସ୍ତିକାଟିରେ ପ୍ରଦତ୍ତ 'ଢେଗ' (= ପ୍ରହେଳିକା) ଗୁଡ଼ିକୁ ଅକ୍ଷରକ୍ରମେ ଏହିଠାରେ ନିମ୍ନରେ ପ୍ରଦତ୍ତ ହେଲା ।

☼ କ୍ଷୀଣ ଅଣ୍ଟା ତା'ର ଚିକ୍କଣ ଅଙ୍ଗ, ଖଟ ଉପରକୁ ଚାଖଣ୍ଡେଡେଙ୍ଗ,
ଖିଆଲମଣଇ ଯେତେ ମାଡ଼ିଲେ; କ୍ଷଣେ ନଛାଡ଼ଇ ଛାଡ଼ିଲେ ହେଲେ,
ଖାସା ତା ଲମ୍ପଟ, ଖରାଦିନରେ ଶୁଭେ ପଟପଟ ।୧। (କଠଉ)

☼ ଗାଢ଼ ଦେହ ତା'ର ମୂସଳଲମ୍ବ, ଗୋଡ଼ଦୁଇ ରଖେ କରିଣ ଦମ୍ଭ,
ଗାତ ଭିତରକୁ ମାରେ ତୁହାଇ, ଗୁଞ୍ଜିବାରେ ଧପଧପ ଶୁଭଇ,
ଗତାଗତେ ଝାଳ, ଗଳିନାରୀଙ୍କର ତିନ୍ତଇଚେଳ ।୨। (ଢେଙ୍କୀ)

☼ ଘଟଘଟ ଶୁଭେ ଘଟ ନୁହଇ, ଘଡ଼ି ହୋଇ ତଳ ଉପରେ ରହି,
ଘରକ୍ଷଣେ ଗଳିପଡ଼ଇ ରସ, ଘଟଣଥାଳି ପଟର ସଦୃଶ,
ଘନକେଶୀ ବାଳା, ଘଟିଥାଏ କଣା ମଝିରେ କିଳା । ।୩। (ଘୋରଣା)

☼ ଅଙ୍ଗ ଉପରେ ସେ ଘାଲି ହୁଅଇ, ଅଙ୍ଗୀକାର କରେ ଦେଲେ ପୂରାଇ
ଅତି ସୁଖଲାଗେ ଶୀତକାଳରେ, ଉଣା ନୁହଇ ସେ ରଙ୍ଗଢୁଲାରେ,
ଉରକୁ ଉସୁମ, ଉତମା! ଉତମେ କହକି ନାମ । ।୪। (ଅଙ୍ଗୀ)

☼ ଚିହ୍ନି ପାରିବୁକି ସେ କେଉଁ ବୀର, ଚକଟି ହୁଅଇ ଦେହ ଉପର,
ଚଉରପରାଏ ଚମକଣରେ, ଚରିଚରି ଯାଏ କଳାବଣରେ,
ଚମତ୍କାର ଏହି, ଚାଟଇ ରକତ ଜୀବନୁଆଁଇ । ।୫। (ଖୁର)

☼ ଛଟା ତାର ନାଠୀକାଠୀରୁ ବଳେ, ଛଟକେ ଗାଡ଼ିୟା ଭିତରେ ଖେଳେ,
ଛୋଟଅଟେ ଲମ୍ବ ହୁଏ ଉଠିଲେ, ଛାଡ଼ଇ ନାହିଁ ସେ ଛାଡ଼ିଲେ ହେଲେ,
ଛଇଳା ରମଣୀ, ଛ' ମାସକେ କହି ପାରିବୁକି ପୁଣି । ।୬। (ଜୋକ୍)

☼ ଯୋଡ଼ିଏ ନୁହେ ସେ ଯୋଡ଼ିଏ ଫାଳ, ଜମାଇ ଦେଇଛି ଉପରେ ଠୁଳ
ଯୁବତୀମାନଙ୍କ ଅଟଇ ମୂଳ, ଯିବେ ଉଣାହୋଇ ଶୋଭା ସକଳ,
ଯତନେ ବର୍ତ୍ତୁଳ, ଜଡ଼ି ରହିଥା'ନ୍ତି ସେ ସଦାକାଳ । ।୭। (ଫରୁଆ)

☼ ଝିଙ୍କାଝିଙ୍କିରେ ଭିଡ଼ାଭିଡ଼ି ହୋଇ, ଝୁଲି ଝୁଲି ମାଇ ଅଣ୍ଟିରା ଦୁଇ,
ଝାଡ଼ିଦେଇ ଡାଙ୍ଗ ମାଡ଼ଇ ଯେବେ, ଝର ବହି ଗାତେ ପଶଇ ତେବେ,
ଝାଳ ବହିପଡ଼େ, ଝଟତିରେ ଲେଉଟନ୍ତି ସେ ଗାଡ଼େ । ।୮। ... (କେଳୁଆପଟା)
ବା (ଡଙ୍ଗାର ଆହୁଲା ପଟା)

☼ ନିରତରେ ଥାଇ ଗଭୀରେ ଭଲେ, ନାହିଁ ନକରଇ ଯେତେ ପଶିଲେ,
ନିଶବଦେ ଚଳେ, ହଲାଇଦେଲେ, ନିବରତି ଯାଏ ବୁଲାଇ ଦେଲେ,
ନିଦାନ କରିଣ, ନାମକି ଏହାର କହିବୁ ପୁଣ । ।୯। (ନାହା)

☼ ଟୋକାଟୋକି ଦୁଇ ଅଟନ୍ତି ସେହି, ଟୋକି ଦେଇଥାଏ କଣା ଦେଖାଇ,
ଟକଟକ କରି ମାଡ଼ଇ ଟୋକା, ଟିକାଏ ସୁରତି କରଇ ଏକା,
ଟଳିଲେ ପଡ଼ଇ, ଟାଣସରେ ତହୁଁ ଲୁଗାପିନ୍ଧଇ । ।୧୦। (କୋଳପ ଓ କଞ୍ଚ)

☼ ଠିଆ ହୋଇ କରି ସେ ସଦାକାଳେ ଠେଙ୍ଗାଧରି ଗାତ ମଝିକି ଚଳେ
ଠିକେତା ଭିତରୁ ରସକାଢ଼ଇ, ଠେସି ନାଳିଆରେ ଦିଏ ପକାଇ,
ଠାବେ ଠାବେ ଯାଇ, ଠକାଠେ ମାଡ଼ି ଫଳ ଉପୁଜଇ । ।୧୧। (ଟେଣ୍ଡା)

☼ ଡେଙ୍ଗ ଚାଖଣ୍ଡେତା କଣା ଗାଣ୍ଡିରେ, ଡାଙ୍ଗ ଗୋଟିଏକ ଦେଲେ ତୁଣ୍ଡରେ,
ଡବଡବ କରି ମାଡ଼ିଲେ ତହିଁ, ଡାକି ବାହାରକୁ ବାହାରି ଯାଇ,
ଡୁବାଏ ଶରୀର, ଡକାୟତପରି ଚାଲି ତାହାର । ।୧୨। (ପିଚିକାନଳୀ)

☼ ଢମ ନୁହେଁ ବୀର ସେ ଦୁଇଜଣ, ଢାଳେ କଣାରେ ପୂରାନ୍ତି ସେଡାଣ,
ଢଙ୍ଗେ ଉଠାଉଠି ହୋଇ ପେଲନ୍ତି, ଢାମଣା ନାଗପରି ସୁଁ କାରନ୍ତି
ଢାଳେତରଳଇ, ଢକାପରି ଶୁଭେ ମାରେନିଠେଇ । ।୧୩। (କମାରଜନ୍ତା)

☼ ଅଟାଟୋପବୋଲି ବୋଲିବୁ ନାହିଁ, ଅନେକ ଶୀରାରେ ମଣ୍ଡଳୀ ହୋଇ,
ଅଛି ଦୁଇବାଟ ତଳ ଉପର, ଅଣ୍ଡାଳି ଆଣନ୍ତି ପୁରାଇକର,
ଆଣ୍ଟେ ବସି ମାଡ଼ି, ଅଣ୍ଟିରେ ରଖନ୍ତି ଗୋଟିଏ କାଢ଼ି । ।୧୪। (ପୋଲୁହ)

☼ ତିନିଗୋଟି ଠୁଳ ଦୁଇ ବାଟରେ, ସ୍ତ୍ରୀରୀମାନଙ୍କର ପ୍ରୀତି ତହିଁରେ,
ତୁହାଇ ତୁହାଇ ଠେଙ୍ଗା ପେଲାନ୍ତି, ତଳବାଟେ ଉପରକୁ ଉଠାନ୍ତି ।
ତାତିଯାଏ ଉଠି, ତହିଁ ଉତ୍ତାରେ ବିଜଯାଏ ଫୁଟି । ।୧୫। (ଚୁଲି)

☼ ଥାଳିଆ ପରାୟେ ଫନ୍ଦାରେ ବାଟ, ଥଣ୍ଟ ଗୋଜା ହୋଇ ବଡ଼ ଉଝଟ,
ଥାଏ ତା' ଭିତରେ ଆଲୁଅରିସ; ଥାପନ୍ତି ଲମ୍ଵ ଗୋଟାଏ ସେ କିସ
ଥବିରରେ ଥାଏ, ଥୟନୋହି ରାତ୍ରେ ଛଟା ଦେଖାଏ । ।୧୬। (ଦୀପ)

☼ ଦୁଇଫାଳିଆରେ ତିନିକୋଣିଆ, ଦିଶେ ମଝିଜାକ ଫାଳ ବଣିଆ,
ଦେଇଥାଏ ଦୁଇଗୋଡ଼ ଓସାରି, ଦେଖ୍ କଣାକିଳା ଦିଅନ୍ତି ମାରି
ଦୁଖିର ସୋଦର ! ଦିଅ କହି କିସ ନାମ ଏହାର । ।୧୭। (ଶଗଡ଼)

☼ ଧୀରେ ଛିଡ଼ା ହୋଇ ଅଣାଇ ଦେଇ, ଧରି ଫାଳିଆରେ ପୁରାଇ ଦେଇ,
ଧରାଧରି ହୋଇ ତଳ ଉପର, ଧନ୍ଦାଳି ମାରନ୍ତି କେଡ଼େ ସୁନ୍ଦର,
ଧାର ଚାଲିଯାଇ, ଧନରେ ଅସୂତ୍ରପାଇଟି ନାହିଁ । ।୧୮। (କରତ)

☼ ନାଗର ନାଗରୀ ସେ ଦୁଇଜଣ, ନାଗରୀର ବାଟ ପୋଲାଟା ଜାଣ,
ନିଠାଇକୁଟାଇ ଧୂଳି ଉଠାଇ, ନାଟକଲାପରି ମାଡ଼ି କାଢ଼ଇ,
ନ କରଇ ନାହିଁ, ନିରତେ ସେଗାତ ଦେଖାଇ ଥାଇ । ।୧୯। ... (ହେମଦସ୍ତା)

✿ ପଟିଟି ପରିରେ ପଡ଼ଇ ଶୋଇ, ପାତି ଦେଇଥାଇ ଅଣାଇ ହୋଇ,
ପେଲିପେଲି ରସ ପଡ଼େ କଣାରେ, ପଡ଼ିଲେ ଖେଳଇ ତା'ର ଉପରେ
ପଚାରଇ କହ, ପୋଥିରେ ବିଚାରି ଫେଡ଼ ସନ୍ଦେହ । ।୨୦। (ବେନ୍ଦା)
ବା (ଲମ୍ବା ଖଇଁଚି)

✿ ଫଳିମାଛ କିସେ ଫାଳିଆ ଦୁଇ, ଫଟାପରି ଦିଶେ ଫଟା ନୁହଇ,
ଫନ୍ଦି ଛନ୍ଦାଛନ୍ଦି ହୁଅନ୍ତି ଗାଢ଼େ, ଫିଟାଇଲେ କେହି କାକୁ ନଛାଡ଼େ ।
ଫେଇତା ଭିତରେ, ଫନ୍ଦାଅନ୍ତି ଗୋଟେ ହାତେ ଡେଙ୍ଗରେ । ।୨୧। ... (ପୋଥି ଛନ୍ଦା)

✿ ବଡ଼ ଓସାର ତା'ର ପରପଟ, ବାନ୍ଧିଥା'ନ୍ତି କରି ତଳକୁ ଛୋଟ,
ବାଳାଏ ପୁରାଇ ହାମୋଳିଦ୍ୟନ୍ତି, ବାତ ଜାତ ହୁଏ ତହିଁରୁ ଅତି,
ବାନ୍ଧବି ବିଚାର, ବେଳବୁ ହୁଅଇ ଭଲ ଅସାର । ।୨୨। (କୁଲା)

✿ ଭଉଁରି ଆକୃତି ନୋହିବୁ ବଣା, ଭର୍ତ୍ତି ହୋଇଥାଇ ଭିତରେ କଣା
ଭାବିନିଏ ବୀଜ ପୁରାଇ ଦେଲେ, ଭଳେ ଗଳିପଡ଼େ ବୁଲାଇ ଦେଲେ,
ଭାଳି କହିସହି ! ଭଣ୍ଡ ବୋଲି ଏହା ବୋଲିବୁ ନାହିଁ । ।୨୩। (ଚାଲୁଣୀ)

✿ ମହା ଓସାରତା ପୃଥୁଳ ପେଟ, ମୁଦି ହୋଇ କରି ନଥାଏ ବାଟ,
ମୂଳ ସରୁ ଅଗ ରୋଟ ଗୋଟାଏ, ମାଇଲେ ତହିଁରେ ଉତ୍ତମ ହୁଏ,
ମେଲିଲେ ନିରୋଳି, ମନ୍ଦନୋହି ବୀଜ ପଡ଼ଇ ଗଳି । ।୨୪। (ଓଳିଆ)

✿ ଜଳରେ ତାହାର ଅଟଇ ଘର, ଜବେ ଡଗ ଡଗ ଚାଲଇ ବୀର
ଜୋଗାଇ ଭିତରେ ମାଡ଼ିକାଢ଼ଇ, ଯେବେ ଛୁଇଁ ଦେବ ମୁଦିହୁଅଇ,
ଜବ୍ର ଆଣ୍ଠଫାଳ, ଜାଣିଲେଉଟାଇ ଦେଲେ କଅଁଳ । ।୨୫। (କଚ୍ଛପ)

✿ ରସିକା ରସିକ ସେହି ଯୋଡ଼ିଏ, ରସିକା କଣା ମେଲି ଦେଇଥାଏ,
ରସିକ ତୁହାଇ ତୁହାଇ ପେଲେ, ରସ ମଛି ଜାତ ହୁଅଇ ଭଲେ,
ରମ୍ୟେ ହୁଏ ସ୍ନିଗ୍ଧ, ରସ ପରି ଦିଶେ କିଅବା ଦୁଗ୍ଧ । ।୨୬। ... (ବିରି ପେଷଣା)

✿ ଲଳନା ଗୋଟିଏ କଣାତା ମଝି, ଲମ୍ବ କରି ଗୋଟେ ଦିଅନ୍ତି ଖଞ୍ଜି
ଲଡ଼ବଡ଼ କରି ଦେଲେ ବୁଲାଇ, ଲାଳପରି ତହୁଁ ବହି ପଡ଼ଇ,
ଲଙ୍ଗଳା ଅଟଇ, ଲାଗଇ ବାଳରେ ସନ୍ଦେହ ନାହିଁ । ।୨୭। (ତେଲିଘଣା)

✿ ବାନ୍ଧବୀ ବାନ୍ଧବ ଯୋଡ଼ିଏ ସେହି, ବାନ୍ଧବୀ ତଳେ ପଡ଼ିଥାଏ ଶୋଇ,
ବାନ୍ଧବୀ ତା'ପରେ ହୁଅଇ ଘାଲି, ବଡ଼ କଉତୁକେ ଦିଅଇ ପେଲି,
ବାନ୍ଧବୀ ବିଚାର, ବୋଲ ହଳଦିରେ ସେ ଜର ଜର । ।୨୮। (ଶିଳଶିଳୁପା)

✿ ସୁନ୍ଦର ସୁନ୍ଦରୀ ଦୁଇ ବିଚାର, ସୁନ୍ଦରୀର ଗାତେ ପଶେ ସୁନ୍ଦର,
ସବୁ ଅଗ ତାର ଗୋଟା ମୂଳରେ, ସରସର କରି ମନ୍ଥଇ ଖରେ,
ସୁରସ ବାହାର, ସମସ୍ତ ଜନେ କରନ୍ତି ଆହାର । ।୨୯। ... (ଦଧିହାଣ୍ଡି ଓ ଖୁଆ)

✿ ସଟା ବଟା ନୁହେ ମୁଣ୍ଡରେ ଜଟା, ସୁତୀକ୍ଷ୍ଣ ମୁନ ମୂଳତା ମୋଟା,
ସୂତ୍ର ବେଢ଼ାଣେ ବସନ୍ତି ମାଡ଼ି, ସୂତ୍ରରେ ଝିକନ୍ତି କବୁ ନଛାଡ଼ି,
ସୁରୁ ସୁରୁ ବୁଲେ, ସଳଖେ କଣା ହୋଇଯାଏ ଭଲେ । ।୩୦। (ତରପଣ)

✿ ଶୀରା ତିନିରେ ସେ ତିନିଫାଳିଆ, ଶିଖେ ତିନିକଣା ଦିଶେ କାଳିଆ
ସୁନ୍ଦରୀମାନଙ୍କ ଉରଜ ପରି, ସୁବର୍ତ୍ତୁଳ ହୋଇ ବଡ଼ ମାଧୁରି,
ଶିରରେ ମୁକୁଟ, ସ୍ୱାଦୁ ମଧ ରସ ବାହାର ଆଣ୍ଟ । ।୩୧। (ନଡ଼ିଆ)

✿ ହଇରାଣ ହେବୁ ପରାତୁ ଆହା ! ହଟିକୁ କହିବି ବୋଲିଣ ଯାହା
ହୋଇଥାଏ ଗଳଗଳିଆ ଚକା, ହାରିବ ପଞ୍ଜରୀ ତାହାକୁ ଏକା,
ହଲାଇଲେ ପଡ୍ଡେ, ହେଜ ନଥାଏ ବାଟ ଚାରିଆଡ୍ଡେ । ।୩୨। (ମୂଷାକନ୍ତା)

= ଉପସଂହାର =

**କ୍ଷମାକର ଦୋଷ ପଣ୍ଡିତ ଜନ !**
**ଖ୍ୟାତ ଏହାର ନାମ ଢେଗରତ୍ନ,**
**କ୍ଷେପାକର ମୁଖୀ ସବୁ କହିଲା,**
**ଖାସା ଅର୍ଥ କଲ ପୁଂସ ବୋଇଲା,**
**ଖିଆଲ ଏଭଲେ,**
**କ୍ଷମେ ଭୁବନି କବିଚନ୍ଦ୍ର ବୋଲେ ।**



ଭାରତର ପ୍ରଖ୍ୟାତ୍ ଭାଷାତତ୍ତ୍ୱବିତ୍ ପଦ୍ମଶ୍ରୀ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ 'ସାରଳା ରତ୍ନଭଣ୍ଡାର ରସସାଗର'ର ପ୍ରଥମରୁ ସପ୍ତମ ଖଣ୍ଡ ପର୍ଯ୍ୟନ୍ତ ଗ୍ରନ୍ଥ ଗଭୀର ଅଧ୍ୟୟନ ଓ ଅନୁଶୀଳନ କରି ମୋତେ ବିଶେଷ ଅନୁପ୍ରାଣିତ ଓ ଅନୁଗୃହୀତ କରିଛନ୍ତି । ତାଙ୍କର ବିଜ୍ଞ ବିଚାର ସମ୍ବଳିତ 'ଅଭିମତ' ମୋର ସାଧନା ପଥରେ ପାଥେୟ ହୋଇ ରହିବ । ତାଙ୍କର ଏ ପ୍ରୋତ୍ସାହନ ପାଇଁ ମୁଁ ତାଙ୍କ ପାଖରେ ଚିରଋଣୀ ହୋଇ ରହିଲି ।

ପ୍ରଫେସର ଡକ୍ଟର ସଂଘମିତ୍ରା ମିଶ୍ର ଜଣେ ସୁଦକ୍ଷା ସମୀକ୍ଷକର ଦୃଷ୍ଟିଭଙ୍ଗୀରେ ଏହି ଗ୍ରନ୍ଥର ସୂକ୍ଷ୍ମ ଓ ସାମଗ୍ରିକ ମୂଲ୍ୟାୟନ କରି ଆଇନ୍ ବୃତ୍ତିଠାରୁ ମୋର ସାରସ୍ୱତ ସ୍ୱୀକୃତିକୁ ଅଧିକ ମହତ୍ୱ ପ୍ରଦାନ କରିଛନ୍ତି । ତାଙ୍କର ଏହି ଶ୍ରଦ୍ଧା ଓ ଶୁଭେଚ୍ଛା ପାଇଁ ମୁଁ ସଦା କୃତଜ୍ଞ ।

ସପ୍ତମଖଣ୍ଡ ସଂକଳନ ପାଇଁ ଉପାଦାନ ସଂଗ୍ରହ, ସଂପାଦନା, ସଂଯୋଜନା, ବ୍ୟବସ୍ଥାପନା, ଡି.ଟି.ପି., ତତ୍ତ୍ୱାବଧାନ ଇତ୍ୟାଦି କାର୍ଯ୍ୟରେ ଯେଉଁ ଶୁଭେଚ୍ଛୁ, ଶୁଭାନୁଧ୍ୟାୟୀ, ସହୃଦୟ ବ୍ୟକ୍ତିମାନେ ସହଯୋଗ ଓ ସହାୟତା କରିଛନ୍ତି ସେମାନଙ୍କ ନିକଟରେ ମୁଁ ସବୁଦିନ ପାଇଁ ଋଣୀ । ମୋର ପରମପ୍ରିୟ ପାରିବାରିକ ବଂଧୁ ବରିଷ୍ଠ ସାମ୍ବାଦିକ ଓ ସାହିତ୍ୟିକ ଶ୍ରୀ ମହେଶ୍ୱର ମୂଳିଆଙ୍କ ସାନ୍ନିଧ ଓ ସହଯୋଗ ନିରନ୍ତର ମୋରସାରସ୍ୱତ ଜୀବନକୁ ସମୁଜ୍ଜ୍ୱଳ କରିଛି । ତାଙ୍କର ପ୍ରେରଣ ଓ ପ୍ରୋତ୍ସାହନ୍ ମୋର ସ୍ମରଣୀୟ ହୋଇ ରହିବ । ମୋର ପୁତ୍ର ପ୍ରତିମ ଖ୍ୟାତନାମା ସାହିତ୍ୟିକ 'ଅକ୍ଷାଂଶ' ସାହିତ୍ୟ ପତ୍ରିକାର ସମ୍ପାଦକ, ଫକୀର ମୋହନ କଲେଜ୍, ବାଲେଶ୍ୱରରଅଧ୍ୟାପକ ଡକ୍ଟର ହରିଶ୍ଚନ୍ଦ୍ର ବେହେରା ନିଜର କର୍ମବହୁଳ ଜୀବନରେ ବହୁ ଶ୍ରମ ଓ ସମୟ ଦେଇ ଏ ଗ୍ରନ୍ଥର ପାଣ୍ଡୁଲିପିକୁ ପରିଷ୍କ୍ରିୟା କରି ମୋ ପ୍ରତି ଗଭୀର ଅନୁରକ୍ତି ଓ ଆନୁଗତ୍ୟ ପ୍ରଦର୍ଶନ କରିଛନ୍ତି । ସେଥିପାଇଁ ମା' ସାରଳାଙ୍କ ପାଖରେ ତାଙ୍କର ଓ ତାଙ୍କ ପରିବାରବର୍ଗଙ୍କ ଅଶେଷ କଲ୍ୟାଣ କାମନା କରୁଛି ।

'ଜ' - 'ଝ' ଅକ୍ଷରରେ ଡମାଳି ଚନ୍ଦ
ସମ୍ପୂର୍ଣ୍ଣ ହୋଇଲା 'ସପ୍ତମ ଖଣ୍ଡ'
ସୁଜନେ ଜନେ ନ ଘେନିମା ଦୋଷ
ସାରଳା ମାଆଙ୍କ ପାଦର ଦାସ ।

'ଗ୍ରନ୍ଥପ୍ରବେଶ' ସମାପ୍ତି କରି ବିଜ୍ଞ ପାଠକ ପାଠିକାମାନଙ୍କୁ ନମ୍ରତାର ସହିତ ପ୍ରଣାମ ଜଣାଉଛି ।

**ବିନୋଦ ବିହାରୀ ଦାସ**
ଆଡ୍‌ଭୋକେଟ
ବାଲେଶ୍ୱର ଠିକଣା - ପ୍ରୁଫ୍ ରୋଡ୍, ପୋ.ଅ. - ବାଲେଶ୍ୱର- ୭୫୬୦୦୧,
ଫୋନ୍ - ୨୬୨୩୭୨
ବାରିପଦା ଠିକଣା - ଗାନ୍ଧୀ ପାର୍କ ଗେଟ୍, ପୋ.ଅ. - ବାରିପଦା - ୭୫୭୦୦୧
ଫୋନ୍ - ୨୫୨୬୮୫



ମୂଲ୍ୟ -୫୫/- ଟଙ୍କା
୧୨ଟି ନୂତନ ଶୈଳୀର ଗଳ୍ପ ।



ମୂଲ୍ୟ -୧୧୫/- ଟଙ୍କା
୨୭୦୦ ପ୍ରବଚନ, ମାନବ ସମାଜର
କଲ୍ୟାଣ ଉଦ୍ଦେଶ୍ୟରେ ବିଶ୍ୱର
ମନୀଷୀମାନଙ୍କର ମୁଖନିସୃତବାଣୀ ।

# ଅବତରଣିକା

'ନିଜ ଭାଷାରେ ହିଁ ଜାତିର ମହାମୂଲ୍ୟ ସମ୍ପଦ ଭରି ରହିଛି । କଥାପଦକରେ ସହସ୍ର ସହସ୍ର ବର୍ଷର ଚିନ୍ତା, ଅଭିଜ୍ଞତାର ସଞ୍ଚୟନ ହୋଇଛି । ଲୋକ ପ୍ରବଚନରେ ଜାତିର ମେଧା, ତାର ଜାତୀୟ ଇତିହାସ, ସାମାଜିକ ବ୍ୟବସ୍ଥା, ଜୀବନ ଯାପନ ପ୍ରଣାଳୀ ଯେପରି ରୂପ ପାଇ ସଞ୍ଚିତ ହୋଇ ରହିଛି; ଭାଷାର ଅନ୍ୟ କୌଣସି ବିଭାଗରେ ଏପରି ଦେଖାଯାଏ ନାହିଁ । x x x x ଅଳ୍ପ କଥାରେ ମନଗହୀରରେ ଗଭୀର ରେଖାପାତ କରିବା; ପକ୍ଷ ଲାଗିଲା ପରେ ସେଗୁଡ଼ିକ ସହସ୍ର ସହସ୍ର ବର୍ଷରୁ ଉଡ଼ି ଏପର୍ଯ୍ୟନ୍ତ ଆସିଛନ୍ତି ।

ବିଭିନ୍ନ ପ୍ରବଚନ ବିଭିନ୍ନ ଯୁଗରେ ଜନ୍ମ ନେଇଛି । ଲୋକେ ଏହି ପ୍ରବଚନମାନଙ୍କରୁ ଯାହା ଜୀବନ୍ତ, ତାହା ସାଇତି ରଖିଛନ୍ତି । ଆଉ ଯାହା ମୃତ ତାହା ପରିହାର କରିଛନ୍ତି ।'

ରୁଷିଆର ଭାଷାବିଦ୍ ଏମ୍. ଶୋଲୋକୋଭ ପ୍ରବାଦ ସମ୍ପର୍କରେ ଯାହା ଲିପିବଦ୍ଧ କରିଥିଲେ ସେଇ ଉକ୍ତିକୁ ଢଗଢମାଳି, ପ୍ରବାଦ, ପ୍ରବଚନର ସଂଗ୍ରାହକ ଯୋଗଜନ୍ମା, କାଳଜୟୀ, ବଟକୃଷ୍ଣ ପ୍ରହରାଜଙ୍କ ସ୍ୱହସ୍ତ ଲିଖିତ (୧୫-୦୧-୫୯) ଓଡ଼ିଆ ପାଣ୍ଡୁଲିପିରୁ ଉଦ୍ଧୃତ କରିଛୁ । ଏହି ହାତଲେଖା ପାଣ୍ଡୁଲିପିଟି ଆମ୍ଭେ ୮ ପ୍ରହରାଜଙ୍କର ନାତି (ଝିଅର ପୁଅ) ଶ୍ରୀଯୁକ୍ତ ଗୋପାଳ ପ୍ରସାଦ ନନ୍ଦ, ଅବସରପ୍ରାପ୍ତ ମୁଖ୍ୟ ଆୟକର କମିସନର୍ (ଏହି ଗ୍ରନ୍ଥର ଜଣେ ଦିଗ୍‌ଦର୍ଶକ)ଙ୍କ ପାଖରୁ ସଂଗ୍ରହ କରିଛୁ ।

ତୁଳସୀଦାସ ତାଙ୍କ ରାମାୟଣରେ ବାଣୀଶ୍ରେଷ୍ଠ ଗଣନାଥଙ୍କୁ ବନ୍ଦନା କରି ପ୍ରାଚୀନ ଭାରତୀୟ ସାହିତ୍ୟର ପରମ୍ପରା ସମ୍ପର୍କରେ ଯେଉଁ ଶ୍ଳୋକଟି ରଚନା କରିଥିଲେ, ତାର ଅର୍ଥ ହେଉଛି - 'ଶବ୍ଦ ଅର୍ଥ ଓ ଛନ୍ଦର କର୍ତ୍ତା ଲୋକମଙ୍ଗଳ ବିଧାୟକ ବାଣୀ ବିନାୟକଙ୍କୁ ବନ୍ଦନା କରୁଛି ।'

ଛନ୍ଦ ଯେପରି ପାଠକ ଓ ଶ୍ରୋତାମାନଙ୍କୁ ଆକର୍ଷଣ କରେ, କଥା କହିଲା ଭଳି ରଚିତ କବିତା ସେପରି ଚିତ୍ତାକର୍ଷକ ହୁଏ ନାହିଁ । ବାସ୍ତବିକ ଛନ୍ଦବିହୀନ ଆଧୁନିକ କବିତା କେବଳ କେତେକ ପାଶ୍ଚାତ୍ୟ ଶିକ୍ଷିତଙ୍କ ମଧରେ ଆଦୃତ ହୁଏ ଅଥବା ଆଲୋଚିତ ହୁଏ । ମାତ୍ର ସାଧାରଣରେ ଏଭଳି କବିତା ପାଠ କଲେ ତା'ର ଆଗ୍ରହ ପ୍ରାୟ ନଥାଏ ବୋଲି କହିଲେ ଚଳେ ।

ଓଡ଼ିଆଛନ୍ଦ ସବୁ ସଂସ୍କୃତ ବା ପ୍ରାକୃତରୁ ଆସିଛି । ମାତ୍ର ସଂସ୍କୃତ ବା ପ୍ରାକୃତ ଛନ୍ଦମାନଙ୍କରେ ଗଣ-ନିୟମ ଥିଲାପରି ଓଡ଼ିଆ ଛନ୍ଦମାନଙ୍କରେ ତାହା ଦୃଷ୍ଟିଗୋଚର ହୁଏ ନାହିଁ । ଓଡ଼ିଆ ଭାଷାରେ ଏକାକ୍ଷର ବା ଦ୍ୱ୍ୟକ୍ଷର ଛନ୍ଦ ଆଦୌ ନାହିଁ । ଓଡ଼ିଆ ଛନ୍ଦର ଆରମ୍ଭ କେବଳ ତ୍ର୍ୟକ୍ଷରୀଠାରୁ ।

(୧) ଓଡ଼ିଆ ତ୍ର୍ୟକ୍ଷର ଛନ୍ଦ :-

✡ ଢ଼ୋକେ ପି । ଦଣ୍ଡେ ଜାଁ । - ଢ଼ଗ

(୨) ଓଡ଼ିଆ ଚତୁରକ୍ଷର ଛନ୍ଦ :-

✡ ପେଟ ପୋଷ । ନାହିଁ ଦୋଷ । - ଢ଼ଗ

(୩) ଓଡ଼ିଆ ପଞ୍ଚାକ୍ଷର ଛନ୍ଦ :-

✡ ବ୍ରାହ୍ମଣ ଭାତ । କପାଳେ ହାତ । - ଢ଼ଗ

✡ ଛାଇକି ଛତା । ପାଣିକି ଯୋତା । - ଢ଼ଗ

(ଓଡ଼ିଆ ଭାଷାରେ ଗୁରୁବର୍ଣ୍ଣର ଲଘୁ ଉଚ୍ଚାରଣ ଓ ଲଘୁବର୍ଣ୍ଣର ଗୁରୁ ଉଚ୍ଚାରଣ ହେବାର ପ୍ରାୟ ସର୍ବତ୍ର ଦୃଷ୍ଟ ହୁଏ । ଉଲ୍ଲିଖିତ ଢ଼ଗ ଏହାର ଏକ ଦୃଷ୍ଟାନ୍ତ । 'ଛା' ଓ 'ପା' ଦୀର୍ଘାକ୍ଷର ହେଲେ ମଧ ଢ଼ଗ ମେଳିଲା ବେଳେ ଏମାନଙ୍କର ଦୀର୍ଘ ଉଚ୍ଚାରଣ ରହେ ନାହିଁ ।)

(୪) ଓଡ଼ିଆ ଷଡ଼କ୍ଷର ଛନ୍ଦ :-

✡ ଚିତ୍ତ ଜାଣେ ପାପ । ମାତା ଜାଣେ ବାପ । - ଢ଼ଗ

(୫) ଓଡ଼ିଆ ସପ୍ତାକ୍ଷର ଛନ୍ଦ :-

✡ ଦୁର୍ଜନ ସଙ୍ଗ ମେଳେ । ମୃତ୍ୟୁ ହୁଏ ଅକାଳେ । - ଢ଼ଗ

ସପ୍ତାକ୍ଷର ଛନ୍ଦରେ ପୂର୍ବେ ବର୍ଣ୍ଣମାଳା ଶିକ୍ଷାପାଇଁ ଏକ ଚଉତିଶା ବାଳକମାନେ ଚାଟଶାଳୀରେ ପଢୁଥିଲେ । ଉକ୍ତ ଚଉତିଶାରୁ କିଛି ଅଂଶ ନିମ୍ନରେ ପ୍ରଦତ୍ତ ହେଲା -

କ, କ, କାଳିନ୍ଦୀତୀରେ । ଖ,ଖ, ଖେଳନ୍ତି ଧୀରେ ।
ଛ, ଛ, ଛଇଳ କାହ୍ନୁ । ଜ, ଜ, ଜଗଜୀବନୁ ।
ଡ, ଡ, ଡମିଆ ମେରୁ । ଢ଼, ଢ଼, ଢାଙ୍କଇ ଭୂରୁ ।
ବ, ବ, ବାଙ୍କ ଚାହାଣୀ । ଭ, ଭ, ଭାଙ୍ଗଇ ଟାଣି ।
ର, ର, ରସିକ ବନ୍ଧୁ । ଲ, ଲ, ଲାବଣ୍ୟ ସିନ୍ଧୁ ।
ବ, ବ, ବଂଶୀଧରିଆ । ଶ, ଶ, ଶ୍ୟାମଘନିଆ ।
ଷ, ଷ, ସାରଙ୍ଗ ପାଣି । ସ, ସ, ସୁନ୍ଦର ମଣି ।
ହ, ହ, ହରିଦାସିଆ । କ୍ଷ,କ୍ଷ, କ୍ଷମାକାରିଆ ।

(୬) ଓଡ଼ିଆ ଅଷ୍ଟାକ୍ଷର ଛନ୍ଦ :-

✡ ଧନ ଜନ ପରିବାର । କେହି ନୁହେଁ ଆପଣାର । - ଢ଼ଗ

(୭) ଓଡ଼ିଆ ନବାକ୍ଷର ଛନ୍ଦ :-

✡ ଆରମ୍ଭ ବିବର୍ଜଇ । ସର୍ବବିକାର ମାୟାମୟୀ । -(ଜଗନ୍ନାଥ-ଭାଗବତ)

✡ ପ୍ରଥମେ ରଜଗୁଣ ଧରି । ବିଧାତା ରୂପେ ଅବତରି ।

- (ଜଗନ୍ନାଥ-ଭାଗବତ)

ଏହି ନବାକ୍ଷର ଛନ୍ଦ ପ୍ରଥମେ ଜଗନ୍ନାଥ ଦାସ ପ୍ରାକୃତରୁ ଆଣିଥିବାର ଅନୁମିତ ହୁଏ । କାରଣ ସେ ଭାଗବତର ଏକାଦଶ ସ୍କନ୍ଧରେ କହିଛନ୍ତି -

**'ପ୍ରାକୃତ ବନ୍ଧେ ଭାଗବତ । କହଇ ଦାସ ଜଗନ୍ନାଥ ।'**

ପୁଣି ଦ୍ୱାଦଶ ସ୍କନ୍ଦରେ କହିଛନ୍ତି -

**'ବତିଶ ଶତ ଷଟପଦ । ଦେଶଭାଷା ପ୍ରାକୃତ ବନ୍ଧ ।'**

(୮) ଓଡ଼ିଆ ଦଶାକ୍ଷର ଛନ୍ଦ :-

✡ ଦେଖିଲେ ଡରି ଖାଇଲେ ମରି । ତାହା ସଙ୍ଗେ କି ପୀରତି କରି ।

- ଢ଼ଗ

ଓଡ଼ିଶାରେ ରେଲ୍ଲି ବା ଲେଲିଆଣୀମାନେ ଆଶ୍ୱିନ ମାସରେ ଯେଉଁ ଗୀତ ଗାଇ ଦ୍ୱାର ଦ୍ୱାର ବୁଲି ଭିଖ ମାଗନ୍ତି, ତାକୁ 'ରାଇଲ' ଗୀତ ବା ଢ଼ଗ କହନ୍ତି । ଏହାକୁ ମଧ ଦଶାକ୍ଷର ଛନ୍ଦ ଭୁକ୍ତ କରାଯାଏ ଯଥା :-

✡ ବାଘ ବଳଦ ବାନ୍ଧିଲି ହଳେ । ଚାଷ କଲି ମହୀନ୍ଦର ମାଳେ ।

- ରାଇଲ/ଢ଼ଗ

(୯) ଓଡ଼ିଆ ଏକାଦଶାକ୍ଷର ଛନ୍ଦ :-

✡ ଦେହଟି ସବୁଆ ମୁହଁଟି ଚେପା । ଏହାକୁ ପରତେ ନ ଯିବ ବାପା ।

-ଢ଼ଗ

✡ ଦେଖୁଥିବୁ ସିନା ଖାଇବୁ ନାହିଁ । ମରୁଥିବୁ କୋଡ଼ି କଚାଡ଼ି ହୋଇ ।

-ଢ଼ଗ

ଅନେକ ଢ଼ଗ ଏହି ଛନ୍ଦରେ ରଚିତ ହୋଇଥିବାର ଦେଖାଯାଏ । କେହି କେହି ଏହାକୁ 'ବୋଲୀ' କହନ୍ତି । ବୋଧହୁଏ ଢ଼ଗରେ ଏହି ଛନ୍ଦ ବହୁଳ ପରିମାଣରେ ବ୍ୟବହୃତ ହେଉଥିବାରୁ ଏହାକୁ 'ବୋଲୀ' ନାମରେ ନାମିତ କରାଯାଇଛି ।

(୧୦) ✡ ବନ୍ଧ ତକିଆ ଚାଷ । ବନ୍ଧୁ ତଳିଆ ବାସ ।

କହେ ଦନାଇ ଏ କାହିଁକିରେ ଆଶ ।

ଦନେଇ ବଚନର ଏହା ଏକ ନମୁନା । ଏହି ଛନ୍ଦର ନାମକରଣ ଏଯାବତ୍ ହୋଇଥିବାର ଜଣାନାହିଁ ।

ଗୀତିକାରମାନେ ପ୍ରଥମେ ସଙ୍ଗୀତ ତଥା ଗୀତ ରଚନା କରନ୍ତି । ତାପରେ ସେଇ

ଗୀତରେ ତାନ, ମାନ, ସୁର ସଂଯୋଜନା କରି ବୋଲିଲେ, ତାହା ଜନଗଣଙ୍କ ଚିତ୍ତ ବିନୋଦନ କରିଥାଏ । ସେହିପରି ଢ଼ଗ, ଢ଼ମାଳି, ପ୍ରବାଦ, ବଚନ ପ୍ରଭୃତିର ରଚୟିତାମାନେ ପ୍ରଥମେ ଏହାକୁ ସୃଷ୍ଟି କଲାପରେ ଢ଼ଗ ମେଲିବା ପାଇଁ ତଥା ପ୍ରବାଦ, ବଚନ ପ୍ରଭୃତି ବୋଲିବା ପାଇଁ ଛନ୍ଦର ପରିକଳ୍ପନା କରି ସଂଯୋଜନା ନିଶ୍ଚିତ ଭାବେ କରାଯାଇଥିବ । ଯେଉଁଥିପାଇଁ ଏଗୁଡ଼ିକ ଜନଗଣଙ୍କ(ସ୍ତ୍ରୀ-ପୁରୁଷ, ଜାତି-ଧର୍ମ, ଧନୀ-ଦରିଦ୍ର ନିର୍ବିଶେଷରେ) କାଳ କାଳ ଧରି ଚିତ୍ତ ବିନୋଦନ କରି ଲୋକବାଣୀରେ ପରିଣତ ହୋଇଛି ।

ଲୋକବାଣୀ, ଲୋକ ସାହିତ୍ୟ ଜଣର ନୁହେଁ, ଗଣର । ଗଣଜୀବନର ମାର୍ମିକ ଆଲେଖ୍ୟ ଅଙ୍କିତ ହୋଇଥାଏ ଲୋକ ସାହିତ୍ୟରେ । ପାଷାଣ ଗାତ୍ରରେ କେଉଁ ଅଜଣା କାଳରୁ ନିଜ ନିହାଣ ମୁନରେ କବିତା ଲେଖି ଦେଲାଭଳି ଲୋକ ସାହିତ୍ୟରେ ସ୍ରଷ୍ଟା ଆତ୍ମଗୋପନ କରେ । ସେ ଚାହେଁନା ପ୍ରଶଂସାର ଫୁଲତୋଡ଼ା, ଚାହେଁନା କୌଣସି ଧନାଢ୍ୟ ବ୍ୟକ୍ତିଠାରୁ ଆର୍ଥିକ ଅନୁଦାନ । ତା ହୃଦୟରୁ ସ୍ୱତଃ ନିଃସରି ଆସିଥିବା ଭାବର ମନ୍ଦାକିନୀ ଧାର କାନରୁ କାନକୁ ପ୍ରସାରିଯାଏ । ଭବଲୀଳା ସାରି ପରପାରିକି ବାହୁଡ଼ିଯାଏ କବି, ବଚନକାର । ହେଲେ ତା' ହୃଦୟରୁ କଲମ ମୁନ ଦେଇ ନିଃସରି ଆସିଥିବା ଏ ସ୍ରୋତସ୍ୱିନୀ ପରବର୍ତ୍ତୀ କାଳରେ ବପୁବନ୍ତ ହୁଏ ସିନା, କ୍ଷୟଶୀଳତାର ପଥରେ ପ୍ରଧାବିତ ହୋଇ ବିଲୀନ ହୁଏନା । ଅନ୍ୟ ପ୍ରାଚୀନ ସାହିତ୍ୟ ପରି ଏହା ତାଳପତ୍ର ବା ଭୁର୍ଜ ପତ୍ରର ଆଶ୍ରୟ ଲୋଡ଼େନା, କାରଣ ଶ୍ରୋତାହିଁ ଏହାର ହୃଦୟ ବେଦୀ । ଏହା କାନରୁ କାନକୁ ଯାଇ ବଞ୍ଚି ରହେ କାଳରୁ କାଳାନ୍ତର ପର୍ଯ୍ୟନ୍ତ । ଜହ୍ନରୁ ଜ୍ୟୋତ୍ସ୍ନା ବା ଆକାଶରୁ ବାରିଧାରା ଯେପରି ଧରାପୃଷ୍ଠକୁ ସ୍ପର୍ଶ କଲାବେଳେ ଧନୀ, ଦରିଦ୍ର, ଜାତି ଅଜାତିର ବିଭେଦ ରଖେନା, ଠିକ୍ ସେହିପରି ଲୋକ ସାହିତ୍ୟ ସମଗ୍ର ମାନବ ଜାତିର ହୃଦୟର ଗୀତି । ଆର୍ଯ୍ୟ-ଅନାର୍ଯ୍ୟ ନିର୍ବିଶେଷରେ ଏହା ପ୍ରତ୍ୟେକର ପ୍ରାଣର ବ୍ୟଥା ବହନ କରେ । ତେଣୁ କୁହାଯାଏ :-

ଢ଼ଗ ଢ଼ମାଳି ମହାମନ୍ତ୍ର,<br>
ପ୍ରାଚୀନ କାଳର ଜନତନ୍ତ୍ର ।

ପରବର୍ତ୍ତୀ କାଳରେ ଓଡ଼ିଶାର ଯଶସ୍ୱୀ କବିମାନଙ୍କର କାବ୍ୟ କବିତା ରଚନାରେ ଏହି ପ୍ରକାର ଛନ୍ଦର ରାଗିଣୀ ପ୍ରତିଫଳିତ ହୋଇଛି । ଏହି କବି ମାନଙ୍କର କାବ୍ୟ କବିତାରେ ବହୁ ପ୍ରବାଦ ସନ୍ନିବେଶିତ ହୋଇଥିବାର ପ୍ରକାଶ୍ୟ ଭାବରେ ଦେଖାଯାଏ ।

(୧୦) ଓଡ଼ିଆ ଦ୍ୱାଦଶାକ୍ଷର ଛନ୍ଦ :-

ନିମ୍ନୋକ୍ତ ପ୍ରବାଦରେ ପ୍ରସ୍ଫୁଟିତ ହୋଇଛି :

✡ **ଧୀରେ ଧୀରେ ଘେନ ନବଘନ ଶ୍ୟାମ ।**<br>
**କାମ କାମନାକୁ ବଢ଼ାଇଲେ ପ୍ରେମ ।** -(ବିଦଗ୍ଧ ଚିନ୍ତାମଣି)

✡ **କିବା ମାଣିକ୍ୟକୁହରୁ ମୋତି ଜ୍ୟୋତି**
**ଦିଶେ ତଥା ଝଟକଇ ଦନ୍ତପନ୍ତି ।** -(ଲାବଣ୍ୟବତୀ)

ଏହି ଛନ୍ଦକୁ କବିମାନେ ଭିନ୍ନ ଭିନ୍ନ ନାମ ଦେଇଛନ୍ତି ।

(୧୧) ଓଡ଼ିଆ ତ୍ରୟୋଦଶାକ୍ଷର ଛନ୍ଦ :-

ନିମ୍ନୋକ୍ତ ପ୍ରବାଦରେ ପ୍ରସ୍ଫୁଟିତ ହୋଇଛି :

✡ **କର ସାଧୁଜନମାନେ ମନକୁ ଏକ ।**
**କର ଧୀରେ ଧ୍ୟାନ ନୀଳାଚଳ ନାୟକ ।** -(ରସ କଲ୍ଲୋଳ)

(୧୨) ଓଡ଼ିଆ ଚତୁର୍ଦ୍ଦଶାକ୍ଷର ଛନ୍ଦ :-

ଓଡ଼ିଶାର ବାଳିକାମାନେ ଚୈତ୍ର ମାସରେ 'ଖର୍‌ଖରୀ' ନାମ୍ନୀ କୌଣସି ଦେବୀଙ୍କ ପୂଜା କରନ୍ତି । ପୂଜା ସମୟରେ ଯେଉଁ ଗୀତ ସବୁ ଗାଆନ୍ତି, ତହିଁରୁ କେତେକ ଅଷ୍ଟାକ୍ଷର ଓ କେତେକ ଚତୁର୍ଦ୍ଦଶାକ୍ଷର । ଯଥା :-

✡ **ଖର୍‌ଖରୀ ସାତ ପତର ।**
**ମୋ ଭାଇ ଦୁଧ ଭାତର ।**

✡ **ଖର୍‌ଖରୀ ମା' ଲାଗିଲା ଲୋ ଛଡ଼ାଇ ଦେବ କେ ।**
**ସବୁ ଶଙ୍ଖା ବନ ହଳଦି ଖର୍‌ଖରୀକି ଦେ ।**

(୧୩) ଓଡ଼ିଆ ପଞ୍ଚଦଶାକ୍ଷର ଛନ୍ଦ : ନିମ୍ନୋକ୍ତ ପ୍ରବାଦରେ ସୂଚିତ -

✡ **ପାଞ୍ଚ ସାତ ନାହିଁ ମୋର ଯେ ଏକୋଇର ବଳ ।**
**ବିଷ ଜଳେ ଡ଼େଇଁ ମୋର ଯେ ବୁଡ଼ାଇଲା ଭେଳ ।**

(୧୪) ଓଡ଼ିଆ ଷୋଡ଼ଶାକ୍ଷର ଛନ୍ଦ :-

ଏହି ଛନ୍ଦର କୌଣସି ଢ଼ଗ ଢ଼ମାଳି, ପ୍ରବାଦ, ବଚନ ଇତ୍ୟାଦି ଦୃଷ୍ଟିଗୋଚର ହେଉନାହିଁ । ତଥାପି ଏ ଛନ୍ଦର ବୈଚିତ୍ର୍ୟ 'ଲାବଣ୍ୟବତୀ' କାବ୍ୟରେ ପରିପ୍ରକାଶ ଘଟିଛି ଯଥା :-

✡ **ଦେଖରେ ନଳିନି ନଳିନୀ ନଳିନୀରେ ପୂରିତ ।**
**ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ ।** - (ଲାବଣ୍ୟବତୀ)

(୧୫) ଓଡ଼ିଆ ସପ୍ତଦଶାକ୍ଷର ଛନ୍ଦ :-

ନିମ୍ନୋକ୍ତୋ ପ୍ରବାଦଟି ଅଷ୍ଟାଦଶାକ୍ଷର ବିଶିଷ୍ଟ ହେଲେ ସୁଦ୍ଧା ଏହା କାଳୀ ରାଗର ବୋଲୀରେ ଗାନ କରାଯାଏ । ଓଡ଼ିଆ କାଳୀ ରାଗର ଶେଷରେ ଦୁଇଗୋଟି ଅକ୍ଷର ମାତ୍ର ଥିଲେହେଁ ଛନ୍ଦର ଶେଷ ତିନିଅକ୍ଷରର ଯେତେ ଉଚ୍ଚାରଣ, ଏ ଦୁଇ ଅକ୍ଷରର ତେତେ ଉଚ୍ଚାରଣ ।

✡ **ବାହାର କାଳୀ ତାହାର ବାଳୀ ଅଗେ ଓଗାଳିଲେ ପଥ ।**
**କେଣେ ଗମନ କରିଛ ମନ କହ କହ ପ୍ରାଣନାଥ ।**

(୧୬) ଓଡ଼ିଆ ଅଷ୍ଟାଦଶାକ୍ଷର ଛନ୍ଦ :-

ନିମ୍ନୋକ୍ତ ଉଦାହରଣ ପ୍ରବାଦର ସ୍ୱରୂପ ଥିବାରୁ 'ଲାବଣ୍ୟବତୀ'ରୁ ଉଦ୍ଧାର କରାଗଲା :-

✡ ଯେଉଁ ରୂପେ ହସେ ସୁଖୁ ସୁଧା ଖସେ ଦିଶେ ସେ ଦିଶୁଛି ।
ଯେଉଁ ରୂପେ ଆସେ ପୁରତେ ମୋ ବସେ ମନେ ସେ ପଶୁଛି ।
ଯେଉଁ ରୂପେ ଭାଷେ ବଚନେ କର୍ଣ୍ଣେ କି ଏକ୍ଷଣ କହୁଛି ।
ତେବେ ଅତ୍ୟନ୍ତ ଶୀତଳ କରୁଥିଲା ଏବେ ତ ଦହୁଛି ।

ଏହି ଛନ୍ଦକୁ କେହି କେହି 'ଢ଼ଗମୁକ୍ତାବଳୀ' କହନ୍ତି । -(ବିଦଗ୍ଧ ଚିନ୍ତାମଣି)

(୧୭) ଓଡ଼ିଆ ଭାଷାରେ ଊନବିଂଶତ୍ୟକ୍ଷର ଓ ଏକବିଂଶତ୍ୟକ୍ଷର ଛନ୍ଦ :-

✡ ଚାଉଳ ପଛକେ ଅଧୁଆ ହେଉ
ପେଜ ହଉ ବହଳିଆ,
ଘଇତା ପଛକେ ସନ୍ତିଆ ହେଉ
ଲୁଗା ହେଉ ଚଉଁରିଆ -ଢ଼ଗ (୧୯ ଅକ୍ଷର)

✡ କ୍ଷୀରରେ ଧୋଇଲେ ଖଣ୍ଡରେ ମୋହିଲେ
ନିମ୍ବକି ମଧୁର ହୋଇବ !
ଯେତେ ପରକାରେ ବୁଝାଇ କହିଲେ
ପରକି ଆପଣା ହୋଇବ ! -ଢ଼ଗ (୨୦ ଅକ୍ଷର)

(୧୮) ଓଡ଼ିଆ ବିଂଶତ୍ୟକ୍ଷର ଛନ୍ଦ, ଦ୍ୱାବିଂଶତ୍ୟକ୍ଷର ଛନ୍ଦ, ତ୍ରୟୋବିଂଶତ୍ୟକ୍ଷର ଛନ୍ଦ, ଚତୁର୍ବିଂଶତ୍ୟକ୍ଷର ଛନ୍ଦ ଓ ଷଡ଼୍‌ବିଂଶତ୍ୟକ୍ଷର ଛନ୍ଦ ଥିଲେ ମଧ ଢ଼ଗ ଢ଼ମାଳି, ପ୍ରବାଦ, ବଚନ ପ୍ରଭୃତି ଏସବୁ ଛନ୍ଦରେ ଦୃଷ୍ଟିଗୋଚର ହୁଏ ନାହିଁ ।

(୧୯) ଓଡ଼ିଆରେ ପଞ୍ଚବିଂଶତ୍ୟକ୍ଷର ଛନ୍ଦ ନାହିଁ ବୋଲି ସୂଚନା ପାଉଛି ।

ପୂର୍ବୋକ୍ତ ଛନ୍ଦମାନଙ୍କ ଛଡ଼ା ଓଡ଼ିଆରେ ଆଉ କେତୋଟି ଛନ୍ଦ ପ୍ରଚଳିତ ଥିବାର ଦେଖାଯାଏ ଯଥା :

(କ) କଉଡ଼ି । ଶତ୍ରୁକୁ ଦିଏ ଘଉଡ଼ି । - (୩ + ୮ = ୧୩ ଅକ୍ଷର)

(ଖ) ଛି ଲୋ ଛତୁ । ପାଣି ବରଷିଲେ କେତେ ମାତୁ । - (୪+୧୦=୧୪ ଅକ୍ଷର)

(ଗ) ତେଲି ଗୁଡ଼ିଆ । ବାର ମାସରେ ବାର କୁଡ଼ିଆ । - (୫+୧୦=୧୫ ଅକ୍ଷର)

(ଘ) ପାଠକୁ ଗସେ । ନ ପଢ଼ି ନ ଶୁଣି ଚାଳରେ ଖୋଷେ । - (୫+୧୧=୧୬ ଅକ୍ଷର)

(ଙ) ଘର ଉପରେ ଘର ।
ସୁନାଖୟପରି ତିନି ଦିଅର ଯେ, ଚନ୍ଦର ଉଦିଆ ବର । - (୮+୨୦=୨୮ ଅକ୍ଷର)

ଏସବୁ ସମାନାକ୍ଷର ପଦ ବିଶିଷ୍ଟ ନ ହେଲେ ସୁଦ୍ଧା ସମଛନ୍ଦ ଶ୍ରେଣୀଭୁକ୍ତ । ନିମ୍ନମତେ ଏଗୁଡ଼ିକୁ ପରୀକ୍ଷା କରି ଦର୍ଶାଯାଇଛି ।

(କ) ✡ **କଉଡ଼ି । ଶତ୍ରୁକୁ ଦିଏ ଘଉଡ଼ି ।** -ଢ଼ଗ

ଏହା 'ପଞ୍ଚମାକ୍ଷର-ଯତିବିଶିଷ୍ଟ' । ଅଷ୍ଟାକ୍ଷର ଛନ୍ଦରୁ ଜାତ ।

ଯେପରି :-

✡ **ଖର୍‌ଖରୀ ସାତ ପତର । ମୋ ଭାଇ ଦୁଧ ଭାତର ।** - (ଖର୍‌ଖରୀ ଗୀତ)

ଛନ୍ଦର ପ୍ରଥମ ଚରଣରୁ ପ୍ରଥମ ପାଞ୍ଚ ଅକ୍ଷର କଟାଯାଇ ଅବଶିଷ୍ଟ ତିନିଅକ୍ଷର ସହିତ ଉପରୋକ୍ତ ଢ଼ଗବୃତ୍ତ ସୃଷ୍ଟ ହୋଇଅଛି । ଯେପରି :-

✡ **------ ପତର । ମୋ ଭାଇ ଦୁଧଭାତର ।**

(ଖ) ✡ **ଛି ଲୋ ଛତୁ । ପାଣି ବରଷିଲେ କେତେ ମାତୁ ।** -ଢ଼ଗ

ଏହା 'ଷଷ୍ଠାକ୍ଷର-ଯତି ବିଶିଷ୍ଟ' ଦଶାକ୍ଷର ଛନ୍ଦର ରୂପାନ୍ତର । ଯଥା :-

✡ **ରାମ ଆଜ୍ଞାପାଇ ଯାନ ଗଲେ । ଏହା ଶୁଣି ଭ୍ରତ ଜଣାଇଲେ ।**

- ବିଶିରାମାୟଣ ।

ଏହି ଛନ୍ଦର ପ୍ରଥମ ଚରଣରୁ ପ୍ରଥମ ଛ ଅକ୍ଷର କଟାଯାଇ ଶେଷ ଚାରି ଅକ୍ଷର ସହିତ ଉପରୋକ୍ତ ଢ଼ଗବୃତ୍ତ ହୋଇଅଛି । ଯେପରି -

**------ ଯାନ ଗଲେ । ଏହାଶୁଣି ଭ୍ରତ ଜଣାଇଲେ ।**

(ଗ) ✡ ତେଲି ଗୁଡ଼ିଆ । ବାର ମାସରେ ବାର କୁଡ଼ିଆ -ଢ଼ଗ

ଏହା 'ପଞ୍ଚମାକ୍ଷର-ଯତିବିଶିଷ୍ଟ' ଦଶାକ୍ଷର ଛନ୍ଦରୁ ଆସିଅଛି । ଯଥା :-

ରାମଚରିତ ଅମୃତ ରସ । ଶୁଣି ପଶୁହିଁ ହୋଇବେ ବଶ । - (ବିଶିରାମାୟଣ)

ପ୍ରଥମ ଚରଣର ଶେଷ ପାଞ୍ଚ ଅକ୍ଷର ସହିତ ଉପରୋକ୍ତ ଢ଼ଗବୃତ ରଚିତ ହୋଇଅଛି । ଯେପରି -

**'ରାମ ଚରିତ ଅମୃତ ରସ । ଶୁଣି ପଶୁହିଁ ହୋଇବେ ବଶ ।'**

(ଘ) ✡ **ପାଠକୁ ରସେ । ନ ପଢ଼ି ନ ଶୁଣି ଚାଳରେ ଖୋଷେ ।** -ଢ଼ଗ

ଏହି ଢ଼ଗବୃତ୍ତ 'ଷଷ୍ଠାକ୍ଷର-ଯତିବିଶିଷ୍ଟ' ଏକାଦଶାକ୍ଷର ଛନ୍ଦରୁ ଜାତ ।

ଯଥା :- **କହନ୍ତି ମାଏ ଗୋ ଶ୍ରୀକୃଷ୍ଣ ଆଗେ । କଥା ଶୁଣ ବାବୁ ଅତି ସରାଗେ ।**

ଏହାର ପ୍ରଥମ ଚରଣରୁ ପ୍ରଥମ ଛ ଅକ୍ଷର କାଟି ଦେଖିଲେ ଉପରୋକ୍ତ ଢ଼ଗବୃତ୍ତ କିପରି ଜାତ ହୋଇଅଛି, ତାହା ସ୍ପଷ୍ଟ ଜଣାଯିବ । ଯେମିତି -

**'------ ଶ୍ରୀକୃଷ୍ଣ ଆଗେ । କଥା ଶୁଣ ବାବୁ ଅତି ସରାଗେ ।'**

(ଡ) ✡ କହା ଯାଉଥାଏ ସିନା
ତୁହାଇ ତୁହାଇ ପୁଟ ଦେଉଥିଲେ
ଲୁହା କି ହୋଇବ ସୁନା । -ଢ଼ଗ

-୭-- + --୭-- +

ଏହା ବଙ୍ଗଳାଶ୍ରୀ ଛନ୍ଦର ରୂପାନ୍ତର ମାତ୍ର । 'ବଙ୍ଗଳାଶ୍ରୀ' ନାମ ଦେଖି ଏହି ଛନ୍ଦ ବଙ୍ଗଳା ତ୍ରିପଦୀରୁ ଆସିଥିବାର କେହି କେହି ଅନୁମାନ କରନ୍ତି । ଏଭଳି ଅନୁମାନ କରିବା କେବଳ ଭ୍ରମ । **(ପ୍ରାଚୀନ ବଙ୍ଗଭାଷା ଉପରେ ପ୍ରାଚୀନ ଓଡ଼ିଆ ଭାଷାର ପ୍ରାଧାନ୍ୟ ଥିବାର ପ୍ରମାଣ ଏହି ଗ୍ରନ୍ଥର ୨ୟ ଓ ୩ୟ ଖଣ୍ଡ ଅବତରଣିକାରେ ଦିଆଯାଇଛି ।)** ପ୍ରାଚୀନ ବଙ୍ଗଭାଷାର କୌଣସି ବିଷୟ ଓଡ଼ିଆମାନେ ଅନୁକରଣ କରିଥିଲା ଭଳି ଜଣାଯାଏ ନାହିଁ । ସେ ଯାହାହେଉ ଏହି ଛନ୍ଦ ଯଦି ବଙ୍ଗଳାରୁ ଆସିଥାନ୍ତା, ତେବେ ଏହାକୁ ବଳରାମ ଦାସ 'ଭାରତ ବୋଲି' ଓ ଶ୍ରୀକୃଷ୍ଣଲୀଳା ପ୍ରଣେତା 'ମଟୁଆରୀ' ନାମକରଣ କରି ନଥାନ୍ତେ ।

(ଚ) ✡ ନ ରସି ରସିଲୁ ରାଇକି ।
ମଧୁ ମାଳତୀକି ବାହାରେ ପକାଇ
ପଶିଗଲୁ ତଳ ସାଇକି । -ଢ଼ଗ

-୭-- + -୭-- +

ଏହା ଏକ ବିଂଶତ୍ୟକ୍ଷର ଛନ୍ଦରୁ ଆସିଥିବାର ଅନୁମିତ ହୁଏ ।

(ଛ) ✡ ଚଇତ ମାସରେ ନୂଆ ଗୁଡ଼ଖାଇ
କଣ୍ଠୁ କୁଣ୍ଡାଇଲେ କିଆତି ।
-୭- + -୭- + --୭-- + କିଆତି ।

ଏହା ମଧ୍ୟ ଏକବିଂଶତ୍ୟକ୍ଷର ଛନ୍ଦରୁ ଉତ୍ପନ୍ନ ବୋଲି ଅନୁମାନ ହୁଏ ।

(ଜ) ✡ ଦିନେ ଯାଇଥିଲି ଯମୁନାକୁ
ଘରେ ଛନ ଛନ ବାହାରେ ମନ ଯେ
କେମନ୍ତେ ଦେଖିବି କାଳିଆକୁ । -ଢ଼ଗ ।

-୭-- + -୭-- +

ଏହା ଦ୍ୱାବିଂଶତ୍ୟକ୍ଷର ଛନ୍ଦରୁ ଆସିଥିବା ବିଶ୍ୱାସ ହୁଏ ।

(ଙ) ✡ **କଥା ଲହସରେ ବାହାରି ଗଲି ମୁଁ**
**ମୋତେ ନ ବୋଲିବୁ ବଳପଣି ।** -ଢ଼ଗ ।
-ଽ-- + -ଽ-- + ---ଽ + ବଳପଣି ।

ଏହା ମଧ୍ୟ ଦ୍ୱାବିଂଶତ୍ୟକ୍ଷର ଛନ୍ଦରୁ ଜାତ ।

(ଚ) ✡ **ଅଧେ ସୁନା ଅଧେ ପିତଳ ବୋଲି ମୁଁ**
**ନିକିତି ପକାଇ ତୁଳିଥିଲି କି ।** -ଢ଼ଗ ।
-ଽ-- + -ଽ-- + ---ଽ + ତୁଳିଥିଲି କି ।

ଏହା ଓଡ଼ିଆ ତ୍ରୟୋବିଂଶତ୍ୟକ୍ଷର ଛନ୍ଦର ରୂପାନ୍ତର ।

ଉପରୋକ୍ତ ଢ଼ଗ ବୃତ୍ତରୁ ଅନେକ ଓଡ଼ିଆ ବିଷମ ଛନ୍ଦ ଓ ଗୀତ ଆସିଥିବାର ପ୍ରତୀତ ହୁଏ । କେତେକ ମାତ୍ରା ଛନ୍ଦରେ ସମାନାକ୍ଷର ପଦ ଦେଖା ନଗଲେ ମଧ୍ୟ ଓଡ଼ିଆରେ ଏହିପରି କେତେ ଗୁଡ଼ିଏ ଛନ୍ଦ 'ଦୋଳୀଗୀତ' ମାନଙ୍କରେ ପ୍ରଚଳିତ ଥିବାର ଲକ୍ଷିତ ହୁଏ । ଯଥା -

(କ) ✡ **ଦୋଳୀ ଦୋଳାଇଲି ନାଆଁ ଦେଲି ହୀରା ।** (୧୨ ଅକ୍ଷର)
**ବାରମାସୀ ଧାନ ପାଚଇ ସବୁ କଳାଜିରା ।** (୧୫ ଅକ୍ଷର)
- ବାଳିକା ମାନଙ୍କର ଦୋଳୀ ଗୀତ

(ଖ) ✡ **ଶୟନେ ଅଲଗା ନୋହୁ କ୍ଷଣେ ହୃଦୟରୁ ।** (୧୩ ଅକ୍ଷର)
**ପଳାଉ ବନକୁ ନିତି ମୁଁ ନାହିଁ କରୁ କରୁ ।** (୧୫ ଅକ୍ଷର)
- ଗୋପାଳକୃଷ୍ଣଙ୍କ ଦୋଳୀଗୀତ

(ଗ) ✡ **କୋଇଲି କେଶବ ଯେ ମଥୁରାକୁ ଗଲେ ।** (୧୩ ଅକ୍ଷର)
**କାହା ବୋଲେ ଗଲେ କୃଷ୍ଣ ବାହୁଡ଼ି ନ ଅଇଲେ ।** (୧୫ ଅକ୍ଷର)

ଓଡ଼ିଆରେ ଅନେକ ଗୁଡ଼ିଏ ବିଷମ ଛନ୍ଦ ଥିବାର ଜଣାଯାଏ । ଏହା ସମ୍ପୂର୍ଣ୍ଣ ଭାବେ ଅବତାରଣା କରିବା ଆମ ପକ୍ଷରେ ଏକ ଦୂରୁହ ବ୍ୟାପାର ଏବଂ ଆମ ଇଲାକାର ବାହାରେ । ସୁତରାଂ ସେଥିରୁ କେତେଗୁଡ଼ିଏ ଛନ୍ଦର ବିବରଣ ମାତ୍ର ସୂଚିତ ହେଲା -

(୧) ✡ **ଘର ଦେଖ, ବର ଦେଖ । କାଛ ଭାଙ୍ଗି କୁଳ ଦେଖ ।** -ଢ଼ଗ

ଏ ଛନ୍ଦ ଚତୁର୍ଥାକ୍ଷର ଯତିବିଶିଷ୍ଟ ଅଷ୍ଟାକ୍ଷର ସମଛନ୍ଦରୁ ଜାତ ହୋଇ ବିଷମଛନ୍ଦ ରୂପ ନେଇଛି ।

(୨) ✡ **ଦେଖିଲେ ଡ଼ରି । ଖାଇଲେ ମରି । ତାହା ସଙ୍ଗେ କି ପୀରତି କରି ।** - ଢ଼ଗ

ଏହା ତୃତୀୟ ଢ଼ଗବୃତ୍ତରୁ ଜାତ । ଏଥିରେ ଢ଼ଗର ପ୍ରଥମ ଚରଣ ଦ୍ୱାରାବୃତ୍ତି ହୋଇ

ଏହି ବିଷମ ଛନ୍ଦ ହୋଇଅଛି ।

(୩) ✡ ସୁରୂପ ଛାଡ଼ି । କୁରୂପ ଲୋଡ଼ି । ସାନ ବଡ଼ ନାହିଁ ମୂଳ କଉଡ଼ି ।

- (ରସପଞ୍ଚକ)

ଏହା ଚତୁର୍ଥ ଢ଼ଗବୃତ୍ତରୁ ଜାତ । ଢ଼ଗର ପ୍ରଥମ ଚରଣ ଦ୍ୱିରାବୃତ୍ତି ହୋଇ ଏହି ବିଷମ ଛନ୍ଦ ହୋଇଅଛି ।

(୪) (କ) ଭାଟିଆରୀ

✡ ତୁମ୍ଭର ଚରଣ ନୀର । ଅଭିଷେକ ଶିବ ଶିର ।
ଜାହ୍ନବୀର ଜଳଏ ବଂଶର କୀରତିଟି ରଘୁବୀର ହେ ।

- (ବିଶିରାମାୟଣ)

(ଖ) ଘଣ୍ଟାରବ

✡ ଦଶରଥ ବେନି କର, ଧରି ରାଜ ଋଷିବର
ମିଥିଳା ନଗର ଆଜହୁଁ ତୁମର
ଅଯୋଧ୍ୟା ନଗର ମୋର ହେ । - (ବିଶିରାମାୟଣ)

(ଗ) ତୋଡ଼ି । ଏକତାଳୀ ।

✡ ମିତ ଦେଲେ ଯାହା ନେଇ । ରାମ ଦେଲେ ବାହୁଡ଼ାଇ
ବଟକ୍ଷୀରେ ଜଟା ସଜ କଲେ ରାମ ସେଠାରେ ସେଦିନ ରହି ।

- (ବିଶିରାମାୟଣ)

ଏ ତିନିଛନ୍ଦ ସମାନ ଓ ପଞ୍ଚମ ଢ଼ଗ ବୃତ୍ତରୁ ଜାତ । ଢ଼ଗର ଗୋଟିଏ ଅଷ୍ଟାକ୍ଷର ଚରଣ ବଦଳରେ ଏଥିରେ ଦୁଇଗୋଟି ଅଷ୍ଟାକ୍ଷର ଚରଣ ଦେଖାଯାଏ । ଅର୍ଥାତ୍ ଢ଼ଗର ପ୍ରଥମ ଚରଣ ଏ ତିନି ଛନ୍ଦଯାକର ଦ୍ୱିରାବୃତ୍ତି ହୋଇଅଛି ।

(ଘ) ଭାଟିଆରୀ

✡ ଦେଖିବାକୁ ତାଙ୍କୁ ଗଲି, କି ଆହେ ଭାଇ, କିଛି ହିଁ ଦୋଷ ନ କଲି
ବିନା ଦୋଷେ ନାସା ଶ୍ରବଣ କାଟିଲା କାନ୍ଦି ଖରକୁ କହିଲି ।

-(ବିଶିରାମାୟଣ)

ଏହା 'ଘଣ୍ଟାରବ'ରୁ ଜାତ । 'ଘଣ୍ଟାରବର' ପ୍ରଥମ ଦୁଇ ଚରଣ ମଧ୍ୟରେ ୫ଟି ଅକ୍ଷର 'କି ଆହେ ଭାଇ' ମାତ୍ର ମିଶା ହୋଇଛି ।

(ଙ) ତୋଡ଼ୀ ଏକତାଳୀ

✡ ଶିଶୁପାବୃକ୍ଷର ତଳେ । ହନୁ ମନେ ମନେ ଭାଳେ
ନିଶ୍ଚୟ ଜାନକୀ ଜନକ ନନ୍ଦିନୀ ଦେଖିଲଇଁ ବେନି ଡୋଳେ ।
କି ଭାଗ୍ୟ ବଳେ । - (ବିଶିରାମାୟଣ)

ଏହା ମଧ୍ୟ 'ଘଣ୍ଟାରବ'ରୁ ଜାତ । ଶେଷରେ ପାଞ୍ଚ ଅକ୍ଷର ପାଦ ଗୋଟିଏ 'କି ଭାଗ୍ୟ ବଳେ' ମାତ୍ର ଏଥିରେ ଅଧିକ ଲକ୍ଷିତ ହୁଏ ।

(ଚ) ଗଡ଼ମାଳିଆ ବୃତ

✡ **ଉଭା ଯୂତପତି । ନାମ ଧରି ଚିହ୍ନାଇ ଦ୍ୟନ୍ତି ଯେ ।**
**ରାମଙ୍କୁ ତାରାରମଣ । ଦେଖ ଦେବ ହେ ।** - (ବିଶ୍ୱିରାମାୟଣ)

ଏହା ପଞ୍ଚମ ଢ଼ଗବୃତ୍ତର ରୂପାନ୍ତର । ଢ଼ଗର ଦ୍ୱିତୀୟ ଚରଣ ଯତିପାତଠାରେ ଭଙ୍ଗା ହୋଇ ଏଥିରେ ଦ୍ୱିତୀୟ ଓ ତୃତୀୟ ଚରଣ ହୋଇଅଛି, ଶେଷରେ ଧ୍ରୁବପଦ ଗୋଟିଏ ସଂଯୋଜିତ ହୋଇଅଛି ।

(ଛ) ତୋଡ଼ୀ

✡ **ସର୍ବ ବୀରେ ବସି ସୁଖାସନେ । ଅଙ୍ଗଦ କହନ୍ତି ସାବଧାନେ ।**
**ଶ୍ରୀ ରାମଙ୍କ କିଛି କାର୍ଯ୍ୟ ନ କରିଣ ବି ଅର୍ଥେ ମରିବା ଆମ୍ଭେମାନେ ।**
-(ବିଶ୍ୱିରାମାୟଣ)

ଏହା ଅଷ୍ଟମ ଢ଼ଗବୃତ୍ତରୁ ଜାତ । ଏତିକି ପ୍ରଭେଦ ଯେ- ଢ଼ଗରେ ଗୋଟିଏ ମାତ୍ର ଦଶାକ୍ଷର ଚରଣ ଦେଖାଯାଏ; ତୋଡ଼ୀ ରାଗରେ ଦୁଇଗୋଟି ଦଶାକ୍ଷର ଚରଣ ବ୍ୟବହୃତ ହୋଇଅଛି ।

(ଜ) ଚିନ୍ତା ଭୈରବ

✡ **ଆହା ଧନୁର୍ଦ୍ଧର ବୀରବର । ଧନୁଶର ନ ଥିଲା କି କର ।**
**ଯାହାର ବାଣ ବ୍ରହ୍ମାଣ୍ଡ ଦହିପାରେ ତାକୁ ମାଇଲା ପ୍ରଶସ୍ତ ଛାର ହେ ଦଇବ ।**
- (ବିଶ୍ୱିରାମାୟଣ)

ଉପରୋକ୍ତ 'ତୋଡ଼ୀ' ଛନ୍ଦର ଶେଷରେ ତିନୋଟି ଅକ୍ଷର ମିଶି 'ଚିନ୍ତା ଭୈରବ' ରଚିତ ହୋଇଅଛି ବୋଲି ସ୍ପଷ୍ଟ ଜଣାଯାଏ ।

(ଝ) ଶୋକ ବରାଡ଼ି

✡ **ଜନ ଅପବାଦକୁ ବଞ୍ଚିଲୁ । ଏହା ଆପଣା ମନେ ପାଞ୍ଚିଲୁ ।** - (ବିଶ୍ୱିରାମାୟଣ)

✡ **ରାବଣ ସଂହାରି ତୁମ୍ଭମାନଙ୍କୁ ଆଣିଲୁ ଯଶ ମହୀରେ ରଖିଲୁଁ ଗୋ ସୀତେ ।**
- (ବିଶ୍ୱିରାମାୟଣ)

ଏହା 'ଚିନ୍ତା ଭୈରବ'ର ରୂପାନ୍ତର । ଚିନ୍ତା ଭୈରବର ତୃତୀୟ ଚରଣରେ ୨୨ ଅକ୍ଷର ବଦଳରେ ୨୦ ଅକ୍ଷର ଓ ୪ର୍ଥ ଚରଣର ୩ ଅକ୍ଷର ବଦଳରେ ୨ ଅକ୍ଷର ମାତ୍ର ଏଥିରେ ଦେଖାଯାଏ ।

ଯାହାହେଉନା କାହିଁକି, ସ୍ୱରବଳ ଥିଲେ, ଦୁଇ ଚାରି ଅକ୍ଷର ଅଧିକ ବା ଉଣା ହେଲେ ସୁଦ୍ଧା ବୋଲିଲାବେଳେ କୌଣସି ଅସୁବିଧା ରୁହେ ନାହିଁ ।

(ଝ) ବାଚ ଚଉତିଶା

✡ **କହନ୍ତି ଉଦ୍ଧବ କେବେହେଁ ମାଧବ କରନ୍ତି ନାହିଁ ନିରାଶ ।**
**କଲେ ଶତ୍ରୁପଣ କରନ୍ତି ନିର୍ବାଣ ଏ ରୂପେ ପୀତବାସ ସେ ।**

✡ **କିପାଁ ତୁମ୍ଭଙ୍କୁ କରିବେ ଆନ ।**
**କାହିଁ ପାଇଁ କରୁଛ ମାନ ସେ ।** - ପ୍ରବାଦ (ରସକଲ୍ଲୋଳ)

(ଟ) ମୁଖାରୀ

✡ **କେ କାହାର କରଦେଶ । କର ତାଳି ମାରି ବସେ ।**
**କେ ଶୋକ ଆକୁଳେ ବସେ । ମନ ବିରସେ । ବିରହେ ।**

- ପ୍ରବାଦ (ରସକଲ୍ଲୋଳ)

(ଠ) ଅନୁଷ୍ଟୁପ

✡ **ରହ ରେ ରହ ରେ ବନ୍ଧୁ । ନିରେଖ ରେ ନିରେଖ ରେ ।**
**ଆଦରି ଆଦରି ଯା ନା । ଭାଷ ଭାଷ ହିତାନନେ ।**

- ଢମାଳି (ଗୋପିନାଥ ବଲ୍ଲଭ ନାଟକ)

(ଡ) ଆର୍ଯ୍ୟାବୃତ୍ତ

✡ **ଦୋଷ ନ ଚାହାଁ ବାଳା । ରୋଷରେ କରିଚି ମତେ ହେଳା ।**
**କହ ଗୋ ଯାଇ କୃପାରେ । ମାନବତୀ ମାନକୁ ବୋଧ୍ ନ ପାରେ ।**

- ଢମାଳି (ଗୋପିନାଥ ବଲ୍ଲଭ ନାଟକ)

✡ **ଅଥ ରଜନୀ ନାଥ ବନ୍ଦନା । ମତି ମତି ଚଞ୍ଚଳେ ସୁଖମଦନା ।**
**ଭୃଙ୍ଗର ଗୁଞ୍ଜନ ସହି । ଚମ୍ପକମୂଳେ ବସିଲେ ମୁଖ ଶୁଖାଇ ।**

- ଢମାଳି (ଗୋପିନାଥ ବଲ୍ଲଭ ନାଟକ)

ଓଡ଼ିଶାର ଆଦି କବି ସାରଳାଦାସଙ୍କ 'ଛନ୍ଦ'ରେ ଶେଷାକ୍ଷରେ ମିଳନ ଭିନ୍ନ କୌଣସି ଶୃଙ୍ଖଳା ବା ନିୟମ ଲକ୍ଷିତ ହୁଏ ନାହିଁ । କବି ୧୨ ଅକ୍ଷରଠାରୁ ୨୪ ଅକ୍ଷର ପର୍ଯ୍ୟନ୍ତ ଡ଼େଇଁଯାଇ ଅଛନ୍ତି । ଉଦାହରଣ ସ୍ୱରୂପ :-

**ଜୟତୁ ଦଧିବାମନ ଦେବରାଜ** - (୧୨ ଅକ୍ଷର)
**ଦର୍ଶନେ ସଫଳ ପ୍ରସନ୍ନେ ସିଦ୍ଧ କାର୍ଯ୍ୟ ।** - (୧୩ ଅକ୍ଷର)

**ଜମ୍ବୁଦ୍ୱୀପ ଭରତଖଣ୍ଡ ଓଡ୍ରରାଷ୍ଟ୍ର ଇଶାନେ - (୧୫ ଅଯର)**
**ଚନ୍ଦ୍ରଭାଗା ନଦୀତଟେ ଦିବ୍ୟସ୍ଥାନେ । - (୧୨ ଅକ୍ଷର)**

**ପର୍ଶୁରାମ ପାଟଣା ବନକାଇ ନଗ - (୧୩ ଅଯର)**
**କଳିଯୁଗ ଚାରିଲକ୍ଷ ବତିଶ ସହସ୍ର ଭୋଗ । - (୧୬ ଅଯର)**

**ସକଳଜଳ ତାରିଣୀ ଶାରଳା ଚଣ୍ଡୀ ନାମ - (୧୫ ଅକ୍ଷର)**
**ଝଙ୍କଡ଼ପୁର ବାସୀ ଯୋଗେଶ ଆଦିବ୍ରହ୍ମ । - (୧୪ ଅକ୍ଷର)**

**ନବତନ ବସ୍ତ୍ର କୁଣ୍ଡଳ ଯେ ଧୂପଦୀପ - (୧୪ ଅକ୍ଷର)**
**ଏମାନେ ଦେଇ ସେ ଶତ ଦଣ୍ଡ ପ୍ରଣମିତ**
**ହୋଇଲେ ପରୀକ୍ଷ ମହାନୃପ । - (୨୪ ଅକ୍ଷର)**

ସାରଳା ଦାସଙ୍କ କବିତାରେ ଏପରି ବର୍ଣ୍ଣବ୍ୟତିକ୍ରମ କାହିଁକି ଦେଖାଯାଏ ଓ ସେ କେଉଁ ଆଦର୍ଶ ତଥା ନିୟମ ଧରି ଛନ୍ଦ କରିଥିଲେ ? ଏହି ପ୍ରଶ୍ନର ଉତ୍ତରରେ କୌଣସି ନିଶ୍ଚିତାଭିପ୍ରାୟ ଆମ୍ଭେ କରିପାରୁ ନାହୁଁ କି ଆମ୍ଭର ଜ୍ଞା ନାହିଁ । ମାତ୍ର ଅନୁସନ୍ଧାନ କରି ଦେଖିଲେ ଅନୁମିତ ହୁଏ, ଓଡ଼ିଆ ଢ଼ଗଢ଼ମାଳି ପ୍ରବାଦ, କବିଙ୍କର ପ୍ରଧାନ ଓ ଏକମାତ୍ର ଆଦର୍ଶ ଥିଲା । ତେଣୁ ଏହା କୁହାଯାଇପାରେ ଯେ, ଲୋକମୁଖରେ ପ୍ରଚଳିତ ଢଗଢମାଳିରେ ପ୍ରୟୋଗ ହୋଇଥିବା ଛନ୍ଦ ତଥା ରାଗରାଗିଣୀକୁ ପରବର୍ତ୍ତୀ ସମୟରେ କାବ୍ୟକାରଗଣ ସେମାନଙ୍କ ଶିଷ୍ଟ କାବ୍ୟାବଳୀରେ ଅନୁସରଣ କରି ଏ ସବୁର ବିକାଶ କରାଇଛନ୍ତି । ଅନେକ ଓଡ଼ିଆ ଢ଼ଗରେ ଅନ୍ତର୍ମେଳ ଭିନ୍ନ ଅକ୍ଷର ନିୟମ ଦୃଷ୍ଟ ହୁଏ ନାହିଁ । ଉଦାହରଣ ସ୍ୱରୂପ :-

✡ **ଘଇତା ମାରଇ ରାଗେ,**
**କାନ ମଲ୍ଲୀକଢ଼ି ପକାଇ ଦେଉଛି ଦିଅର ଶଶୁର ଆଗେ ।**

✡ **ନିଲଜ ଲାଉ,**
**ଟେକା ଟେକି କଲେ ପିଢ଼ାକୁ ଯାଉ ।**

✡ **ଅଳପ ଡେଣ୍ଟା ମାଇପ ଖେଣ୍ଟା ମଠୁଆ ବଳଦ ଯାର,**
**ଯମଘର ଯାଇ କି ଫଳ ପାଇବ ନିତି ମରଣ ତାର ।**

✡ **ଧନର ମହିମା ଧନର ଗରିମା ଧନ ସିନା ବଡ଼ ଜାଣ,**
**ଧନ ଥିଲେ କୁଜା କନ୍ଦର୍ପ ନାରାୟଣ ଶତ୍ରୁ ଅଟେ ପାଦ ତଳ ।**

✡ **ଦୁଇ ମାଇପର ଘଇତା,**
**ତତଲା ଖାଇବୁକି ପଖାଳ ଖାଇବୁ ଦିନ ଥାଉ ଥାଉ କହିଥା ।**

ସାରଳା ଦାସଙ୍କ କବିତାରେ କୌଣସି କୌଣସି ଠାରେ ସମାନାକ୍ଷର ବିଶିଷ୍ଟ ପଦ ମଧ ଦେଖାଯାଏ । ଏହା ନିମ୍ନରେ ସୂଚିତ ହେଲା ।

✡ **କୁଞ୍ଚିତ କବରୀ ଘନ ସୁସଞ୍ଚ ରୁଚିର- (୧୪ ଅକ୍ଷର)**
**କୁସୁମ ବିହୀନ ବିହରନ୍ତି ମଧୁକର । - (୧୪ ଅକ୍ଷର)**

✡ **ଚାହାଁନ୍ତେ ସବୁରି ଶରୀର ଯିବ ଫାଟି । - (୧୩ ଅକ୍ଷର)**
**ସଂସାର ନିମନ୍ତେ ତଳକୁ କଲା ଦୃଷ୍ଟି । - (୧୩ ଅକ୍ଷର)**

ସେହିପରି କେତେ ଗୁଡ଼ିଏ ଢ଼ଗ ସମାନାକ୍ଷର ବିଶିଷ୍ଟ ଥିବାର ମଧ ଦେଖାଯାଏ । ଯେପରି -

✡ **ଦୁଧ ଖାଇ ମନେ କଲେ ଘରେ ଥିବ ଗାଈ,**
**କଳି କରି ମନେ କଲେ ସଙ୍ଗେ ଥିବ ଭାଇ ।**

✡ **ପଳାଇ ପଶିଲି ମାଉସୀ ଘରେ**
**ମାଉସୀ ମାଇଲା ଦୁଇ ପହରେ ।**

ଏ ଢ଼ଗ ସବୁ କେହି କୌଣସି ରାଗ ବା ରାଗିଣୀରେ ବୋଲନ୍ତି ନାହିଁ । ସାରଳାଦାସଙ୍କ ମହାଭାରତ ଓ ବଳରାମ ଦାସଙ୍କ ରାମାୟଣ ମଧ, ପୁରାଣ ପଢ଼ା ହେଲା ସମୟରେ ଶ୍ରୋତାମାନେ ଶୁଣିଥିବେ- କୌଣସି ରାଗ ବା ରାଗିଣୀରେ କେହି ଗାଆନ୍ତି ନାହିଁ । ଯେଉଁ ଧାରାରେ ମହାଭାରତ, ରାମାୟଣ ଗାନ କରାଯାଏ, ତାହାକୁ 'ବୋଲା' ବା 'ପଢ଼ା' କହନ୍ତି । ଢ଼ଗବୃତ୍ତ ନୀଚ ବୃତ୍ତ ନୁହେଁ । ଅନ୍ୟାନ୍ୟ ଖ୍ୟାତନାମା କବିମାନେ ମଧ ଢ଼ଗ ବୃତ୍ତରେ ଛାନ୍ଦ ଚୌପଦୀ ଲେଖିଥିବାର ଦେଖାଯାଏ । ଯେପରି -

✡ **ଗୀତ ନାଶ ଯାଏ ବାଟେ, ପାଣି ନାଶ ଯାଏ ପାଟେ,**
**ସ୍ତିରୀ ନାଶ ଯାନ୍ତି ଯାତ୍ରା ବରବେ ଯେ ସୂତା ନାଶ ଯାଏ ହାଟେ ।**

ଉଲ୍ଲିଖିତ ଢ଼ଗ ଓ ଆଧୁନିକ 'ଘଣ୍ଟାରବ' ସମାନ ।

ସେହିପରି ଆଉ ଦୁଇଟି ଉଦାହରଣ ହେଲା -

✡ **ଫାଲ୍‌ଗୁନ ଶୋଭା ପ୍ରକାଶି, ଶିଶିରେ ବସନ୍ତ ମିଶି,**
**ବାଳବାମା ତନୁ ସୀମାକୁ ଅଶ୍ଳେଷ ଯୌବନ କଲା କି ଆସି ।**

-(ଲାବଣ୍ୟବତୀ)

✡ **କୁଟନ୍ତି ଧାନ ବୁହନ୍ତି ପାଣି, ଦୋସଢ଼ା ପକାଇ ମହାନ୍ତିଆଣୀ ।**

ଏହି ଢ଼ଗ ରାଗ 'ଛୋଟମଞ୍ଜରୀ' ସହିତ ସମାନ । ଉଦାହରଣ -

✡ **ନନ୍ଦନନ୍ଦନ, ଜଗବନ୍ଦନ, ବରଜବାଳୀଙ୍କ ହୃଦଚନ୍ଦନ ।**

- (ଶ୍ରୀକୃଷ୍ଣ ଲୀଳା)

ସାରଳାଦାସ କିପରି ମହାଭାରତ ଲେଖିଲେ, ଏ ବିଷୟରେ ଖଣ୍ଡିଏ ହସ୍ତଲିଖିତ ପୁସ୍ତକର ପ୍ରାରମ୍ଭରେ ଲେଖା ଅଛି -

✡ କୈଳାସବାସୀ ସେ (ଶାରଳା ଦାସ) ରୂପରେ ଅବତାର,
ମୂର୍ଖ ହୋଇ ଜନ୍ମ ହେଲା ଶୂଦ୍ରଘର ।
ବିରଜାମଣ୍ଡଳ ଦେଶେ କୃଷି କରୁଥାଇ,
ଏକ ଦିନେ ପଦେ ସେ ଟେକିଲା ଗୀତ ଗାଇ ।
ପଛକୁ ଚାହିଁଲା ଆମ୍ଭେ (ଶାରଳା ଦେବୀ) ବୃଦ୍ଧାସ୍ତିରୀ ରୂପ,
ତେଣୁ କରି ଗୀତ ପଦ କଲାକ ସେ ଲୋପ ।
**କରେ ହଳବାଡ଼ି ଧରିଣ ଭୂମି ଚଷି,**
**ପୁଣିହିଁ ଢ଼ମାଳି ଗୀତ ଗାଇଲା ପଦେ ହସି ।**
ଅତି ବୃଦ୍ଧ ଅବସ୍ଥା ହୋଇଣ ଆମ୍ଭେ ଗଲୁଁ,
ସେ କୃଷିକାର ପାଶେ ପ୍ରବେଶ ହୋଇଲୁଁ ।
ଚାଲନ୍ତେ ଲଡ଼ବଡ଼ ଯେ ଛିଡ଼ା ଧୋତି କଟି,
ସେ ଭୂମିର ହୁଡ଼ା ନ ପାଇଲୁଁ ଉଠି ।
ଥରହର ହୋଇ ଭୂମିରେ ପଡ଼ିବା ବେଳେ,
କୃଷିକାର ଦେଖି ଧାଇଁଲା ତତ୍କାଳେ ।
ବେନି କରେ ମତେ କୋଳାଗ୍ରତ କରି,
ସ୍ଥିର କରି ନେଇ ବସାଇଲା ଧରି ।
କାହିଁର ମାତା ତୁ ଗୋ କେବଣ ଦେଶ ଯାଉ,
ସଙ୍ଗେ କେହି ନାହିଁ ଏକା ତ ଅଇଲୁ କାହୁଁ ।
ମୁଁ ବୋଇଲି ଆରେ ବନ୍ଧୁବର୍ଗ ମୋର ନାହିଁ,
ତେଣୁ ଏକା ହୋଇ ଅଇଲି ଏଥେ ମୁହିଁ ।
ପକ୍ଷପୁର ଶାସନେ ଅଟଇ ମୋର ବାସ,
ବଣା ହୋଇ ଅଇଲି ନ ଜାଣି କେଉଁ ପାଶ ।
ମୁଁ ବୃଦ୍ଧା ମତେ ଗଙ୍ଗା ପାରି କରି ଦିଅ,
ଆମ୍ଭର ଆୟୁ ଘେନି ଆପଣେ ବର୍ତ୍ତିଥାଅ ।
ମୁହିଁ ବୃଦ୍ଧାସ୍ତିରୀ ଯେ ଦେହରେ ସୁସ୍ଥ ନାହିଁ,
ଜଳ ଶରୀରେ ଲାଗିଲେ ବାଧା ଯେ ବଳଇ ।

ଏ ନଦୀ ପାରି ମତେ ଦିଅ ହୋ କୃଷିକାର,
ତ୍ୱରିତେ ଯିବି ମୁଁ ମୋର ଯକ୍ଷପୁର ।
ଶୁଣି ମହାକାଳ ହଳ ଛାଡ଼ିଦେଲା,
ମତେ ନେଇ ଯେ କାଖରେ ବସାଇଲା ।
ବୃଦ୍ଧ ଗଙ୍ଗାତୀରେ ହୋଇଲା ପ୍ରବେଶ,
ଦେଖିଣ ତାହାର ଯେ ଉଡ଼ିଲା ସାହସ ।
ମନେ ବିଚାରିଲା ପ୍ରଖର ନଦୀଜଳ,
କେମନ୍ତେ କରି ଏଥି ପାଇବି ଥଳ କୂଳ ।
ଆମ୍ଭେ ବୋଇଲୁଁ ବାବୁରେ ବହନ ପାରି କର,
ତ୍ୱରିତେ ଯିବି ମୁଁ ନୋହିବ ଉଛୁର ।
ଶୁଣିକରି ଜଳରେ ପଶିଲା ଧସାଇ,
ବାମ କାଖ ଉପରେ ମତେ ଯେ ବସାଇ ।
ଡାହାଣ କରେ ଯେ ଧରିଛି ହଳବାଡ଼ି,
ସ୍ଥିର ସ୍ଥିର କରି ଚରଣ ଯେ ଛାଡ଼ି ।
ଚରଣ ବୁଡ଼ି ଜାନୁ ବୁଡ଼ିଲା ତାର କଟି,
କାଖ ଉପରୁ ପୁଣି ଆମ୍ଭଙ୍କୁ ଦେଲା ଟେକି ।

X X X

ସ୍କନ୍ଧ ଉପରେ ନେଇ ବସାଇଲା ତୁରିତ,
ପୁଣି ସ୍କନ୍ଧକୁ ଜଳ ଟେକିଲା ଅପ୍ରମତ ।
ପୁଣି ମାୟାରେ ଜଳ ସ୍କନ୍ଧକୁ ଲାଗିଲା,
ମସ୍ତକ ଉପରେ ବେଗେ ନେଇ ବସାଇଲା,
ଆମ୍ଭେ ଜାଣିଲୁଁ ତାର ହୃଦୟ ବେଦନା,
ବୋଇଲୁଁ ବାବୁ ଗୀତ ପଦେ ଗାଉନା ।
ବଚନେ କହିଲା ମା ଗୋ ମୂର୍ଖ ମୋର ମତି,
କଷଟ୍‌କାର ପଦ କେମନ୍ତେ କରିବି ଉକତି ।
ଆମ୍ଭେ ବିଚାରିଲୁ ରେ ହୋଇଲା ତୋର ଜ୍ଞାନ,
ଶ୍ରୀ ମହାଭାରତ ଏବେ କର ତୁ ଲେଖନ ।

X X X

ଏହା ଶାରଳାଦେବୀ ବ୍ରାହ୍ମଣମାନଙ୍କୁ ସ୍ୱପ୍ନରେ କହିଥିଲେ ବୋଲି ଲେଖାଅଛି । ଏହାଦ୍ୱାରା ସାରଳା ଦାସଙ୍କ 'ଛନ୍ଦ' ଢ଼ଗଢ଼ମାଳିର ଅନୁକରଣ ବୋଲି ସ୍ପଷ୍ଟ ପ୍ରମାଣିତ ହେଉଅଛି ।

ପ୍ରସଙ୍ଗକ୍ରମେ ଓଡ଼ିଶାର ଆଦି କବି ସାରଳା ଦାସଙ୍କ ସମ୍ପର୍କରେ ସର୍ବସାଧାରଣ ପାଠକମାନଙ୍କ ସମୀପରେ ନିମ୍ନଲିଖିତ କେତୋଟି ବିଷୟ ଉପସ୍ଥାପିତ କରୁଛି : -

କବି ବର୍ଣ୍ଣରେ 'ଶୂଦ୍ର' ଓ ଜାତିରେ 'ମୁନି' ଥିଲେ । ଆମ ଦେଶରେ 'ମୁନି' ବୋଲି ଏକ ସମ୍ପ୍ରଦାୟ ବା ଜାତି ଅଛନ୍ତି । ଏମାନେ 'ମୁନି' ସମାଜର ପ୍ରବର୍ତ୍ତକ ଓ ପ୍ରଚାରକ । ଓଡ଼ିଶାରେ ମଧ ଏହି ସମ୍ପ୍ରଦାୟର ଲୋକେ ପଞ୍ଚଦଶ ଶତାବ୍ଦୀରେ ଥିବାର ସମ୍ଭାବନାକୁ ଏଡ଼େଇ ଦିଆ ଯାଇ ପାରିବନାହିଁ । 'ରାଉଳ' ମାନଙ୍କ ପରି ଠାକୁରାଣୀ ସେବା ଏମାନଙ୍କ ପ୍ରଧାନ ବୃତ୍ତି ଥିଲା ।

ସଂସ୍କୃତ ମହାଭାରତ ରଚୟିତା 'ବ୍ରହ୍ମମୁନି' ଥିଲେ । ତେଣୁ ପ୍ରାକୃତ ମହାଭାରତ ରଚୟିତା, ସାରଳା ଦାସ ଆପଣାର ଟେକ ରଖିବା ନିମନ୍ତେ ବର୍ଣ୍ଣର ନାମ 'ଶୂଦ୍ର' ଓ ଜାତିର ନାମ 'ମୁନି'କୁ ଏକତ୍ର କରି 'ଶୂଦ୍ରମୁନି' ଉପାଧି ଧାରଣ କରିଥିଲେ । କବିଙ୍କର ଆତ୍ମଗୌରବର କ୍ଷଣେଚ୍ଛା ବଳବତୀ ଥିଲା ବୋଲି ତାଙ୍କ ଦ୍ୱାରା ରଚିତ ମହାଭାରତରୁ ଏହାର ନଜିର ମିଳେ । କବି ସ୍ୱର୍ଗାରୋହଣ ପର୍ବରେ ଲେଖିଛନ୍ତି : -

'ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ,
ଦ୍ୱିତୀୟ ଜନ୍ମରେ ମୁହିଁ ମହାକାଳ ଧ୍ୱଂସ ।
ତୃତୀୟ ଜନ୍ମରେ ମୁଁ ଶାରଳାଦାସ କବି,
ଆଉ ଜନ୍ମେ ମୁହିଁ ମର୍ତ୍ତ୍ୟମଣ୍ଡଳେ ଜନ୍ମିବି ।
ପ୍ରତିଜନ୍ମେ ମୁହିଁ ପନ୍ଦର ଲକ୍ଷ କଥା ଭାବି,
ଚାରି ଜନ୍ମେ ଷାଠିଲକ୍ଷ କଥା ମୁଁ କହିବି ।
ଉକ୍ତ କଥା କହିସାରି ଏ ମର୍ତ୍ତ୍ୟମଣ୍ଡଳ,
ତେବେ ଯାଇଁ ହୋଇବି ମୁଁ ଶିବ ଦ୍ୱାରପାଳ ।'

ଆଜିକାଲି ଶହେପୃଷ୍ଠା ସରିକି ଚହଚହମହ ମଲାଟ ମଡ଼େଇ ଖଣ୍ଡେ ଖଣ୍ଡେ ପୁସ୍ତକ ଲେଖି ଲୋକେ କବି, ମହାକବି ବୋଲାଉଥିଲା ବେଳେ, ଯିଏ ଅଠର ଖଣ୍ଡ ମହାଭାରତ ପଦ୍ୟାନୁବାଦ କରିଅଛନ୍ତି, ସେ ଆପଣାକୁ 'କାଳିଦାସ', 'ଶୂଦ୍ରମୁନି' କାହିଁକି, 'ବ୍ରହ୍ମମୁନି' କହିଲେ କି ଦୋଷ ହେବ ?

ଉତ୍କଳ ବାଲ୍ମୀକି, ରାମାୟଣ ରଚୟିତା ବଳରାମ ଦାସ ଉତ୍ତର ପ୍ରଦେଶରେ ତୁଳସୀ ଦାସ ଯେପରି, ଦକ୍ଷିଣରେ ଭାସ୍କର ଯେପରି, ଓଡ଼ିଶାରେ ସେହିପରି ବଳରାମ ଦାସ ଅନ୍ତ

ବୟସରେ ରାମାୟଣ ରଚନା କରିଥିଲେ । କବି ଉତ୍ତରାକାଣ୍ଡରେ ଲେଖିଛନ୍ତି - 'ଜନ୍ମରୁ ମୁର୍ଖ ମୁଁ ଅଳ୍ପ ବୟସ । ଗ୍ରନ୍ଥ କଲାବେଳକୁ ବୟସ ତିରିଶ ।'

କବିଙ୍କର ରାମାୟଣ ପ୍ରବାଦରେ ପରିପୂର୍ଣ୍ଣ ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

✡ ପାଟସୂତା ସଙ୍ଗେ ନେଇ ମିଶାଇଲି ପଟ ।
ଦେବତା ବ୍ରାହ୍ମଣ ମୁଁ ସମ କଲି ନଷ୍ଟ ।।
ନବଙ୍ଗ କର୍ପୂର କଲି ଏକ ସମ ।
ବ୍ରହ୍ମଜାତି ହୀରାକୁ କଲି ସଟିକ ସଙ୍ଗେ କମ ।।
କାଚ ହେମରାଗ କଲଇଁ ଏକସରି ।
ଗରଗଡ଼ ସଙ୍ଗରେ ସୁକୁତା ସମ କଲି ।।
ପାନ ପାଲଟାଇ ଆଳୁ ପାତ୍ର ଆଣଇ ।
ଗୋରୁଙ୍କ ସଙ୍ଗତେ ନେଇ ଘୁଷୁରିକି ଗଣଇ ।।
କାଢ଼ି ଅଶ୍ୱତୁଲେ ଗଜକୁ କଲଇଁ ତୁଲ ।
ସେବତୀ ପୁଷ୍ପ ତୁଲେ ଗୁଞ୍ଛିଲି ଲାଉ ଫୁଲ ।।
କିଆଫଳ ଖାଇ ପଣସ ପାସୋରିଲି ।
କୁଳସ୍ତିରୀ ସଙ୍ଗେ ବେଶ୍ୟାକୁ ଲେଖିଲି ।।
କୂପ ପାଣିରେ ମିଶାଇଲି ଗଙ୍ଗାଜଳ ।
ଆମ୍ବ ଲେଖି ଖାଇଲି ମହାକାଳ ଫଳ ।।

ଭକ୍ତକବି ଦୀନକୃଷ୍ଣ ଦାସଙ୍କ ରଚିତ 'ରସକଲ୍ଲୋଳ' କାବ୍ୟ ଯେ ପ୍ରବାଦରେ ପରିପୂର୍ଣ୍ଣ ଏହା ଆମ୍ଭେ **'ସାରଳା ରତ୍ନ ଭଣ୍ଡାର ରସ ସାଗର' ଗ୍ରନ୍ଥର ୪ର୍ଥ ଖଣ୍ଡରେ** ଐତିହାସିକ ବିମସ୍ ସାହେବଙ୍କ ଉକ୍ତିରୁ ଦର୍ଶାଇଥିଲୁ । ସୁତରାଂ 'ରସ ବିନୋଦ' ର ରଚୟିତା ଆଉ ଜଣେ ଦୀନକୃଷ୍ଣ ଦାସ ସଙ୍ଗତି ସଂପନ୍ନ ନଥିବାରୁ, ସେ ଖୋରଧା ନିକଟବର୍ତ୍ତୀ ଭୀମନଗରସ୍ଥ ବଳରାମ ସାମନ୍ତସିଂହାରଙ୍କ ଅନୁସରଣରେ ରହି ଜୀବିକା ନିର୍ବାହ କରୁଥିଲେ । ଭକ୍ତ ବଳରାମ ଦାସ ସାମନ୍ତ ସିଂହାରଙ୍କ "ବଂଶବୃକ୍ଷ" 'ରସ ବିନୋଦ'ରେ ଲିପିବଦ୍ଧ କରିଛନ୍ତି । ଏହାଛଡ଼ା କବି 'ରସ ବିନୋଦ'ର ମୁଖବନ୍ଧରେ ତାଙ୍କ ଦ୍ୱାରା ରଚିତ ଗ୍ରନ୍ଥ ସମୁହର ଏକ ଦୀର୍ଘ ତାଲିକା ଦେଇଛନ୍ତି । ସେଗୁଡ଼ିକ ହେଲା-ଗୁଣସାଗର, ଭାବ ସମୁଦ୍ର, ସପ୍ତେ ପଦ, ଭୂତକେଳି, ସଂସାର ବୋଧନ, ଅମୃତ ସାଗର, ମୁକତି ସାଗର, ପ୍ରସ୍ତାବ ସାଗର, ତତ୍ତ୍ୱ ସାଗର, ଜଗମୋହନ ଛନ୍ଦ, ଜମ୍ବୁବତୀଙ୍କ ବିଭା, ଗୋପୀ ଗୋବିନ୍ଦ ପ୍ରେମରସ, କଂସର ବିଭାଗ୍ରନ୍ଥ, ଜ୍ଞାନ ସାଗର, ଧର୍ମ ସାଗର, ଗ୍ରନ୍ଥ ସାର, ଗ୍ରନ୍ଥବୀର, ରସବିନୋଦ, ଭକ୍ତି ସାଗର, ମହିମା ସାଗର ।

ଏହି କବିଙ୍କର ଗ୍ରନ୍ଥ ମାଳା ପ୍ରାୟ ପ୍ରବାଦ ପ୍ରବଚନରେ ପରିପୂର୍ଣ୍ଣ । ତାର ନମୁନା ତଳେ ପ୍ରଦତ୍ତ ହେଲା-

✡ ଯାହାକୁ ମୋର ପ୍ରତି ଆଶା । ତେଣୁଟି କହିଲି ଏ ଭାଷା ।
ଯାହାର ଅନ୍ନ ବସ୍ତ୍ର ଖାଇ । ତା ସୁଖ ଚିନ୍ତା କରୁଥାଇ ।
* * * * * *

✡ ସବୁ ଶାହାସ୍ତ୍ର ଦଧିଭାଣ୍ଡ । ତହିଁ ମେଲିଲି ଖୁଆଦଣ୍ଡ ।
* * * * * *

✡ ସୂତାର ନିଶୁଣି ଲଗାଇ । ସ୍ୱର୍ଗକୁ ଲୋଡୁଅଛି ଯାଇ ।
ପିମ୍ପୁଡ଼ି ହୋଇ ଏଡ଼େ ବଳୀ ମେରୁକୁ ଲୋଡୁଅଛି ପେଲି ॥
* * * * * *

✡ ଧର୍ମରେତରେ ଜାତ ହୋଇ । ଅଧର୍ମ ପାଶକୁ ନ ଯାଇ ।
ଶୋକ ସନ୍ତାପ ନାହିଁ ଚିତ୍ତେ । ଧର୍ମ ଆଚାର ବୃତ୍ତି ନିତ୍ୟେ ।
ହୃଦଭିତରେ ନାହିଁ ମାୟା । ଜୀବରେ ନିରନ୍ତନ ଦୟା ।
ଶାନ୍ତ ଶୀତଳ ଦୁଇ ମତ । ପରସ୍ତ୍ରୀରେ ନାହିଁ ଚିତ୍ତ ।
ପରକୁ ନ କରନ୍ତି ରୋଷ । କ୍ଷମା କରନ୍ତି କରେ ଦୋଷ ॥

କବି ଦାଶରଥି ଦାଶଙ୍କ 'ବ୍ରଜ ବିହାର' ଦଶ ଛାନ୍ଦରେ ସମ୍ପୂର୍ଣ୍ଣ । ପ୍ରତ୍ୟେକ ଛାନ୍ଦ 'ବୋଲି' ନାମରେ ଅଭିହିତ । କବି ଏହାକୁ ଖ୍ରୀ ୧୭୩୧ ରେ ସମ୍ପୂର୍ଣ୍ଣ କରିଥିଲେ । କବିଙ୍କ ଜନ୍ମସ୍ଥାନ ରଣପୁର, ସେ ଜାତିରେ ବ୍ରାହ୍ମଣ । ସେ ଜଗନ୍ନାଥ ଦର୍ଶନକୁ ଯାଇ ଶ୍ରୀକ୍ଷେତ୍ରରେ କିଛିକାଳ ବାସକରିଥିଲେ । ଦାଶରଥି ଦାଶ ଓଡ଼ିଆ ରାଜା ଗୋପୀନାଥ ଦେବଙ୍କ ସମୟର କବି ।

ଶବ୍ଦସୌଷ୍ଠବ ପ୍ରତିପାଦନ କରିବା ଓ ନିଜର କବିତ୍ୱ ଶକ୍ତି ଦେଖାଇବା କବି ଦାଶରଥି ଦାଶଙ୍କର ଉଦ୍ଦେଶ୍ୟ ନଥିଲା । ଯାହା ଦେଖାଯାଏ, ତାହା ସରଳ ଭାବରେ ଓ ସୁବୋଧ ଭାଷାରେ ଲିଖିତ । ଏହି 'ବୋଲି' ମଧ୍ୟ ଓଡ଼ିଆ ଡ଼ଗ-ଡ଼ମାଳି ପ୍ରଭୃତି ଇଲାକାରେ ଅନ୍ତର୍ଭୁକ୍ତ । ନିମ୍ନରେ ଏହାର ନମୁନା ପ୍ରଦାନ କରାଗଲା ।

ଉଚ୍ଚବାଚ କରି କେହି ତୁଟା-ତୁଟି ।
କଳି କରିଣ ହୁଅନ୍ତି ଉଠା-ଉଠି ॥
କେହୁ କାହା ସଙ୍ଗେ ହୋଇ ବୋଲା-ବୋଲି ।
କଥା ନ କହିଣ ମୁହଁ ଫୁଲା-ଫୁଲି ॥

କେହୁ କଥା ଛିଦ୍ର ପାଇ ତୋଖା-ତୋଖି ।
କେହୁ ବଚନେ ବଚନେ ଯୋଖା-ଯୋଖି ॥
ବାଛି ପଛରେ କାହାକୁ କୁହା-କୁହି ।
କେହୁ ଉଚିତ କହଇ ମୁହାଁ-ମୁହିଁ ॥
ବାଦ ଲଗାଇଣ ହୋଇ ଜିଣା-ଜିଣି ।
ପ୍ରୀତି ଧନ ଦେଇ କେହୁ କିଣା-କିଣି ॥
ଏକ ଆରକରୁ ତହିଁ ଶିଖା-ଶିଖି ।
ବେଶ ଛଇଳ ଚାତୁରୀ ଦେଖା-ଦେଖି ॥
କଥା ଅଭାବରୁ କେହୁ ରୁଷା-ରୁଷି ।
ଭଲଭଲ ଲୋକେ ପଶି ତୋଷା-ତୋଷି ॥
କେହୁ କାହା ସଙ୍ଗେ ମିତ୍ର ବନ୍ଧା-ବନ୍ଧି ।
ହାର କଙ୍କଣ ବସନ ପିନ୍ଧା-ପିନ୍ଧି ॥
କହୁ କହୁଣ ବଚନ ହୁଡ଼ା-ହୁଡ଼ି ।
ଗୋଳ କରନ୍ତେଣ କେହୁ ଛଡ଼ା-ଛଡ଼ି ॥
କେହୁ ମାଲଯୁଦ୍ଧେ ହୋଇ ଧରା-ଧରି ।
ଠାଣ ମାଣେ ରହି ମୁଥ ମରା-ମରି ॥
ଆଡ଼ ଛାଡ଼ ବଞ୍ଚାଇଣ ପଞ୍ଚା-ପଞ୍ଚି ।
ଦାନ୍ତ ଚାପି ବାହା ମେଲି ଉଞ୍ଚା-ଉଞ୍ଚି ॥
ବାହୁ ବଳରେ ହୁଅନ୍ତି କୋଡ଼ା-କୋଡ଼ି ।
ଭିଡ଼ା ଭିଡ଼ି ହୋଇ ମହୀ ଗଡ଼ା-ଗଡ଼ି ॥
ଗଦା ଖଡ଼ଗ ଧରି କେ ସଧା-ସଧି ।
କେହୁ ଉତ୍ତମ ମଧ୍ୟମ ଅଧା-ଅଧି ॥
ଚକା ଗଳୁଚି ବରଡ଼ା ପକା-ପକି ।
ଦଣ୍ଡା ଦୋହସ୍ତା ପଖିଆ ଠୁକା-ଠୁକି ॥
ମହା ଅଚଳ ପଥର ଟେକା-ଟେକି ।
ଯନ୍ତ୍ର ଯନ୍ତ୍ରବାଣ ଧନୁ ଝିଙ୍କା-ଝିଙ୍କି ॥

x x x

ମାରି ପକାନ୍ତେଣ ଧରି ଗୋଡ଼ାଗୋଡ଼ି ।
ଦୁଇ ହାତେ ମୁଥ ବିଧା କୋଡ଼ାକୋଡ଼ି ।।
ହଣା ହଣି ହୋଇ ହାତେ ଅଡ଼ାଅଡ଼ି ।
ଯୋଡ଼ି ବନ୍ଧେ ପଡ଼ି ମହୀ ଗଡ଼ାଗଡ଼ି ।।
ଏକା ବାହେ ଆର ବାହେ ପେଲାପେଲି ।
ଆଣ୍ଠୁଭର ଦେଇ ଦେଇ ଠେଲାଠେଲି ।।
ଠାଣ ମାଣେ ଟିପ ଟାଣେ ତଡ଼ାତଡ଼ି ।
କାନ୍ଧେ କାନ୍ଧ ଦେଇ ବାହେ ମଡ଼ାମଡ଼ି ।।
ତମ ତର୍ଜନାରେ ହୋଇ ହୁଆଁହୁଇଁ ।
ଦୁଇ ଆଡ଼େ ପୋଏ ରହି ଟିହାଟିହି ।
ବଳ ପ୍ରାକର୍ମ ଦେଖାଇ ଡକାଡକି ।
ସମବଳ ପାଇ ହୋଇ ଥକାଥକି ।।
କରେ କରତାଳି ମାରି ଧୁଆଁଧୁଁଇଁ ।
ପଛେ ଗୋଡ଼ାଇଣ ହାତ ପୁଆପୁଇ ।।
ବାଦ କରିଣ ବୃକ୍ଷକୁ ଉଠା-ଉଠି ।
ଫେଡ଼ି ପାଇଣ କାହା ମୁଠା-ମୁଠି ।।

କେତେକ ମୁଷ୍ଟିମେୟ ଓଡ଼ିଆ ସାହିତ୍ୟର କର୍ଣ୍ଣଧାର ଭାଷାରେ ପ୍ରାଦେଶିକତାର ଆଧିକ୍ୟକୁ ସହ୍ୟ କରି ନପାରି ଏହା ତ୍ରୁଟି ହିସାବରେ ଗଣ୍ୟ କରି ପରିହାର କରିବାକୁ ଯତ୍ନବାନ ହେବାକୁ ଉପଦେଶ ଦିଅନ୍ତି । ସେମାନଙ୍କ ମତରେ ସର୍ବାଞ୍ଚଳ ପ୍ରଚଳିତ ଓ ସର୍ବଜନବୋଧ୍ୟ ବିଶୁଦ୍ଧ ଓଡ଼ିଆ ଗ୍ରାମ୍ୟ କଥା ଓ idiom ରକ୍ଷା କରି ଅଧିକ ପରିମାଣରେ ସଂସ୍କୃତମୂଳକ ସହଜ ଶବ୍ଦମାନ ବ୍ୟବହାରକଲେ କାହାରି ଆପତ୍ତି ରହିବ ନାହିଁ । ଆମ୍ଭେ ସାହିତ୍ୟରେ 'ସ' ଅକ୍ଷରର ବି ଧାର ଧାରୁ ନାହିଁ - ଏକଥା ପୂର୍ବରୁ ବହୁବାର କହିଛୁ । ମାତ୍ର ଜଣେ ସ୍ୱାଧୀନ ନାଗରିକ ତଥା ବୁଦ୍ଧିଜୀବୀ ହିସାବରେ ଏହି ତ୍ରୁଟି କେଉଁ ନିୟମ ଅନୁସାରେ ସ୍ଥିର ହୋଇଛି, ଆମ୍ଭେ ଜାଣି ପାରୁନାହୁଁ ।

ମାକ୍ସ୍‌ମୁଲର୍ କହିଛନ୍ତି - "and unless the literary and courtly languages invigorate themselves by a constantly renewed intercourse with their former companions, the popular dialects will sooner or later assert their ascendency." (MaxMuller's Science of Language, Vol I. page 61.- ଦ୍ରଷ୍ଟବ୍ୟ)

ଏହି ଉକ୍ତିର ଅଭିପ୍ରାୟ ଏହି ଯେ, ପ୍ରାଦେଶିକ ଭାଷା ସହିତ ପୁସ୍ତକଗତ ଭାଷାର ସମ୍ପର୍କ ନ ରହିଲେ କାଳକ୍ରମେ ପ୍ରାଦେଶିକ ଭାଷା ନିଜ ଆଧିପତ୍ୟ ସ୍ଥାପନ କରିବ ।

ପୁଣି ମାକ୍ସ୍‌ମୁଲର୍ କହିଛନ୍ତି - "What we are accustomed to call languages, the literary idioms of Greece and Rome and India, of Italy, France and Spain, must be considered as artificial rather than as natural forms of speech. The real and natural life of language is in its dialects, a name which in its widest sense comprises provincialism, brogue, *patois*, jargon or any other variety that affects the general progress of language down to the idiom of families and individuals." (Max Muller's Science of Language, Vol I. page 55. - ଦ୍ରଷ୍ଟବ୍ୟ)"

ଏହାର ସାରାଂଶ ଏହି ଯେ, ଗ୍ରୀସ୍, ରୋମ୍, ଭାରତବର୍ଷ, ଇଟାଲୀ, ଫ୍ରାନ୍ସ, ସ୍ପେନ୍ ଇତ୍ୟାଦି ଦେଶମାନଙ୍କରେ ଆମ୍ଭେମାନେ ଯାହାକୁ ଭାଷା କହୁଁ, ତାହା କୃତ୍ରିମ ଭାଷା, ଭାଷାର ପ୍ରକୃତ ପ୍ରାଣ କେବଳ ପ୍ରାଦେଶିକତା ।

ଏହା ପ୍ରମାଣ ସିଦ୍ଧ ନହେଲେ କ'ଣ ଓଡ଼ିଶାର ଉପାନ୍ତ ଅଞ୍ଚଳର (କାନ୍ଥି, ମେଦିନିପୁର) ନବ୍ୟ ଶିକ୍ଷିତ ଉତ୍କଳ ସନ୍ତାନମାନେ ମାତୃଭାଷା ପ୍ରାୟ ଭୁଲି ଯାଇଥାନ୍ତେ ? ପୁଣି ସେଠାକାର ଲୋକେ ଜଗନ୍ନାଥ ଦାସକୃତ ଭାଗବତ ବଙ୍ଗଳା ଅକ୍ଷରରେ ଲେଖି ଆହୁରି ପଢୁଥାନ୍ତେ ? ଦେବଭାଷା ସଂସ୍କୃତ ମୃତ ହୋଇ ପଡ଼ି ରହିଥାଆନ୍ତା ? ଲୋକେ ଆଜିକାଲି ବଙ୍ଗଳା, ଓଡ଼ିଆ, ଗୁଜରାତୀ ଇତ୍ୟାଦି ପ୍ରାଚୀନ ପ୍ରାଦେଶିକ ଭାଷାମାନଙ୍କରେ କଥାବାର୍ତ୍ତା କରୁଥାନ୍ତେ ? ଭିଟ୍ନୀ ସାହେବ କହିଛନ୍ତି - "They (language and dialect) are only two names for the same thing, as looked at from different paints of view. ** On the other hand, there is no tongue in the world to which we should not with perfect freedom and perfect propriety apply the name of dialect, when considering it as one of a body of related forms of speech. *; it (the science of language) has taught us that one man's speech is just as much a language as another man's; that even the most cultivated tongue that exists is only the dialect of a certain class in a certain locality - both class and locality limited, through the limits may be wide ones." (Whitney's Life and Growth of Language. page 177 to 178 - ଦ୍ରଷ୍ଟବ୍ୟ )

ଏହାର ସାରାଂଶ ଏହିଯେ, ଭାଷା ଓ ପ୍ରାଦେଶିକତା ମଧ୍ୟରେ କୌଣସି ପ୍ରଭେଦ ନାହିଁ।

ପୃଥିବୀରେ ଏପରି କୌଣସି ଭାଷା ନାହିଁ, ଯାହାକୁ ଆମ୍ଭେମାନେ ପ୍ରାଦେଶିକତା

କହି ନପାରିବା । ଆମ୍ଭମାନଙ୍କ କଥାବାର୍ତ୍ତା ଯେପରି ଭାଷା, ଅନ୍ୟଲୋକମାନଙ୍କ କଥାବାର୍ତ୍ତା ସେପରି ଭାଷା ଅଟେ । ଯେତେ଼ ଉତ୍କୃଷ୍ଟ ଭାଷା ହେଉ, ତାହା କୌଣସି ପ୍ରଦେଶର କୌଣସି ଶ୍ରେଣୀ ଲୋକମାନଙ୍କର ପ୍ରାଦେଶିକତା ମାତ୍ର । ଏଥିରୁ ସ୍ପଷ୍ଟ ଭାବରେ ବୁଝାହେବ ଯେ, ପ୍ରାଦେଶିକତା ଦୋଷରେ ଗଣ୍ୟ ନୁହେଁ । ବରଂ ପୁସ୍ତକରେ ଯେତେ ଅଧିକ ପରିମାଣରେ ବ୍ୟବହୃତ ହେବ, ସେତେ ବାଞ୍ଛନୀୟ । ପୁସ୍ତକରେ ପ୍ରାଦେଶିକତା ଦୋଷ ନୁହେଁ, ବରଂ ଗୁଣ ।

ଅଧିକ ପରିମାଣରେ ସଂସ୍କୃତ ଶବ୍ଦ ବ୍ୟବହାର କରିବା ବିଷୟରେ ବୀମସ୍ ସାହେବ ଯାହା ଲେଖିଅଛନ୍ତି ତାହା ଗ୍ରହଣୀୟ କି ନୁହେଁ ଥରେ ପରୀକ୍ଷା କରନ୍ତୁ -

"Native scholars have unfortunately set themselves to improve their mother-tongue by the resuscitation of sanskrit words, instead of striving to fix the orthography of the words really in use among their contemporaries and from this misdirected energy of theirs, it has too often resulted that the language presents a disjointed heterogeneous aspect, certain parts of it, as the nouns and the nominal part of compound words, being highly refined classical sanskrit; while other parts, as the inflectional and connecting particles, are rude in form and unsettled in orthography" (Beam's Comparative Grammer, Vol II, page 339 - ଦ୍ରଷ୍ଟବ୍ୟ )

ପୁଣି ଦୀନେଶ ଚନ୍ଦ୍ର ସେନ, 'ବଙ୍ଗ ଭାଷା ଓ ସାହିତ୍ୟ'ରେ ଯାହା କହିଛନ୍ତି, ତାହା ମଧ ପରୀକ୍ଷା କରି ଦେଖନ୍ତୁ -

"ଲିଖିତ ଭାଷା ଓ କଥିତ ଭାଷାର ମଧ୍ୟେ ଏକଟା ବ୍ୟବଧାନ ବର୍ତ୍ତମାନ; କିନ୍ତୁ ସେ ବ୍ୟବଧାନେର ଏକଟା ସୀମା ଆଛେ; ତାହା ଅତିକ୍ରମ କରିଲେ ଲିଖିତ ଭାଷା ମୃତ ହଇୟା ପଡ଼େ ଓ ତତ୍‌ସ୍ଥଲେ କଥିତ ଭାଷା ଏକଟୁ ବିଶୁଦ୍ଧ ହଇୟା ଲିଖିତ ଭାଷାୟ ପରିଣତ ହୟ । ଲିଖିତ ଭାଷା ଉତ୍ତରୋତ୍ତର ଉନ୍ନତ ହଇୟା ଶିକ୍ଷିତ ସମ୍ପ୍ରଦାୟେର କ୍ଷୁଦ୍ର ଗଣ୍ଡୀର ମଧ୍ୟେ ସୀମାବଦ୍ଧ ହୟ । କ୍ରମଶଃ ବାକ୍ୟ ପଲ୍ଲବେ, ସ୍ପୃହା ଓ ଶବ୍ଦେର ଶ୍ରୀବୃଦ୍ଧି ଚେଷ୍ଟାର ଫଲେ ଲିଖିତ ଭାଷା ଜନସାଧାରଣେର ଅନଧିଗମ୍ୟ ହଇୟା ପଡ଼େ । ତଖନ ଭାଷାବିପ୍ଳବେର ଆବଶ୍ୟକ ହୟ । ଯଖନ ସଂସ୍କୃତେର ସଙ୍ଗେ କଥିତ ଭାଷାୟ ସେହିରୂପେ ପ୍ରଭେଦ ଜନ୍ମିଲ, ତଖନ କଥିତ ପାଲି କିଞ୍ଚିତ୍ ବିଶୁଦ୍ଧ ହଇୟା ଲିଖିତ ଭାଷା ହଇୟା ଦାଣ୍ଡାଇଲ; ଯଖନ ପୁନଶ୍ଚ ପ୍ରାକୃତେର ସଙ୍ଗେ କଥିତ ଭାଷାର ପ୍ରଭେଦ ଅଧିକ ହଇଲ ତଖନ, ବର୍ତ୍ତମାନ ଗୌଡ଼ୀୟ ଭାଷାଗୁଲି କିଞ୍ଚିତ୍

ପରିଶୁଦ୍ଧ ହଇଯା ଲିଖିତ ଭାଷାୟ ପରିଣତ ହଇଲ ।''

ପୁଣି ଓଡ଼ିଆ ଭାଷାକୋଷ ପ୍ରଣେତା, ଢଗସମ୍ରାଟ୍, ପ୍ରଖ୍ୟାତ୍ ଆଇନ୍‌ଜ୍ଞ, ৵ ଗୋପାଳଚନ୍ଦ୍ର ପ୍ରହରାଜ 'ଦୁଇଖଣ୍ଡି ଓଡ଼ିଆ ପୁସ୍ତକର' ସମାଲୋଚନା ପ୍ରସଙ୍ଗରେ ଯାହା ଲେଖିଛନ୍ତି ସେଥିପ୍ରତି ସମସ୍ତଙ୍କର ଧ୍ୟାନ ଆକର୍ଷଣ କରୁଛି - ''ଯେଉଁ ପୁସ୍ତକରେ Anglo-saxon (ଆଦିମ ଇଂରାଜୀ) ଶବ୍ଦ ଯେତିକି ଅଧିକ ଓ Latin ଏବଂ Greek (ଆମଦାନି) ଶବ୍ଦ ଯେତିକି ଅଳ୍ପ, ସେ ପୁସ୍ତକ ତେତିକି ବେଶି ଆଦୃତ ।''

Anglo-saxon ବଦଳରେ 'ଓଡ଼ିଆ' ଓ Latin, Greek ବଦଳରେ 'ସଂସ୍କୃତ' ଲଗାଇ ପଢ଼ନ୍ତୁ, ଏହା କେତେଦୂର ଆପଣମାନଙ୍କର ଅନୁମୋଦନ ଲାଭ କରିବ, ବିଚାର କରନ୍ତୁ ।

* * *

# ଷଷ୍ଠଖଣ୍ଡ ଅବତରଣିକାର ଅବଶିଷ୍ଟାଂଶ

## ଇତିହାସ ପ୍ରସିଦ୍ଧ ପୁରୁଷ ଓ ନାରୀ ସମ୍ବଳିତ ପ୍ରହେଳିକା

ପ୍ରହେଳିକାରୁ ପୌରାଣିକ ଦେବଦେବୀ ବା ନରନାରୀ ଛଡ଼ା କେତେକ ଇତିହାସ ପ୍ରସିଦ୍ଧ ନାରୀ-ପୁରୁଷଙ୍କର ପରିଚୟ ମଧ୍ୟ ମିଳେ । ଏହି ଧରଣର ଚରିତ୍ର ଗୁଡ଼ିକ ହେଲା କୌଣସି ଧର୍ମଗୁରୁ, ରାଜା-ମହାରାଜା, କବି, ମହାକବି, ପଣ୍ଡିତ, କୂଟନୀତିଜ୍ଞ, ଜ୍ୟୋତିର୍ବିଦ, ଭକ୍ତ, ଦେଶପ୍ରେମୀ ଏବଂ କିଛି କାବ୍ୟଚରିତ୍ର ପ୍ରଭୃତି । ପଲ୍ଲୀବାସୀ ନିଜର ଧାରଣା ଅନୁଯାୟୀ ଏହି ଚରିତ୍ର ଗୁଡ଼ିକୁ ନେଇ ପ୍ରହେଳିକା ରଚନା କରିଛନ୍ତି । ଏହି ଧରଣର ପ୍ରହେଳିକାଗୁଡ଼ିକ ମଧ୍ୟରେ ଯେ ସବୁସମୟରେ ଆଲୋଚିତ ଚରିତ୍ରର ଗୁଣାଗୁଣ ବା ବୈଶିଷ୍ଟ୍ୟ ଫୁଟି ଉଠିଛି ତାହା ନୁହେଁ, ହୁଏତ କେବଳମାତ୍ର ନାମ ଶ୍ରବଣର ମାଧ୍ୟମରେ ସେମାନଙ୍କର ପରିଚୟ ଦେବାପାଇଁ ଚେଷ୍ଟା କରିଛନ୍ତି ପ୍ରହେଳିକାର ରଚୟିତା । ତେବେ ଏହି ଧରଣର ଚରିତ୍ରଗୁଡ଼ିକ ସମ୍ପର୍କରେ ଗ୍ରାମ୍ୟକବି ଯେଉଁ ଟିକକ ସେ ସମସ୍ତ ବ୍ୟକ୍ତି ସମ୍ପର୍କରେ ଜାଣୁଥିଲେ, କେବଳ ସେଇ ଟିକକ ପରିଚୟ ପ୍ରହେଳିକା ମଧ୍ୟରେ ବ୍ୟକ୍ତ କରିବାର ଚେଷ୍ଟା କରିଛନ୍ତି । ଏଥିରୁ ଗ୍ରାମ୍ୟ ଅଧିବାସୀମାନଙ୍କର ଅସୀମ କୌତୂହଳ ବା ଆଗ୍ରହ ଓ ସାଧାରଣ ଜ୍ଞାନ ଯେ କେତେ ପରିମାଣରେ ଥିଲା, ତାହାର ପରିଚୟ ଦୃଷ୍ଟ ହୁଏ ।

# କେତେକ ଧର୍ମଗୁରୁ ବିଷୟକ ପ୍ରହେଳିକା ସମ୍ପର୍କରେ ଆଲୋଚନା

ଶ୍ରୀ ଚୈତନ୍ୟ, ଜଗନ୍ନାଥ ମିଶ୍ର ଓ ଶଚୀଦେବୀଙ୍କର ପୁତ୍ର । ସେ ଗୌଡୀୟ ବୈଷ୍ଣବ ଧର୍ମର ପ୍ରବର୍ତ୍ତକ ଥିଲେ । ତାଙ୍କର ଅସାଧାରଣ ରୂପଲାବଣ୍ୟ ଥିଲା । ଅଳ୍ପ ବୟସରେ ସେ ସନ୍ୟାସୀ ହୋଇ ଗୃହତ୍ୟାଗ କରିଥିଲେ । ନାମ ସଙ୍କୀର୍ତ୍ତନ ମାଧ୍ୟମରେ ସେ ଜୀବେଦୟା ଓ ଈଶ୍ୱରଙ୍କୁ ଭକ୍ତି କରିବାକୁ କହିଥିଲେ । ଚୈତନ୍ୟ ଦେବଙ୍କର ସୁବର୍ଣ୍ଣଭଳି ରୂପଲାବଣ୍ୟ ଓ ସନ୍ୟାସୀ ହେବାର କଥା ପ୍ରହେଳିକା ମାଧ୍ୟମରେ ଅପୂର୍ବ ଭାବରେ ପ୍ରକାଶିତ ହୋଇଛି ଯେପରି:-

✡ **ସୁନାର ବର୍ଣ୍ଣ ଦେହ ତାଙ୍କ ତରୁଣ ସନ୍ୟାସୀ,**
**ଲୋକଙ୍କୁ ସାଙ୍ଗରେ ନେଇ ହୋଇଲେ ଉଦାସୀ ।**

ପୁଣି ତାଙ୍କର ଅପରୂପ ଦେହଲାବଣ୍ୟ ପାଇଁ ତାଙ୍କୁ 'ଗୌର' ନାମରେ ଆଖ୍ୟାୟିତ କରାହୁଏ । ତେଣୁ ପ୍ରହେଳିକା କବି ଏହାକୁ ନିମ୍ନମତେ ପ୍ରକାଶ କରିଛନ୍ତି :

✡ **ଦୁଇଟି ବର୍ଣ୍ଣରେ ନାମ ତାହାର, ଅବତାର ବୁଝାଏ**
**ଶେଷରେ ଈକାର ଦେଲେ, ଦେବୀ ହୋଇଯାଏ ।**

ଶ୍ରୀ ଚୈତନ୍ୟଙ୍କୁ 'ଗୋରାଚାନ୍ଦ' ନାମରେ ଭୂଷିତ କରାଯାଇଥିବାରୁ ପଲ୍ଲୀକବି ପ୍ରହେଳିକା ମାଧ୍ୟମରେ ତାଙ୍କୁ ପ୍ରଦର୍ଶିତ କରିଛନ୍ତି :-

✡ **ଚାରି ବର୍ଣ୍ଣରେ ନାମଟି ତାହାର / ଗୋଟେ ଅବତାରକୁ ବୁଝାଏ**
**ପ୍ରଥମାଂଶରେ ବି ସେଇ ଅବତାର/ଦ୍ୱିତୀୟ ଅଂଶରେ ଗ୍ରହ ହୁଏ ।**

**ବୁଦ୍ଧଦେବ :-** ସେ ବୌଦ୍ଧଧର୍ମର ପ୍ରବର୍ତ୍ତକ ଥିଲେ । ତାଙ୍କର ପିତାଙ୍କର ନାମ ଶୁଦ୍ଧୋଦନ । କଥିତ ଅଛି ଯେ ଜରା, ବ୍ୟାଧି, ମୃତ୍ୟୁ ଓ ସନ୍ୟାସର ଦୃଶ୍ୟ ଦେଖି ସେ ବୈରାଗ୍ୟ ପ୍ରତି ଆସକ୍ତ ହୁଅନ୍ତି । ଅଣତିରିଶ ବର୍ଷ ବୟସରେ ପତ୍ନୀ ଗୋପା ଓ ପୁତ୍ର ରାହୁଳକୁ ଛାଡ଼ି ଗୃହତ୍ୟାଗ କରନ୍ତି । ଉରୁବିଲ୍ୱ ନାମକ ସ୍ଥାନରେ ଏକ ଅଶ୍ୱତ୍ଥଗଛ ତଳେ ସେ ବୋଧିସତ୍ତ୍ୱ ଲାଭ କରିଥିଲେ । ବୁଦ୍ଧଦେବ ଲୁମ୍ବିନୀ ନାମକ ଉପବନରେ ଜନ୍ମ ହୋଇଥିଲେ ଏବଂ ସେ ଯେଉଁ ସିଦ୍ଧିଲାଭ କରିଥିଲେ, ତାହା ପ୍ରହେଳିକା ମଧ୍ୟରେ ଚମତ୍କାର ଭାବରେ ବର୍ଣ୍ଣିତ ହୋଇଛି :-

✡ **ଯାଉଁ ଯାଉଁ ଉପବନେ ଜନ୍ମିଲା ସନ୍ତାନ,**
**ସିଦ୍ଧିଲାଭ କରିଥିଲା କୁହ ତାର ନାମ ।**

ପୁଣି ବୁଦ୍ଧଦେବ ରାଜଐଶ୍ୱର୍ଯ୍ୟ ତ୍ୟାଗ କରି ଅହିଂସା ଧର୍ମର ପ୍ରବକ୍ତା ହୋଇଥିଲେ । ତାହା ମଧ୍ୟ ପ୍ରହେଳିକା ମାଧ୍ୟମରେ କୁହା ଯାଇଛି ।

✡ **ଅହିଂସା ପରମଧର୍ମ କିଏ ବା ପ୍ରଚାର କରେ,**
**ରାଜ ଐଶ୍ୱର୍ଯ୍ୟ ଯିଏ ହେଳାରେ ତ୍ୟାଗ କରେ ।**

**ଯୀଶୁଖ୍ରୀଷ୍ଟ :-** ସେ ହେଲେ ଖ୍ରୀଷ୍ଟ ଧର୍ମର ପ୍ରବର୍ତ୍ତକ । ଜାତିରେ ଇହୁଦୀ ଥିଲେ । ଯୀଶୁଙ୍କର ମାତାଙ୍କ ନାମ ମେରୀ ଏବଂ ପିତା ହେଲେ ଯୋସେଫ । ଯୀଶୁଙ୍କ ମତରେ ଈଶ୍ୱରଙ୍କୁ ପାଇବାକୁ ହେଲେ ମନୁଷ୍ୟର ସେବା କରିବାକୁ ହେବ । କିନ୍ତୁ ଯୀଶୁଙ୍କର ଏହି ବାଣୀ ସମସ୍ତେ ଭଲଭାବରେ ଗ୍ରହଣ କରି ପାରିଲେ ନାହିଁ । ଜେରୁଜେଲମର ଏକ ପ୍ରାନ୍ତରେ କାଲ୍‌ଭାରି ନାମକ ସ୍ଥାନରେ ତାଙ୍କୁ କ୍ରୁଶବିଦ୍ଧ କରାଗଲା । ଯେଉଁମାନେ ତାଙ୍କ ହାତ ପାଦରେ କଣ୍ଟା ମାରି କ୍ରୁଶବିଦ୍ଧ କରିଥିଲେ, ସେମାନଙ୍କୁ କ୍ଷମା କରିଦେବାକୁ ଯୀଶୁ ଈଶ୍ୱରଙ୍କୁ ଜଣାଇଥିଲେ । ଯୀଶୁଙ୍କର ଏହି କ୍ଷମାଧର୍ମ, ଖ୍ରୀଷ୍ଟଧର୍ମ ପ୍ରଚାର ସମ୍ପର୍କରେ ପ୍ରହେଳିକା ରଚୟିତାଙ୍କୁ ଅଜଣା ନୁହେଁ । ନିମ୍ନ ପ୍ରଦତ୍ତ ପ୍ରହେଳିକାଟି ଏହାର ପ୍ରମାଣ :-

✡ **ହାତରେ କଣ୍ଟା ପାଦରେ କଣ୍ଟା ଯେବେ ବିଦ୍ଧ କଲେ**
**ଈଶ୍ୱରଙ୍କୁ ବୋଲେ, ଏମାନଙ୍କୁ ରକ୍ଷା କର ଭଲେ ।**
**କେଉଁ ମହା-ଜନ ଏହି କଥା କହିଥିଲେ,**
**କ୍ରୁଶବିଦ୍ଧ ହୋଇ ଯିଏ ପ୍ରାଣତ୍ୟାଗ କଲେ ।**

**ହଜରତ ମହମ୍ମଦ :-** ହଜରତ ମହମ୍ମଦ ଥିଲେ ଇସଲାମ ଧର୍ମର ପ୍ରବର୍ତ୍ତକ । ତାଙ୍କ ମାତାଙ୍କର ନାମ ଆମିନା ଏବଂ ପତ୍ନୀଙ୍କର ନାମ ଖାଦିଜାବିବି । ଯୀଶୁଙ୍କ ଜନ୍ମର ପ୍ରାୟ ଛଶହ ବର୍ଷପରେ ଆରବ ଦେଶର ମକ୍କା ସହରରେ ହଜରତ ମହମ୍ମଦ ଜନ୍ମ ଗ୍ରହଣ କରିଥିଲେ । ସେ କହିଲେ, ଈଶ୍ୱର ଜଣେ, ତାଙ୍କର ନାମ 'ଆଲ୍ଲା' । ସେ ନିଜକୁ 'ଆଲ୍ଲା'ଙ୍କର ଦୂତ ବା ରସୁଲ ବା ପୟଗମ୍ବର ବୋଲି ପ୍ରଚାର କରିଥିଲେ । ଯେଉଁମାନେ ମୁସଲମାନ, ସେମାନେ ହଜରତ ମହମ୍ମଦଙ୍କର ପ୍ରବର୍ତ୍ତିତ ଇସଲାମ ଧର୍ମକୁ ମାନି ଚଳନ୍ତି । ଇସଲାମ ଧର୍ମର ଏହି ପ୍ରବର୍ତ୍ତକ ହଜରତ ମହମ୍ମଦଙ୍କ ସମ୍ପର୍କରେ ପ୍ରହେଳିକା ରଚିତ ହୋଇଛି ।

✡ **ମୁସଲମାନ ନୀତି କେବଳ ପ୍ରଚାର କରେ,**
**ଆଲ୍ଲା ଆକବର ଡାକନ୍ତି କେତେ ନରେ ।**

ଧର୍ମଗୁରୁ ବା ପ୍ରବର୍ତ୍ତକ ଛଡ଼ା ମଧ୍ୟ କେତେଜଣ ବିଖ୍ୟାତ ରାଜା ମହାରାଜା ବା ସମ୍ରାଟଙ୍କ ସମ୍ପର୍କରେ ପ୍ରହେଳିକା ଶୁଣିବାକୁ ମିଳେ । ବିଖ୍ୟାତ ରାଜାମାନଙ୍କ ନାମ ସହିତ ସେମାନଙ୍କର କୀର୍ତ୍ତିକଳାପ ବର୍ଣ୍ଣିତ ହୋଇଛି ପ୍ରହେଳିକା ମାଧ୍ୟମରେ ।

**ଆକବର :-** ସେ ଥିଲେ ଭାରତର ତୃତୀୟ ମୋଗଲ ସମ୍ରାଟ । ଅତ୍ୟନ୍ତ ପୁଣ୍ୟବାନ ଓ ଇତିହାସ ପ୍ରସିଦ୍ଧ ରାଜା । ତାଙ୍କ ରାଜତ୍ୱ କାଳରେ ପ୍ରଜାମାନେ ସୁଖ ଶାନ୍ତିରେ ବାସ କରୁଥିଲେ । ମିତାଚାରୀ, ସଂଯମୀ, କିନ୍ତୁ କଠୋର ପରିଶ୍ରମୀ । ସେ ପୁଣି ଯୋଦ୍ଧା, ବିଚକ୍ଷଣ ସାଧକ । ଦୂରଦର୍ଶୀ ରାଷ୍ଟ୍ରନାୟକ ଆକବର ଥିଲେ ଉଦାରମତି ଓ ଗୁଣଗ୍ରାହୀ । ତାଙ୍କର

ଜ୍ଞାନପିପାସା ଥିଲା ଅପରିସୀମ । ତାଙ୍କର ସଭାରେ ବହୁ ଗୁଣୀ ଓ ଜ୍ଞାନୀ ଲୋକଙ୍କ ସମାବେଶ ହୋଇଥିଲା । ଆକବରଙ୍କ ପ୍ରଜାବାତ୍ସଲ୍ୟ ଏବଂ ଉଦାର ଗୁଣାବଳି ପ୍ରହେଳିକା ମାଧ୍ୟମରେ ଅତି କୌତୁକମୟ ଢଙ୍ଗରେ ଫୁଟି ଉଠିଛି :-

✡ **ଚାରିବର୍ଣ୍ଣରେ ନାଆଁଟି ତାର, ହେଲା ଇତିହାସ ପ୍ରସିଦ୍ଧ ରାଜା,**
**ଧନ୍ୟ ସେ, ପୁଣ୍ୟ ତାର ରାଜ୍ୟ, ସୁଖେ ଥାନ୍ତି ତାର ପ୍ରଜା ।**

✡ **ପ୍ରଥମାଂଶେ ଏକ ରସାଳ ଗଛ, ମଣିଷ ସେଇ ଗଛର ରସ ପିଏ,**
**ଦ୍ୱିତୀୟାଂଶେ ବରବେଶରେ ସଜ୍ଜିତ ବିଶେଷ ବ୍ୟକ୍ତିକୁ ବୁଝାଏ ।**
(ଆକ ଶବ୍ଦର ଅର୍ଥ ଇକ୍ଷୁ ଅର୍ଥାତ୍ ଆଖୁଗଛ)

**ଆଉରଙ୍ଗଜେବ :-** ମୋଗଲ ସମ୍ରାଟ ଶାହାଜାହାନଙ୍କ ତୃତୀୟ ପୁତ୍ର ହେଲେ ଆଉରଙ୍ଗଜେବ । ସେ ଅତ୍ୟନ୍ତ ସଂକୀର୍ଣ୍ଣମନା ଥିଲେ । ପିତାଙ୍କୁ ବନ୍ଦୀ କରି ଭାଇମାନଙ୍କୁ ହତ୍ୟା କରି ସେ ସମ୍ରାଟ ହୋଇଥିଲେ । ଅନ୍ୟଧର୍ମ ପ୍ରତି ତାଙ୍କର ପ୍ରବଳ ବିଦ୍ୱେଷ ଥିଲା । ଅତ୍ୟଧିକ ପ୍ରଖର ଆତ୍ମବିଶ୍ୱାସ ଥିଲା । ଦୋଷ ସହିତ ତାଙ୍କର ଗୁଣ ମଧ୍ୟ ଥିଲା । ସେ ଜଣେ ସମରକୁଶଳୀ କୂଟନୀତିଜ୍ଞ ଓ ପଣ୍ଡିତ ଥିଲେ । ଆରବୀ ଓ ଫାରସୀ ଭାଷାରେ ତାଙ୍କର ଯଥେଷ୍ଟ ବ୍ୟୁତ୍ପତ୍ତି ଥିଲା । ସେଇ ମୋଗଲ ସମ୍ରାଟ ଆଉରଙ୍ଗଜେବଙ୍କ କଥା କୌତୁକ ଛଳରେ ପ୍ରହେଳିକା ମାଧ୍ୟମରେ ବ୍ୟକ୍ତ କରା ହୋଇଛି :

✡ **ତିନି ଶବ୍ଦ ଯୁକ୍ତ ହୋଇ ରଚିତ ଏକ ନାମ,**
**ସମସ୍ତିଙ୍କ ପରିଚିତ ଅତୀବ ସୁଠାମ ।**
**ଶିରେ ତାକୁ ଡାକଦିଏ ଉଦରରେ ରଙ୍ଗ,**
**ଚରଣ ପକେଟ ତାର ଦେଖିବା ବରଂ ।**
**ଇତିହାସେ ଏହି ନାମ ପାଇବ ନିଶ୍ଚୟ,**
**ମୋଗଲ ସହାୟ ସେ ନାହିଁ ଯେ ସଂଶୟ**
**ଏଥର ଆନନ୍ଦରେ କୁହ ଶିଶୁଗଣ,**
**ପ୍ରହେଳିକା ପ୍ରଶ୍ନ ଅର୍ଥରେ ମିଳେ କେଉଁ ଜଣ ।**

**ଶିବାଜୀ :-** ସେ ମରହଟ୍ଟାମାନଙ୍କର ରାଜା ଥିଲେ । ପୁଣି ସେ ମୋଗଲ ସମ୍ରାଟଙ୍କୁ ପରାଜିତ କରିଥିଲେ । କୌଶଳୀ ବୀର ହିସାବରେ ସେ ଖ୍ୟାତ । ତାଙ୍କୁ 'ଛତ୍ରପତି' ଉପାଧିରେ ଅଭିଷିକ୍ତ କରାଯାଇଥିଲା । ଶିବାଜୀଙ୍କୁ ଉପଲକ୍ଷ୍ୟ କରି ବଡ଼ ମଜାଦାର ପ୍ରହେଳିକାଟିଏ ଗ୍ରାମ୍ୟକବି ରଚନା କରିଛନ୍ତି । ଯଦିଓ ପ୍ରହେଳିକା ମଧ୍ୟରେ ଶିବାଜୀଙ୍କର ବୀରତ୍ୱ ବା ଗୁଣପଣିଆର ପ୍ରସଙ୍ଗ ନାହିଁ, ତଥାପି ପ୍ରହେଳିକାଟିର ଉତ୍ତର ଯେ ଇତିହାସ ପ୍ରସିଦ୍ଧ ମରହଟ୍ଟା ବୀର ଛତ୍ରପତି ଶିବାଜୀ, ସେ ବିଷୟରେ କୌଣସି ସନ୍ଦେହ ନାହିଁ ।

✡ **ଦୁଇବର୍ଣ୍ଣ ନାମକ ଜୀବ ଧରାତଳେ ରହେ**
**ନରର ବାହନରୂପେ ଖ୍ୟାତ ବିଶ୍ୱମୟେ ।**
**ଶିଶିରର ଶିର ଛେଦି ଯାହା ତୁମେ ପାଅ**
**ସମତଳ ଶିରେ ତାକୁ କୌଶଳେ ବସାଅ ।**
**ଏହିମତେ ଯାହାକୁ ତୁମେ ହେରିବ ହେଥାଏ**
**ଇତିହାସେ ନାମ ତାର ବଡ଼ ଶୋଭା ପାଏ ।**

**ଅଶୋକ :-** ସେ ମଗଧର ମୌର୍ଯ୍ୟ ରାଜବଂଶର ତୃତୀୟ ସମ୍ରାଟ ଥିଲେ । ମୌର୍ଯ୍ୟବଂଶର ପ୍ରତିଷ୍ଠାତା ଚନ୍ଦ୍ରଗୁପ୍ତ ହେଉଛନ୍ତି ତାଙ୍କର ପିତାମହ ଏବଂ ତାଙ୍କର ପିତା ହେଲେ ଦ୍ୱିତୀୟ ବିନ୍ଦୁସାର । ତାଙ୍କ ରାଜତ୍ୱ କାଳରେ ତାଙ୍କର ନିର୍ଦ୍ଦେଶରେ ପର୍ବତ ଗାତ୍ରରେ, ଶିଳାସ୍ତମ୍ଭରେ ଏବଂ ଗିରିଗୁହାମାନଙ୍କରେ ଉତ୍କୀର୍ଣ୍ଣ ପ୍ରାୟ ଚାଳିଶଟି ଧର୍ମଲିପି ବା ଅନୁଶାସନ ଭାରତର ନାନା ସ୍ଥାନରେ ମିଳେ । ସେ ତାଙ୍କ ପୁଅ ଓ କନ୍ୟାଦ୍ୱାରା ବୌଦ୍ଧ ଧର୍ମ ପ୍ରଚାର କରାଇଥିଲେ । ସେ ମଗଧର ସର୍ବଶ୍ରେଷ୍ଠ ରାଜା ଥିଲେ । ସବୁ ଜୀବ ପ୍ରତି ତାଙ୍କର ଦୟା ଥିଲା । ତାଙ୍କ ନାମରେ ଯେଉଁ ସ୍ତମ୍ଭ ନିର୍ମିତ ହୋଇଥିଲା, ତାହା ବର୍ତ୍ତମାନ ଭାରତରାଷ୍ଟ୍ରର ପ୍ରତୀକ ସ୍ୱରୂପ । ଇତିହାସ ବିଖ୍ୟାତ ସମ୍ରାଟ ଅଶୋକଙ୍କ ସମ୍ପର୍କରେ ଅତି ସୁନ୍ଦର ପ୍ରହେଳିକା ରଚିତ ହୋଇଛି । ଯେପରି :-

✡ **କେଉଁ ରାଜା ନାମରେ ସ୍ତମ୍ଭ ହୋଇଥିଲା**
**ଭାରତ ରାଷ୍ଟ୍ରର ପ୍ରତୀକ ତାହା ହୋଇଗଲା ।**

**ପୁଲକେଶୀ :-**ଚାଲୁକ୍ୟ ସାମ୍ରାଜ୍ୟର ଅଧିପତି ଥିଲେ ପୁଲକେଶୀ । ପ୍ରାଚୀନ ଭାରତର ଶ୍ରେଷ୍ଠ ନରପତି ହିସାବରେ ଖ୍ୟାତ । ଚୀନ ପରିବ୍ରାଜକ 'ହୁଏନସାଂ' ପୁଲକେଶୀଙ୍କ କ୍ଷମତା ଓ ପ୍ରତିପତ୍ତି ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ଇତିହାସ-ପ୍ରସିଦ୍ଧ ଚାଲୁକ୍ୟରାଜ ପୁଲକେଶୀଙ୍କ ସମ୍ପର୍କରେ ପ୍ରହେଳିକା ଶୁଣିବାକୁ ମିଳେ ।

✡ **ଚାରୋଟି ଅକ୍ଷରରେ ତାଙ୍କର ନାମ / ଇତିହାସ ପ୍ରସିଦ୍ଧ ଏ ରାଜନ ।**
**ପ୍ରଥମ ଅଂଶ ଖାଲ ଉପରେ ଥାଏ/ଦ୍ୱିତୀୟ ଅଂଶ କେଶଧାରୀ ନାରୀ ହୁଏ ।**

**କଳାପାହାଡ଼ :-** ସେ ବ୍ରାହ୍ମଣର ସନ୍ତାନ ହୋଇ ମଧ ବଙ୍ଗ ନବାବଙ୍କ କନ୍ୟାକୁ ପ୍ରେମ ବିବାହ କରି ଇସଲାମ ଧର୍ମ ଗ୍ରହଣ କରିଥିଲେ । ତାପରେ ସେ ହିନ୍ଦୁ ଧର୍ମ ବିଦ୍ୱେଷୀ ହୋଇ ଅନେକ ମନ୍ଦିର ଓ ଦେବ ବିଗ୍ରହ ଧ୍ୱଂସ କରିଥିଲେ । ହିନ୍ଦୁ ଧର୍ମର ପରମ ଆରାଧ୍ୟ ଦେବତା ଜଗନ୍ନାଥ ବିଗ୍ରହକୁ ଗଙ୍ଗାକୂଳରେ ପୋଡ଼ି ଦେଇଥିଲେ । ବଙ୍ଗ ନବାବଙ୍କ ସେନାଧ୍ୟକ୍ଷ ହୋଇ ସେ ଓଡ଼ିଶା ଅଧିକାର କରି ମୁକୁନ୍ଦଦେବଙ୍କୁ ଗାଦିଚ୍ୟୁତ କରିଥିଲେ ।

ଉତ୍କଳ ଇତିହାସରେ ସେ ଧ୍ୱଂସର ଏକ ପ୍ରତୀକ । କଳାପାହାଡ଼ର ଏହି ଘୃଣ୍ୟ ଗାଥା ପ୍ରହେଳିକା ମାଧମରେ ଫୁଟି ଉଠିଛି ।

✡ **ପାଞ୍ଚ ବର୍ଣ୍ଣରେ ନାମ ତାହାର / ଘୃଣ୍ୟ ବୀର ଯେ ଅବର୍ଣ୍ଣନୀୟ ।**
**ପ୍ରଥମ ଅଂଶ ଶ୍ରୁତି କଟୁ / ଦ୍ୱିତୀୟ ଅଂଶ ପ୍ରସ୍ତରମୟ ।**

ପ୍ରହେଳିକା ରଚୟିତାଗଣ ମହାକବି, କବି ଓ ପଣ୍ଡିତମାନଙ୍କ ସମ୍ପର୍କରେ ପ୍ରହେଳିକା ରଚନା କରିଛନ୍ତି । ଯେଉଁ ସବୁ କବି ବା ପଣ୍ଡିତଙ୍କ ସମ୍ପର୍କରେ ସେମାନଙ୍କର ଧାରଣା ବା ଜ୍ଞାନ ରହିଛି, କେବଳ ମାତ୍ର ସେମାନଙ୍କୁ ଉପଲକ୍ଷ୍ୟ କରି ପ୍ରହେଳିକା ରଚନା କରିଛନ୍ତି । ବେଳେ ବେଳେ ଏମାନଙ୍କର ଗୁଣାବଳି ଏବଂ କେତେବେଳେ କୌତୁହଳ ଛଳରେ ଏମାନଙ୍କର ପରିଚୟ ପ୍ରଦାନ କରିଛନ୍ତି ।

**ବାଲ୍ମୀକି :-** ଆଦିକବି ବାଲ୍ମୀକି ରାମାୟଣର ରଚୟିତା । ଯୌବନରେ ସେ ରତ୍ନାକର ନାମକ ଦସ୍ୟୁ ଥିଲେ । ନାରଦଙ୍କ ଉପଦେଶ ଅନୁସାରେ ସେ ଷାଠିଏ ହଜାର ଥର ରାମ ନାମ ଜପ କରି ସିଦ୍ଧିଲାଭ କରିଥିଲେ । ଅପରିମିତ ପାପ ପାଇଁ ପ୍ରଥମେ ରାମ ନାମ ଉଚ୍ଚାରଣ କରି ନ ପାରି ମରାମରା କହୁଥିଲେ । ତପସ୍ୟା କରୁ କରୁ ତାଙ୍କର ଶରୀର ବଲ୍ମୀକ (=ଉଇ ହୁଙ୍କା) ଦ୍ୱାରା ଆବୃତ ହୋଇ ପଡ଼ିଥିଲା ବୋଲି ତାଙ୍କର ନାମ ବାଲ୍ମୀକି ହୋଇଥିଲା । ଏକଦା ଶିଷ୍ୟ ଭରଦ୍ୱାଜଙ୍କ ସାଙ୍ଗରେ ନଈ କୂଳରେ କ୍ରୌଞ୍ଚ (=ବଗ) ମିଥୁନ ମଧରୁ ବ୍ୟାଧର ଶରବିଦ୍ଧ କ୍ରୌଞ୍ଚ ଓ ବିଳାପରତା କ୍ରୌଞ୍ଚୀକୁ ଦେଖି ତାଙ୍କର କଣ୍ଠରୁ ପ୍ରଥମ ଶ୍ଲୋକ ନିର୍ଗତ ହୋଇଥିଲା । ବ୍ରହ୍ମାଙ୍କର ଆଦେଶମୁତାବକ ସେ ଏହି ଶ୍ଲୋକର ଛନ୍ଦରେ ରାମାୟଣ ରଚନା କରିଥିଲେ । ପ୍ରହେଳିକା ରଚୟିତା ଆଦିକବି ବାଲ୍ମୀକିଙ୍କ ରାମାୟଣ ରଚନାର କଥା ଓ ଦସ୍ୟୁ ରତ୍ନାକରରୁ ବାଲ୍ମୀକି ହେବାର ଘଟଣା ସୁନ୍ଦର ଭାବରେ ପ୍ରହେଳିକା ମାଧମରେ କହିଛନ୍ତି :

✡ **ତୁଣ୍ଡରେ କହିଲେ ରାମ ମରା ନିସ୍ୱନିତ,**
**ଶତ ଶତ ପ୍ରାଣୀ ବଧ କଲା ନିଜ ହାତ**
**କଳିଧୋକଡ଼ି ଗୁରୁ କରି ହେଲା ପରମ ତପସ୍ୱୀ**
**ତ୍ରିଭୁବନେ ରହିଲା ଖ୍ୟାତି ହୋଇଲା ଯଶସ୍ୱୀ ।**
**ପୂର୍ବେ ତାର ମାତା ପିତା ଯେଉଁ ନାମ ଦେଲା,**
**ସେ ନାମ ହୋଇଲା ଲୁପ୍ତ, କି ନାମ ରହିଲା ।**

✡ **କେଉଁ ସମୁଦ୍ର ନାମରେ ଦସ୍ୟୁ ଏକ ଥିଲା,**
**ପ୍ରଥମ ଜୀବନରେ ଖାଲି ପାପ ଆଚରିଲା ।**
**ବ୍ରହ୍ମା ଆଶିଷରୁ ଦସ୍ୟୁ କଲା ଯେ ସାଧନ,**
**ନାମ ଜପି ଖଣ୍ଡିଲା ସେ ପାପ ଅଗଣନ ।**

**ମୁନି ହୋଇ ନିଜ ଧର୍ମ କରିଲା ପ୍ରକାଶ,**
**ସ୍ୱ ହସ୍ତେ ଲେଖି ଗଲା ଆଦି ଇତିହାସ ।**

**କାଳିଦାସ :-** ସଂସ୍କୃତ ସାହିତ୍ୟରେ ବାଲ୍ମୀକି ଓ ବେଦବ୍ୟାସଙ୍କ ପରେ ମହାକବି ହିସାବରେ କାଳିଦାସଙ୍କ ସ୍ଥାନ । ତାଙ୍କ ଜୀବନୀ ସମ୍ପର୍କରେ କୌଣସି ନିର୍ଭରଯୋଗ୍ୟ ତଥ୍ୟ ଜଣାଯାଏ ନାହିଁ । କିମ୍ବଦନ୍ତୀ ଅଛି, କାଳିଦାସ ପ୍ରଥମ ଜୀବନରେ ଅତ୍ୟନ୍ତ ବୋକା ଥିଲେ । ଏକ ରାଜକନ୍ୟାଙ୍କ ସହିତ ତାଙ୍କର ବିବାହ ହୋଇଥିଲା । ପରେ ସରସ୍ୱତୀଙ୍କର ବର ପାଇ ସେ ମହାକବି ଓ ନାଟ୍ୟକାର ରୂପରେ ପ୍ରସିଦ୍ଧିଲାଭ କରିଛନ୍ତି । ରାଜା ବିକ୍ରମାଦିତ୍ୟଙ୍କ ସଭାର ନବରତ୍ନ ପଣ୍ଡିତଙ୍କ ମଧ୍ୟରୁ ସେ ଅନ୍ୟତମ । କାଳିଦାସଙ୍କର ନିର୍ବୋଧତା ସମ୍ପର୍କରେ ପ୍ରଚଳିତ କିମ୍ବଦନ୍ତୀ ଏବଂ ସେ ଜଣେ ମହାକବି ଓ ନାଟ୍ୟକାର ଥିଲେ, ତାର ପରିଚୟ ଦେଇଛନ୍ତି ଗ୍ରାମ୍ୟ କବି ପ୍ରହେଳିକା ମାଧ୍ୟମରେ-

✡ **ଯେଉଁ ଡାଳ କାଟେ, ଚଢ଼େ ସେଇ ଡ଼ାଳେ,**
**ମୂଳ କଟା ହେଲେ ପଡ଼ି ଯିବ ତଳେ ।**

✡ **ଚାରି ଅକ୍ଷରରେ ନାମ ତାହାର ପ୍ରାଚୀନ ଯୁଗ ମହାକବି,**
**କାବ୍ୟ ଓ ନାଟକ ଲେଖି ଯିଏ ହୋଇଲେ ଯଶସ୍ୱୀ ।**

**ମାଘ :-** ମାଘ ସଂସ୍କୃତ ସାହିତ୍ୟର ଜଣେ ପ୍ରସିଦ୍ଧ କବି । ତାଙ୍କର ପିତା ହେଲେ ଦତ୍ତକ ସର୍ବାଶ୍ରୟ ଏବଂ ପିତାମହ ବର୍ମଳ ରାଜାଙ୍କର ମନ୍ତ୍ରୀ । କାଳିଦାସୋତ୍ତର ଯୁଗର ମହାକବିଗଣଙ୍କ ମଧ୍ୟରେ ସେ ଅନ୍ୟତମ ଏବଂ ଖ୍ରୀଷ୍ଟୀୟ ଅଷ୍ଟମ-ନବମ ଶତାବ୍ଦୀର କବି । ତାଙ୍କର କାବ୍ୟରେ ଉପମା, ଅର୍ଥଗୌରବ ଓ ପଦଲାଳିତ୍ୟ ପ୍ରଭୃତି ଗୁଣର ସମାବେଶ ଘଟିଥିଲା । ସଂସ୍କୃତ ସାହିତ୍ୟର ଏହି ବିଖ୍ୟାତ କବି ମାଘଙ୍କ ସମ୍ପର୍କରେ ପ୍ରହେଳିକା ଶୁଣିବାକୁ ମିଳେ । ଯେପରି :-

✡ **ଏପରି ଗୋଟିଏ ମାସର ନାମ କୁହ ଭାବି ଭାବି,**
**ଯେଉଁ ନାଆଁରେ ପୁରାଣଯୁଗର ହେବ ଏକ ମହାକବି ।**

**ସାରଳାଦାସ :-** ସେ ଅବିଭକ୍ତ କଟକ ଜିଲ୍ଲାର ତେନ୍ତୁଳିପଦା ନାମକ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ପରେ ସାରଳା ଠାକୁରାଣୀଙ୍କ ଠାରେ ଅଧା ପଢ଼ି ଠାକୁରାଣୀଙ୍କ ଠାରୁ ବର ପାଇ, ସାରଳା ଠାକୁରାଣୀଙ୍କ ମନ୍ଦିରରେ ପଢ଼ାଯାଉଥିବା ସଂସ୍କୃତ ମହାଭାରତ ଓ ପୁରାଣ ଶୁଣି ଓଡ଼ିଆରେ ମହାଭାରତ ରଚନା କରିଥିଲେ । ସେ ଓଡ଼ିଶାରେ ଆଦିକବି ନାମରେ ପରିଚିତ । ସେ ଶୁଦ୍ରମୁନି-ଉପାଧିରେ ଭୂଷିତ ହୋଇଥିଲେ । ସାରଳାଙ୍କର ବର ପାଇ କବି ହୋଇଥିବାରୁ ସେ ନିଜେ ଆପଣାକୁ 'ସାରଳା ଦାସ' ରୂପେ ପରିଚିତ କରାଇଥିଲେ ।

✡ **ଓଡ଼ିଆରେ ମହାଭାରତ କିଏ ଲେଖିଥିଲା**
**ସଂସ୍କୃତରୁ ସେଇ ଜନ ଉଦ୍ଧାର କରିଲା ।**
**ଦେବୀଙ୍କର ଦାସ ହୋଇ ଶୁଦ୍ର ମୁନି ହେଲା ।**

**ଜଗନ୍ନାଥ ଦାସ :-**ସେ କପିଳେଶ୍ୱରପୁର ଗ୍ରାମରେ ଖ୍ରୀ: ଅ: ୧୪୯୦ ଭାଦ୍ର ଶୁକ୍ଳ ରାଧାଷ୍ଟମୀ ତିଥିରେ ଜନ୍ମଗ୍ରହଣ କରିଥିଲେ । ସଂସ୍କୃତରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଶ୍ରୀମନ୍ଦିର ବେଢ଼ା ମଧ୍ୟସ୍ଥ କଳ୍ପବଟ ମୂଳରେ ସେ ଓଡ଼ିଆ ଭାଗବତ ରଚନା କରୁଥିଲା ବେଳେ ଶ୍ରୀ ଚୈତନ୍ୟ ତାଙ୍କର ରଚନା ଶୁଣି ମୁଗ୍ଧ ହୋଇ ତାଙ୍କ ପ୍ରତି ଆକୃଷ୍ଟ ହେଲେ ଏବଂ ତାଙ୍କୁ 'ଅତିବଡ଼ୀ' ଉପାଧିରେ ଭୂଷିତ କରିଥିଲେ । ଓଡ଼ିଆ ଭାଗବତ ତାଙ୍କର ଅମର କୃତି । ଭାଗବତର ସରଳ ଛନ୍ଦ ମାଧୁରୀ ଏହାର ପ୍ରସାରର ମୂଳ କାରଣ । ଓଡ଼ିଆ ଭାଗବତ ବିଭିନ୍ନ ଭାଷାରେ ଅନୁବାଦିତ ହୋଇଛି । ଓଡ଼ିଶାର ପଞ୍ଚସଖାଙ୍କ ମଧ୍ୟରୁ ସେ ଅନ୍ୟତମ ।

✡ **ଓଡ଼ିଆରେ ଭାଗବତ କିଏ କଲେ ରଚନା,**
**ଘରେ ଘରେ ବିଛୁରିଲା ଭାଗବତ ଚେତନା ।**

**ବିଦ୍ୟାସାଗର :-** ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରି ଅସାଧାରଣ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ମନୁଷ୍ୟର ଇହଜୀବନ ଓ ଭୌମ ଚେତନା ତାଙ୍କର ଧ୍ୟାନ, କର୍ମ ଓ ସାଧନାର ବସ୍ତୁ । ତାଙ୍କୁ ଉନବିଂଶ ଶତାବ୍ଦୀର ଶ୍ରେଷ୍ଠ ମାନବବାଦୀ କୁହାଯାଏ । ତାଙ୍କର ମାତୃଭକ୍ତି ଅସାଧାରଣ ଥିଲା । ସେ ବହୁ ଅନୁବାଦ ଓ ମୌଳିକ ଗ୍ରନ୍ଥ ରଚନା କରିଥିଲେ । ବାଲ୍ୟ ବିଧବାର ଦୁଃଖ ଯନ୍ତ୍ରଣା ସହ୍ୟ କରି ନ ପାରି ସେ ବାଲ୍ୟ ବିଧବା ବିବାହ ପ୍ରଚଳିତ କରିଥିଲେ । କେବଳ ସେତିକି ନୁହେଁ, ତାଙ୍କୁ ଦୟାର-ସାଗର ନାମରେ ଆଖ୍ୟାୟିତ କରାଯାଇଥିଲା । ଜଣେ ଅସାଧାରଣ ପଣ୍ଡିତ ହେଲେ ମଧ ବିଦ୍ୟାସାଗରଙ୍କୁ ଦୟା ଧର୍ମ ପ୍ରସଂଗରେ ସାଗର ସହିତ ତୁଳନା କରାଯାଇଛି । ତେଣୁ ପଲ୍ଲୀକବି ଦୟାର ସାଗର ବିଦ୍ୟାସାଗରଙ୍କ ସମ୍ପର୍କରେ ପ୍ରହେଳିକା ମାଧ୍ୟମରେ କହିଛନ୍ତି :

✡ **କିଏ ସେହି ଅଧମ ବାଳକ ଲୋକଙ୍କ ଭିତରେ**
**ଜଳ ଫଳ କିଛି ନାହିଁ କେଉଁ ସାଗରରେ ।**

✡ **ବାଲ୍ୟବିଧବାଙ୍କୁ ବାହା କରାଇଲେ ଯିଏ,**
**ଦୟାର ସାଗର ରୂପେ ପରିଚିତ ସିଏ ।**
**ସେଇ ମହାନ ବ୍ୟକ୍ତିଙ୍କର ନାମ କ'ଣ କିରେ,**
**ବୁଝି ସୁଝି ଉତ୍ତର ଦିଅ ହେ ସତ୍ୱରେ ।**

ପୁଣି ଗ୍ରାମ୍ୟକବି ପ୍ରଖ୍ୟାତ ରାଜନୀତିବିଦ୍ ଓ କୂଟନୀତିଜ୍ଞଗଣଙ୍କୁ ନେଇ ପ୍ରହେଳିକା ରଚନା କରିଛନ୍ତି । ତେବେ ସେଥିରେ ନାମୋଲ୍ଲେଖ ମାତ୍ରହିଁ ରକ୍ଷିତ ହୋଇଛି ।

**ଚାଣକ୍ୟ :-** କୂଟନୀତିଜ୍ଞ ବା ରାଜନୀତିବିଦ୍ ହିସାବରେ ଚାଣକ୍ୟ ପ୍ରାଚୀନ ଭାରତରେ ପ୍ରସିଦ୍ଧ । ତାଙ୍କର ପ୍ରଣୀତ **'ଅର୍ଥଶାସ୍ତ୍ର'**ର କଥା କାହାକୁ ଅଜଣା ନୁହେଁ । ତେବେ ପ୍ରହେଳିକା ରଚୟିତା ଚାଣକ୍ୟାଙ୍କ କୂଟନୀତି ସମ୍ପର୍କରେ ନ କହି କେବଳ ନାମକରଣ ମାଧ୍ୟମରେ ଚାଣକ୍ୟ ବିଷୟକ ନିମ୍ନୋକ୍ତ ପ୍ରହେଳିକା ରଚନା କରିଛନ୍ତି :-

✡ **ଚାକରର କର କାଟ ପାଣର କାଟ ପା (=ପାଦ),**
**ଦୁର୍ବାକ୍ୟର ଦୁର୍ବା କାଟିଲେ ହୁଏ କେଉଁ ନା ।**

**ବରାହମିହିର :-** ସେ ବିକ୍ରମାଦିତ୍ୟଙ୍କର ନବରତ୍ନ ସଭାର ଅନ୍ୟତମ ରତ୍ନ । ଏକାଧାରରେ ଜ୍ୟୋତିର୍ବିଦ୍ ଓ ଗଣିତରେ ସେ ପାରଦର୍ଶୀ ଥିଲେ । କିନ୍ତୁ ପ୍ରହେଳିକା ରଚୟିତା ବରାହମିହିରଙ୍କର ଏହି ଗୁଣ ସମ୍ପର୍କରେ ନ କହି କେବଳ ମାତ୍ର କୌତୁକବଶତଃ ନାମୋଲ୍ଲେଖ ମାଧ୍ୟମରେ ତାଙ୍କର ପରିଚୟ ପ୍ରଦାନ କରିଛନ୍ତି :-

✡ **ଛଅଟି ବର୍ଣ୍ଣରେ ନାମ ତାଙ୍କର**
**ଦଶ ଅବତାରରୁ ଏକ ଅବତାର ହୁଏ ।**
**ପ୍ରଥମାଂଶରେ ବଣ୍ୟ ଜନ୍ତୁ, ଦ୍ୱିତୀୟ ଅଂଶକୁ ଗ୍ରହ କୁହେ ।**

**ଖନା :-** ସେ ହେଉଛନ୍ତି ସିଂହଳରାଜ କନ୍ୟା ଓ ବରାହଙ୍କ ପୁତ୍ର ମିହିରଙ୍କର ପତ୍ନୀ । ଜ୍ୟୋତିଷ ଶାସ୍ତ୍ରରେ ଓ ନିର୍ଭୁଲ ଗଣନାରେ ତାଙ୍କ ପରି ପାରଦର୍ଶିନୀ ଆଉ କେହି ନଥିଲେ । ତାଙ୍କର ବଚନ ଆଜି ମଧ୍ୟ ଲୋକ ମୁଖରେ 'ଖନା ବଚନ' ନାମରେ ପ୍ରଚଳିତ । କିଂବଦନ୍ତୀ ଅଛି ଯେ ଖନା ତାଙ୍କ ଶ୍ୱଶୁର ବରାହଙ୍କ ସମ୍ମାନାର୍ଥେ ନିଜର ଜିଭ କାଟିପକାଇଥିଲେ । ଏହି ବିଷୟକୁ ଚମତ୍କାର ଭାବରେ ପ୍ରହେଳିକା ରଚୟିତା ନିମ୍ନୋକ୍ତ ପ୍ରହେଳିକାରେ ବ୍ୟଞ୍ଜନ କରିଛନ୍ତି :-

✡ **କେଉଁ ନାରୀ ଜିହ୍ୱା କାଟି ଶ୍ୱଶୁରଙ୍କୁ ମାନିଲା,**
**ସେ କାଳେ ନିର୍ଭୂଲ ଗଣନା ସେଇ ନାରୀ କଲା ।**

ଏହାଛଡ଼ା ବୁଦ୍ଧଦେବଙ୍କର ପାଳିତା ମାତା, ପୁତ୍ର, ସାରଥି ଓ ଜଣେ ଭକ୍ତ ସମ୍ବନ୍ଧରେ ମଧ୍ୟ ପ୍ରହେଳିକା ରଚିତ ହୋଇଛି ।

**ଗୌତମୀ :-** ବୁଦ୍ଧଦେବ ତାଙ୍କ ଜନ୍ମକଲା ମା'ଙ୍କ ପାଖରେ ପ୍ରତିପାଳିତ ନହୋଇ ତାଙ୍କ ମାଉସୀ ଗୌତମୀଙ୍କ ଦ୍ୱାରା ଲାଳିତ ପାଳିତ ହୋଇଥିଲେ । ଗୌତମୀ ତାଙ୍କୁ ମଣିଷ କରିଥିଲେ ବୋଲି ବୁଦ୍ଧଦେବ ଗୌତମ ନାମରେ ମଧ୍ୟ ପରିଚିତ । ବୁଦ୍ଧଦେବ ବା ସିଦ୍ଧାର୍ଥଙ୍କର ଏହି ମାଉସୀ ଗୌତମୀ ବିଷୟକ ଗାଥା ଇତିହାସ ପ୍ରସିଦ୍ଧ । ତେଣୁ ପ୍ରହେଳିକା ରଚୟିତା ଗୌତମୀଙ୍କୁ ନେଇ ପ୍ରହେଳିକା ରଚନା କରିଛନ୍ତି :-

✡ **ମା' ଥାଇ ମାଉସୀ କୋଳେ ହୁଅଇ ମଣିଷ**
**ମାଉସୀର ନାମ କ'ଣ କୁହେ ଇତିହାସ ।**

**ରାହୁଳ :-** ଗୌତମବୁଦ୍ଧଙ୍କର ପୁତ୍ରର ନାମ ରାହୁଳ । ରାହୁଳ ଜନ୍ମହେବା ପରେ ଗୌତମ ସନ୍ୟାସୀ ହୋଇ ଗୃହତ୍ୟାଗ କରିଥିଲେ । ଗୌତମଙ୍କ ପୁତ୍ର ହିସାବରେ ରାହୁଳଙ୍କ

ନାମ ଯେ ଇତିହାସରୁ ଦୃଷ୍ଟିଗୋଚର ହୁଏ, ତାହା ପ୍ରହେଳିକା ରଚୟିତାଙ୍କୁ ମଧ୍ୟ ଅଜଣା ନୁହେଁ । ତେଣୁ ଗ୍ରାମ୍ୟକବି ଗୌତମ-ତନୟ ରାହୁଲକୁ ନେଇ ପ୍ରହେଳିକା ରଚନା କରିଛନ୍ତି :-

✡ **ସିଦ୍ଧାର୍ଥଙ୍କ ଏକମାତ୍ର ପୁତ୍ର ଜନ୍ମିଥିଲା,**
**ଇତିହାସରେ ତାର କି ନାମ ରହିଲା ।**

**ଛନ୍ଦକ :-** ସିଦ୍ଧାର୍ଥଙ୍କ ରଥର ସାରଥି ଥିଲେ ଛନ୍ଦକ । ଯେତେବେଳେ ଯୁବରାଜ ସିଦ୍ଧାର୍ଥ ରଥରେ ବସି ରାଜପ୍ରସାଦରୁ ବୁଲିବାକୁ ବାହାରୁଥିଲେ, ସେତେବେଳେ ବାଟ-ଘାଟରେ ଯେଉଁ ଦୃଶ୍ୟ ତାଙ୍କ ଆଖିରେ ପଡୁଥିଲା, ସେ ସମ୍ବନ୍ଧରେ ଏହି ସାରଥି ଛନ୍ଦକକୁ ପଚାରି ବୁଝୁଥିଲେ । ଛନ୍ଦକ ଯଥାଯଥ ଉତ୍ତର ମଧ୍ୟ ଦେଉଥିଲେ । ସିଦ୍ଧାର୍ଥଙ୍କର ଏହି ସାରଥିଟିର ନାମ ଇତିହାସ ପ୍ରସିଦ୍ଧ । ପ୍ରହେଳିକା ରଚୟିତା ସିଦ୍ଧାର୍ଥଙ୍କର ସାରଥି 'ଛନ୍ଦକ'କୁ ନେଇ ସୁନ୍ଦର ପ୍ରହେଳିକା ରଚନା କରିଛନ୍ତି :-

✡ **ସିଦ୍ଧାର୍ଥ ସାରଥି ସହ ରଥ ଚଢ଼ି ଗଲେ**
**କି ନାମ ସାରଥିର କୁହ ତୁମ୍ଭେ ଭଲେ ।**

**ସୁଜାତା :-** ସୁଜାତା ବୁଦ୍ଧଦେବଙ୍କର ଶିଷ୍ୟା ଓ ଭକ୍ତ ଥିଲେ । ଉରବିଲ୍ୱ ନିକଟବର୍ତ୍ତୀ ସେନାନୀ ଗ୍ରାମର ଭୂସ୍ୱାମୀ ସେନାନୀଙ୍କର ସେ କନ୍ୟା । ସୁଜାତା ଅଶ୍ୱତ୍ଥ-ବୃକ୍ଷ ଦେବତାଙ୍କ ପାଖରେ ମାନସିକ କରିଥିଲେ ଯେ ସେ ଯେବେ ପୁତ୍ରସନ୍ତାନ ଜନ୍ମକରନ୍ତି, ତାହାହେଲେ ସେ ଦେବତାଙ୍କୁ 'ଖିରୀସା-ପାଣି' ନିବେଦନ କରିବେ । ଗୌତମବୁଦ୍ଧଙ୍କର ବୋଧିବୃକ୍ଷତଳେ ଉପବେଶନ ବେଳେ ସୁଜାତା ତାଙ୍କୁ ବୃକ୍ଷଦେବତା ଭାବି 'ଖିରୀସା-ପାଣି' ନିବେଦନ କରିଥିଲେ । ଗୌତମ ତାହା ଗ୍ରହଣ କଲେ । ତପସ୍ୟା ସମୟରେ ଗୌତମଙ୍କର ଶରୀର ଶୀର୍ଣ୍ଣ ହୋଇ ଯାଇଥିଲା । ସୁଜାତାଙ୍କ ନୈବେଦ୍ୟ ଖିରୀସା-ପାଣି ଖାଇ ଗୌତମ ଶରୀରରେ ଶକ୍ତି ପୁନରାୟ ଫେରି ପାଇଥିଲେ । ଏହାପରେ ସୁଜାତାଙ୍କୁ ଗୌତମ ଶିଷ୍ୟା ହିସାବରେ ଗ୍ରହଣ କଲେ । ଗୌତମ ବୁଦ୍ଧଙ୍କର ଏହି ଶିଷ୍ୟା ସୁଜାତାଙ୍କ ସମ୍ପର୍କରେ ଚମତ୍କାର ପ୍ରହେଳିକା ସୃଷ୍ଟି ହୋଇଛି । ଯେପରି :-

✡ **କେଉଁ ଝିଅଟି ସିଦ୍ଧାର୍ଥଙ୍କୁ 'ଖିରୀସା-ପାଣି' ଦେଲା,**
**ଖିରିସା ଖାଇ ଯୁବରାଜଙ୍କ ଦେହରେ ବଳ ହେଲା ।**

ଉଲ୍ଲିଖିତ ପ୍ରହେଳିକା ମାଧ୍ୟମରେ ପ୍ରଖ୍ୟାତନାମା ମନୀଷୀମାନଙ୍କ ପ୍ରତି ଜନସମାଜରେ ଯେ କେତେ ଆଗ୍ରହ ବା କୌତୁହଳ ଥିଲା, ତାହା ବୁଝାପଡ଼େ । ଇତିହାସ ଓ ସାହିତ୍ୟ ବିଷୟରେ ଗ୍ରାମବାସୀମାନଙ୍କର ଧାରଣା ପ୍ରସୂତ ଅଭିଜ୍ଞତା ଏହିପରି ପ୍ରହେଳିକା ମାଧ୍ୟମରେ ଅପୂର୍ବଭାବରେ ପ୍ରକାଶ ପାଇଛି । ଆଉ ସେଥିପାଇଁ ଗ୍ରାମ୍ୟ କବି ମାନଙ୍କର ପରମ ବିସ୍ମୟ ଓ କୌତୁହଳ ନିବୃତ୍ତ କରିବାର ଚରମ ସାର୍ଥକତା ପ୍ରକାଶିତ ହୋଇଛି ।

## ପୌରାଣିକ ଚରିତ୍ର ବିଷୟକ ପ୍ରହେଳିକା :

ପୁରାଣ, ରାମାୟଣ ଓ ମହାଭାରତରେ ଯେଉଁ ନର ନାରୀମାନେ ଅଛନ୍ତି, ସେମାନଙ୍କ ସମ୍ପର୍କରେ ପଲ୍ଲୀଗ୍ରାମବାସୀମାନଙ୍କର କୌତୂହଳର ଅନ୍ତ ନାହିଁ । ବିଭିନ୍ନ ପୌରାଣିକ ଚରିତ୍ରର ଜନ୍ମ ଏବଂ ସେମାନଙ୍କର ପରିଚୟ ସମ୍ପର୍କରେ ଯେଉଁ ବିଶେଷତ୍ୱ ରହିଛି, ସେ ସମ୍ପର୍କରେ ବହୁ ପ୍ରହେଳିକା ସୃଷ୍ଟି ହୋଇଛି । ତେବେ ପୁରାଣ, ରାମାୟଣ ଓ ମହାଭାରତରେ ଯେଉଁପରି ଭାବରେ ଚରିତ୍ର ଗୁଡ଼ିକ ବର୍ଣ୍ଣିତ ହୋଇଛି, ତା ସହିତ ପଲ୍ଲୀଗ୍ରାମବାସୀମାନେ ନିଜସ୍ୱ କଳ୍ପନା ମିଶ୍ରିତ କରି ସେହି ଚରିତ୍ର ଗୁଡ଼ିକ ସମ୍ପର୍କରେ ପ୍ରହେଳିକା ମାଧ୍ୟମରେ ଏକ କାଳ୍ପନିକ ରୂପ ପ୍ରଦାନ କରିଛନ୍ତି । ତେବେ ଏହି ଚରିତ୍ର ଗୁଡ଼ିକ ସମ୍ପର୍କରେ ଯେ ସେମାନଙ୍କର ପୌରାଣିକ ଜ୍ଞାନ ବା ଅଭିଜ୍ଞତା ବହୁପରିମାଣରେ କାର୍ଯ୍ୟରେ ଲାଗିଛି ତା ନୁହେଁ, କୌଣସି ଯାତ୍ରା, ପାଲା-ଗାଆଣ ଇତ୍ୟାଦି ମାଧ୍ୟମରେ ଏହିସବୁ ଚରିତ୍ର ସମ୍ପର୍କରେ ଗ୍ରାମବାସୀମାନଙ୍କର ଯେଉଁ ସାଧାରଣ ଜ୍ଞାନ ଜନ୍ମିଛି , ତାହା ଏହି ଧରଣର ଚରିତ୍ର ବିଷୟକ ପ୍ରହେଳିକା ମଧ୍ୟ ଦେଇ ଫୁଟି ଉଠିଛି । ପୁରାଣର ଯେଉଁ ସବୁ ଚରିତ୍ର ବିଖ୍ୟାତ ବା ଅତି ପରିଚିତ, ସେଇ ସମସ୍ତ ଚରିତ୍ରହିଁ ପ୍ରହେଳିକା ମାଧ୍ୟମରେ ଲୋକ ମାନସରେ ପୁଣି ଥରେ ଅଧିକ ଭାବରେ ପରିଚିତି ଲାଭ କରିଛି । ରାମାୟଣ ଅତି ଜନପ୍ରିୟ ମହାକାବ୍ୟ । ରାମାୟଣର କାହାଣୀ ଆଜି ପଲ୍ଲୀବାସୀ ଅନ୍ତରକୁ ଆବେଗରେ ଆପ୍ଲୁତ କରିଥାଏ । ରାମାୟଣରେ ଯେଉଁସବୁ ଚରିତ୍ର ଅଧିକ ପରିଚିତ, ତାହା ଲୋକମାନସର ଧାରଣା ସହିତ ମିଶ୍ରିତ ହୋଇ ପ୍ରହେଳିକା ମଧ ଦେଇ ଚମତ୍କାର ଭାବରେ ବ୍ୟାଖ୍ୟାୟିତ ହୋଇଛି । ସେମାନଙ୍କର ଧାରଣା ଓ କଳ୍ପନା ମିଶ୍ରିତ ପ୍ରହେଳିକାରେ ସେହି ଚରିତ୍ର ଗୁଡ଼ିକ ଅତି ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି ।

**ମାନଧାତା :-** ରାମାୟଣରେ ମାନଧାତାଙ୍କର ପରିଚୟ ମିଳେ । ସେ ଇକ୍ଷ୍ୱାକୁ ବଂଶର ଦଶମ ରାଜା ଥିଲେ । ଏହି ବୀର ରାଜା,ଅଜ ରାଜାଙ୍କ ପୂର୍ବରୁ ରାଜୁତି କରିଥିଲେ । ସେ ଅତ୍ୟନ୍ତ ପରିଚିତ ନ ହେଲେବି ରାମାୟଣରେ ଏହି ଚରିତ୍ରର ନାମ ଉଲ୍ଲେଖ କରାଯାଇଛି ଏବଂ ତାଙ୍କର ଜନ୍ମ ପରିଚୟ ଦିଆଯାଇଛି :-

✡ **ସୃଷ୍ଟିର ପ୍ରାରମ୍ଭରୁ ଏହାହିଁ ଥିଲୁ ଜାଣି**
**ମାତୃଗର୍ଭରେ ଜନ୍ମନିଏ ଯେତେ ସବୁ ପ୍ରାଣୀ ।**
**ପିତୃଗର୍ଭରୁ ଜନ୍ମନେଲା କୁହ କେଉଁ ଜନ**
**ବିସ୍ତାରିତ କରି ସେହି ନାମ ଲେଖିଛି ରାମାୟଣ ।**

**ଦଶରଥ :-** ଅଯୋଧ୍ୟାର ରାଜା ଦଶରଥ ହେଉଛନ୍ତି ରାମଚନ୍ଦ୍ରଙ୍କର ପିତା । ସେ ସୂର୍ଯ୍ୟ ବଂଶର ବହୁ ଗୁଣସମ୍ପନ୍ନ ଧାର୍ମିକ ରାଜା । ଇତିହାସ ପ୍ରସିଦ୍ଧ ରାଜା ହିସାବରେ ପ୍ରହେଳିକା ମାଧ୍ୟମରେ ପ୍ରକାଶ ପାଇଛନ୍ତି :-

✡ ଚାରିବର୍ଣ୍ଣରେ ଜଣେ ଇତିହାସ ପ୍ରସିଦ୍ଧ ରାଜା ଥିଲା
ପ୍ରଥମ ଦୁଇ ବର୍ଣ୍ଣ ମିଶେଇଲେ ଏକ ସଂଖ୍ୟା ହୋଇଲା ।
ଶେଷ ଦୁଇ ଅକ୍ଷର ପୂର୍ବକାଳ ରାଜାଙ୍କର ଗାଡ଼ି
ମହା ଆନନ୍ଦରେ ରାଜାମାନେ ଭ୍ରମନ୍ତି ତାହା ଚଢ଼ି ।

**ଦଶରଥ ଓ ଅନ୍ଧମୁନି :-** ରାଜା ଦଶରଥ ଥରେ ମୃଗୟାକୁ ଯାଇ ନଦୀରେ ହାତୀ ପାଣି ପିଉଛି ବୋଲି ଭାବି ଶବ୍ଦଭେଦୀ ବାଣ ମାରିଲେ । ଅନ୍ଧମୁନିଙ୍କର ପୁତ୍ର ଯଜ୍ଞଦତ୍ତ ସେଇ ସମୟରେ ନଦୀର ଜଳ କଳସୀରେ ଭର୍ତ୍ତି କରୁଥିଲେ । ଦଶରଥଙ୍କ ବାଣରେ ମୁନିପୁତ୍ର ମଲେ । ରାଜା ଦଶରଥ ଅନ୍ଧମୁନିଙ୍କ ପାଖରେ ତାଙ୍କର କୃତକର୍ମ ପାଇଁ କ୍ଷମା ପ୍ରାର୍ଥନା କଲେ । କିନ୍ତୁ ମୁନି ତାଙ୍କୁ ଅଭିଶାପ ଦେଲେ ଯେ ବୃଦ୍ଧ ବୟସରେ ରାଜା ଦଶରଥ ପୁତ୍ର ଶୋକରେ ପ୍ରାଣ ହରାଇବେ । ଏହାପରେ ଅନ୍ଧମୁନି ଓ ତାଙ୍କ ସ୍ତ୍ରୀ ଉଭୟେ ମୃତ ପୁତ୍ର ସହ ଅଗ୍ନିରେ ପଶି ମୃତ୍ୟୁ ବରଣ କଲେ । ରାଜା ଦଶରଥ ଯେ ପୁତ୍ର ଶୋକରେ ପ୍ରାଣତ୍ୟାଗ କରିଥିଲେ, ତାହା କାହାକୁ ଅଜଣା ନାହିଁ । ରାମାୟଣର ସେଇ ଦଶରଥ ଓ ଅନ୍ଧମୁନିଙ୍କ ସମ୍ବନ୍ଧରେ ପଲ୍ଲୀକବି ପ୍ରହେଳିକା ରଚନା କରିଛନ୍ତି :-

✡ ଚାରି ଅକ୍ଷରରେ ନାମ ତାଙ୍କର ରାମାୟଣରୁ ଶୁଣି ।
ପୁତ୍ର ଶୋକରେ ପ୍ରାଣ ଗଲା ଜାଣନ୍ତି ଜ୍ଞାନୀ ମାନୀ ।
ପୁତ୍ର ଶୋକରେ ଆଉ କିଏ ବା ପ୍ରାଣ ହରାଇଲେ
ତିନିଜଣ ଗୋଟିଏ ଚିତାରେ ଦାହ ହୋଇଥିଲେ ।

**ରାମ:-** ସେ ରାମାୟଣର ପ୍ରଧାନ ପୁରୁଷ, ଅଯୋଧ୍ୟାର ରାଜା ଓ ଅତ୍ୟନ୍ତ ପ୍ରଜାବତ୍ସଳ ଥିଲେ । ଗ୍ରାମ୍ୟକବିଙ୍କର ରାମାୟଣର ଏଇ ପ୍ରଖ୍ୟାତ ଚରିତ୍ର ରାମଙ୍କର ବଂଶ ପରିଚୟ, ଗୁଣାବଳୀ, ବେଶବାସ ସମ୍ପର୍କରେ କେତେଦୂର ଅଭିଜ୍ଞାନ ଥିଲା ଏବଂ ରାମାୟଣର ଅସମ୍ଭବ କାର୍ଯ୍ୟ ଯେ ସେ ସମ୍ଭବ କରିଥିଲେ, ସେ ସବୁ ପ୍ରହେଳିକା ମାଧ୍ୟମରେ ସୁନ୍ଦର ଭାବରେ ବର୍ଣ୍ଣିତ :

✡ ସୂର୍ଯ୍ୟବଂଶରେ ଜନ୍ମ ତାଙ୍କର ଅଜରାଜାଙ୍କ ନାତି ।
ରାବଣର ବୈରୀ ହେଲେ, ସୀତାଦେବୀଙ୍କ ପତି ।।

ପୁଣି ଶ୍ରୀରାମଚନ୍ଦ୍ର ବସୁନ୍ଧରା କନ୍ୟା ସୀତାଙ୍କୁ ବିବାହ କରିଥିଲେ । ସେହି ସମ୍ବନ୍ଧରେ ରାମ ପୃଥିବୀର ଜାମାତା । ପ୍ରହେଳିକା ମାଧ୍ୟମରେ ଏହା ବ୍ୟଞ୍ଜିତ :-

✡ ଯେଉଁ ଜାମାତା ଶାଶୁଙ୍କର ସ୍ୱାମୀ ହୋଇଥିଲେ
ରାମାୟଣର ଗାଥା ବୁଝି ସୁଝି କୁହ ଭଲେ ।

**ସୀତା :-** ମିଥିଳାର ରାଜା ଜନକଙ୍କ ପାଳିତା କନ୍ୟା ଏବଂ ଅଯୋଧ୍ୟାର ରାଜା ରାମଙ୍କର ମହିଷୀ ହେଲେ ସୀତା । ମାଟିରୁ ତାଙ୍କର ଜନ୍ମ । ରାବଣ ଘରେ ବନ୍ଦିନୀ ହୋଇଥିଲେ ବୋଲି ସତୀ ହୋଇ ମଧ କଳଙ୍କିନୀ ସନ୍ଦେହରେ ତାଙ୍କୁ ଅଗ୍ନିପରୀକ୍ଷା ଦେବାକୁ ପଡ଼ିଥିଲା । ଏହି ଅପମାନ ସହ୍ୟ ନ କରି ପାରି ସୀତା ଧରାତଳକୁ ଯେ ଚାଲି ଯାଇଥିଲେ, ତାହା କାହାକୁ ଅବିଦିତ ନୁହେଁ । ରାମାୟଣର ସେହି ସର୍ବଂସହା ନାରୀ ଧରଣୀର ଗର୍ଭରେ ପ୍ରବେଶ ଲାଭ କରି କେବଳ ମାତ୍ର ପତିର ହୃଦୟ ନୁହେଁ, ଚିରକାଳ ପାଇଁ ଜନହୃଦୟରେ ଯେଉଁ କାଳଜୟୀ ଆସନରେ ସ୍ଥାନଲାଭ କରିଯାଇଛନ୍ତି, ତାର ପରିଚୟ ସୀତାଙ୍କ ସମ୍ପର୍କରେ ରଚିତ ପ୍ରହେଳିକାରେ ପ୍ରସ୍ଫୁଟିତ ହୋଇଛି । ଯେପରି :-

✡ **ଜନ୍ମ ଦୁଃଖୀ କରି ତାଙ୍କୁ ବାପ ଦେଲେ ଜନ୍ମ**
**ସେତେବେଳେ ମା' ନଥିଲା ବୋଲନ୍ତି ସର୍ବଜନ ।**
**ସତୀ ହୋଇ କଳଙ୍କିନୀ ସନ୍ଦେହେ ସକଳେ**
**ସହି ନ ପାରିଲେ ଦେବୀ ଗଲେ ରସାତଳେ ।**

✡ **ରାବଣର ଘରେ ଥିଲି / ଆଲୋ ମୁହିଁ ସତୀ**
**ବତୀ ଜାଳି ଯମକୁ ଦେଲି / ମା' ବସୁମତୀ ।**

**ଲକ୍ଷ୍ମଣ :-** ଦଶରଥ ଓ ସୁମିତ୍ରାଙ୍କ ଜାଆଁଳା ସନ୍ତାନ ମଧ୍ୟରୁ ଲକ୍ଷ୍ମଣ ଜ୍ୟେଷ୍ଠ ଓ ଶତ୍ରୁଘ୍ନ କନିଷ୍ଠ । ଲକ୍ଷ୍ମଣ ରାମଙ୍କର ନିତ୍ୟ ସହଚର ଥିଲେ । ସେ ରାଜବେଶ ଛାଡ଼ି ଯୋଗୀବେଶ ଧାରଣ କରିଥିଲେ । ତାଙ୍କର ଭ୍ରାତୃପ୍ରେମ ବା ଭକ୍ତି ଏବଂ ଆଦର୍ଶ, ଦେବର ହିସାବରେ କର୍ତ୍ତବ୍ୟ ନିଷ୍ଠାର ଗାଥା ଏବଂ ସୂର୍ପଣଖାର ନାକ କାଟିବା କଥା ମଧ ରାମାୟଣରେ ଅଛି । ଲକ୍ଷ୍ମଣଙ୍କର ସେଇସବୁ ଗୁଣର ପରିଚୟ ଫୁଟି ଉଠିଛି ନିମ୍ନୋକ୍ତ ପ୍ରହେଳିକା ମଧରେ । ଏହି ପ୍ରହେଳିକାଟି ପାଠ କଲେ ସହଜରେ ବୁଝି ହୁଏ ଯେ ଏହି ଚରିତ୍ରଟି ଲକ୍ଷ୍ମଣଙ୍କ ଛଡ଼ା ଆଉ କାହାରି ନୁହେଁ ।

✡ **ପଶୁ ନୁହେଁ ପଶୁ ସଙ୍ଗେ କରନ୍ତି ଭ୍ରମଣ**
**କେବେ ବା ଯୋଗୀ ବେଶ କେବେ ବା ରାଜନ ।**
**ଭ୍ରାତୃଭକ୍ତ ବୀରପୁରୁଷ, ଆଦର୍ଶ ଦେବର**
**ଭାବିଚିନ୍ତି କହ ଆହେ ତକ୍ଷଣେ ଉତ୍ତର ।**

**ଭରତ :-** ଶ୍ରୀରାମଚନ୍ଦ୍ରଙ୍କ କନିଷ୍ଠ ଭ୍ରାତା ଏବଂ ଦଶରଥଙ୍କର ଦ୍ୱିତୀୟ ପୁତ୍ର ହେଲେ ଭରତ । ତାଙ୍କର ଅସାଧାରଣ ଭ୍ରାତୃ ପ୍ରେମ କାହାକୁ ଅଜଣା ନୁହେଁ । ଜ୍ୟେଷ୍ଠ ଭ୍ରାତାଙ୍କ ପାଦୁକାକୁ ସିଂହାସନରେ ସ୍ଥାପିତ କରି ସେ ରାଜ୍ୟ ଶାସନ କରୁଥିଲେ । ରାମାୟଣର ସେ ଆଦର୍ଶବାନ ଭ୍ରାତୃଭକ୍ତ, ଉଦାର, ସତ୍ୟନିଷ୍ଠ, ଧାର୍ମିକ, ବିନୀତ ଚରିତ୍ର ଭରତଙ୍କ ପରିଚୟ ସୁନ୍ଦର ଭାବରେ ଫୁଟି ଉଠିଛି ପ୍ରହେଳିକା ମାଧମରେ :-

✡ ସୂର୍ଯ୍ୟ ବଂଶରେ ଜନ୍ମ ତାର, ଅଜ ରାଜାର ନାତି
ଦଶରଥ ପୁତ୍ର, ନୁହଁନ୍ତି ସୀତାଦେବୀ ପତି
ରାବଣର ବୈରୀ ନୁହେଁ, ଲକ୍ଷ୍ମଣଙ୍କ ଜ୍ୟେଷ୍ଠ
ବୁଝି ସୁଝି ସଭାଜନେ କର ହେ ନିର୍ଦ୍ଦିଷ୍ଟ ।

**ଲବ-କୁଶ :-** ଲବ-କୁଶ ଶ୍ରୀରାମ ଓ ସୀତାଙ୍କର ଜାଆଁଳା ସନ୍ତାନ । ବାଲ୍ମୀକିଙ୍କ ଆଶ୍ରମରେ ସେମାନଙ୍କର ଜନ୍ମ । ବାଲ୍ମୀକିଙ୍କ ଶିକ୍ଷାରେ ଏମାନେ ବୀରରୂପରେ ପରିଚିତି ଲାଭ କରନ୍ତି । ଏମାନଙ୍କର ବୀରତ୍ୱର ଗାରିମା ପ୍ରହେଳିକା ରଚୟିତା ମଧ୍ୟ ସ୍ୱୀକାର କରିଛନ୍ତି । ଯେପରି :-

✡ ହନୁମାନକୁ ମାରିବା ପାଇଁ ଦୁଇଭାଇ,
ପାଣି ଭିତରକୁ ନେଲେ ତାକୁ କହ କିଏ ସେଇ ।

**କୁଶ :-** କୁଶ ରାମ ଓ ସୀତାଙ୍କର ଜାଆଁଳା ସନ୍ତାନ ମଧ୍ୟରୁ ଜଣେ । କେତେକଙ୍କ ମତରେ ସୀତାଙ୍କର ଏକମାତ୍ର ଏବଂ ପ୍ରଥମ ପୁତ୍ର ଲବ । ବାଲ୍ମୀକି ଆଶ୍ରମରେ ଏହାଙ୍କ ଜନ୍ମ । ସୀତା ଦିନେ ପୁଅକୁ ନେଇ ନଈକୁ ଗାଧୋଇବାକୁ ଗଲେ । ବାଲ୍ମୀକି ତାହା ଜାଣି ନଥିଲେ ; କୌଣସି ବଣ ପଶୁ ହୁଏତ ଲବକୁ ଖାଇ ଦେଇଛି ବୋଲି ଭାବି 'କୁଶ' ଦ୍ୱାରା ଗୋଟିଏ ଶିଶୁ ତିଆରି କରି ରଖିଲେ, କାରଣ ସୀତା ଫେରିଆସିଲା ପରେ ଯେପରି କିଛି ବୁଝି ପାରିବେ ନାହିଁ । ନଈରୁ ସୀତା ଫେରି ଆସିଲେ । ବାଲ୍ମୀକି ନିଶ୍ଚିନ୍ତ ହେଲେ । କୁଶ ସୀତାଙ୍କର ପାଳିତ ପୁତ୍ର ରୂପରେ ପରିଣତ ହେଲା । କୁଶର ଏହି ଜନ୍ମ କାହାଣୀ ପ୍ରହେଳିକା ରଚୟିତାଙ୍କୁ ବିସ୍ମିତ କରିନାହିଁ । ତେଣୁ ରଚୟିତା କୁଶର ଜନ୍ମ ସମୟରେ ଯେ ତାର ମା ଘରେ ନଥିଲେ, ଅଥଚ କୁଶ ଜନ୍ମ ହେଲା - ଏ ଧରଣର ଆଶ୍ଚର୍ଯ୍ୟ କଥା ପ୍ରହେଳିକା ମାଧ୍ୟମରେ ଗ୍ରାମ୍ୟକବି ଚମତ୍କାର ଭାବରେ ପ୍ରକାଶ କରିଛନ୍ତି :-

✡ ବାପ ନାହିଁ ଜନ୍ମ ହେଲା, ଜନ୍ମ ଦେଲା ପର
ଜନ୍ମ ହେଲା ବେଳେ ତାର ମା' ନଥିଲା ଘର ।
କିଏ ସେହି ଜନ୍ମଦାତା, କିଏ ସେ ସନ୍ତାନ
ଯାହାଙ୍କ ପିତାଙ୍କ ନାମେ ପଳାଏ ଶମନ (=ଯମ) ।

✡ ଜନ୍ମଦାତା ଜନ୍ମ ଦେଲାନି ଜନ୍ମ ଦେଲା ପର
ପୁଅ ଜନ୍ମବେଳେ ମାଆ ନଥିଲା ଘର ।
ପିତା ହେଲା ଭଗ୍ନୀପତି, ଭଗ୍ନୀ ହେଲା ମାଆ,
ଏମିତି ଆଶ୍ଚର୍ଯ୍ୟ କଥା କେଭେ ଶୁଣିଛ ନା ?

**ପରଶୁରାମ :-** ସେ ଦାମ୍ଭିକ, କ୍ରୋଧୀ ଓ ପ୍ରତିହିଂସାପରାୟଣ ଥିଲେ । କିନ୍ତୁ ଶ୍ରୀରାମଙ୍କ ସମ୍ମୁଖରେ ତାଙ୍କ ତେଜ ବା ଦର୍ପ ଚୂର୍ଣ୍ଣ ହୋଇଥିଲା । ସେଇ ପରଶୁରାମଙ୍କର ମାତୃ ବଧ କଥା ପ୍ରହେଳିକା ରଚୟିତା ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି :

✡ **ପିତୃ ଆଜ୍ଞା ପାଳିବାକୁ ଜନନୀର ଶିର,**
**ଭୂମି ପରେ ଦ୍ୱିଖଣ୍ଡିତ କଲା କେଉଁ ବୀର ।**
**କି ନାମରେ ବିଖ୍ୟାତ ହେଲା ସେ ଜନ ଧରାରେ**
**ପୁରାଣେ ବର୍ଣ୍ଣିତ ଅଛି, କୁହ ତାର ନାଁଟିରେ ।**

ପୁଣି ପରଶୁରାମଙ୍କ ଅଭିଶାପରେ କର୍ଣ୍ଣଙ୍କର ରଥଚକ୍ର କୁରୁକ୍ଷେତ୍ରରେ ମେଦିନୀ ଗ୍ରାସ କରିବା ଘଟଣା ମଧ ପ୍ରହେଳିକା ମାଧମରେ କୁହାଯାଇଛି :

✡ **କର୍ଣ୍ଣର ରଥଚକ୍ର ଗ୍ରାସ କରିଥିଲା,**
**କୁରୁକ୍ଷେତ୍ରରେ ମେଦିନୀ କାଳକୁ ଗ୍ରାସିଲା**
**କାହା ଅଭିଶାପରେ ଘଟିଲା ଏ ଅଘଟଣ,**
**କର୍ଣ୍ଣର ଗୁରୁ ସେ ଥିଲେ ଜାଣନ୍ତି ସର୍ବଜନ ।**

**ଅହଲ୍ୟା :-** ମହାନ ତପସ୍ୱୀ ଗୌତମଙ୍କ ପତ୍ନୀ ହେଉଛନ୍ତି ଅହଲ୍ୟା । ସପ୍ତ ସତୀମାନଙ୍କ ମଧରେ ଅହଲ୍ୟା ଅନ୍ୟତମ । ମାତ୍ର ବ୍ୟଭିଚାରିଣୀ ଅହଲ୍ୟା ତାଙ୍କର ପାପ କର୍ମପାଇଁ ଅଭିଶପ୍ତ ହୋଇ ପଥରରେ ପରିଣତ ହୋଇଥିଲେ । କିନ୍ତୁ କଠୋର ତପସ୍ୟା ଫଳରେ ଶ୍ରୀରାମଙ୍କର ପାଦ ସ୍ପର୍ଶ ତାଙ୍କୁ ଶାପମୁକ୍ତ କରିଥିଲା । ଅହଲ୍ୟାଙ୍କର ଏହି ମୁକ୍ତିଲାଭ ଗ୍ରାମ୍ୟକବି ପ୍ରହେଳିକା ମାଧମରେ ବୁଝେଇ ଦେଇଛନ୍ତି :

✡ **ପଥରରେ ପାଦ ଦେଉଁ ହୋଇଲା ରମଣୀ,**
**କିବା ନାମ ରମଣୀର କୁହ ଦେଖି ଶୁଣି ।**

**ରାବଣ :-** ବିଶ୍ରବା ମୁନି ଓ ନିକଷାଙ୍କ ସନ୍ତାନ ରାବଣ ଲଙ୍କାର ରାକ୍ଷସ ରାଜା ଥିଲେ । ତାଙ୍କର ଦଶଟି ମୁଣ୍ଡ, କୋଡ଼ିଏ ହାତ ଓ କାନ ଥିଲା । ଯୋଗୀ ବେଶ ଧାରଣ କରି ଛଳନାର ଆଶ୍ରୟରେ ସେ ସୀତାଙ୍କୁ ହରଣ କରିଥିଲେ । ସେହି ଅନ୍ୟାୟ ପାଇଁ ଅଭିଶାପରୁ ତାଙ୍କ ବଂଶ ଲୋପ ହୋଇଥିଲା । ରାମାୟଣରେ ଏହି ଚରିତ୍ରଟିକୁ ଗ୍ରାମ୍ୟକବି ପ୍ରହେଳିକା ମାଧମରେ ଦର୍ଶାଇଛନ୍ତି :-

✡ **ସନ୍ନ୍ୟାସୀ ବେଶରେ କନ୍ୟାକୁ ହରିଲା କେଉଁଜନ,**
**ଶୂନ୍ୟ ପଥେ ଉଡ଼ି-ଉଡ଼ି ଗଲା ଆପଣା ଭବନ ।**
**ସେହି କନ୍ୟା ପାଇଁ ହେଲା କାହାର ମରଣ,**
**କେଉଁ ଜନ ସିଏ କୁହ ଦେଇ ମନ କର୍ଣ୍ଣ ।**

✡ ନାଲିଆ ବରଫରେ ଛାଚି ପାନ
କେଉଁ ମରଦର କୋଡ଼ିଏ କାନ,
ଜବାବ ଦେଲେ ଖାଇବ ପାନ ।

**ମନ୍ଦୋଦରୀ :-** ଲଙ୍କାର ରାକ୍ଷସ ରାଜା ରାବଣଙ୍କ ପତ୍ନୀ । ରାବଣଙ୍କ ଏହି ପତ୍ନୀ ମନ୍ଦୋଦରୀଙ୍କ ସମ୍ପର୍କରେ ପ୍ରହେଳିକା ଶୁଣିବାକୁ ମିଳେ :

✡ ରାମାୟଣ ଲେଖା ଅଟି ପୁରାତନ,
କେଉଁ ସ୍ତ୍ରୀଙ୍କ ସ୍ୱାମୀର କୋଡ଼ିଏ ହାତ କାନ ।

**ମନ୍ଦୋଦରୀ ଓ ତାରା :-** ମନ୍ଦୋଦରୀ ହେଲେ ଲଙ୍କେଶ୍ୱର ରାବଣଙ୍କ ପତ୍ନୀ ଆଉ ତାରା ହେଲେ କିଷ୍କିନ୍ଧ୍ୟାଧିପତି ବାନର ରାଜା ବାଳୀର ସ୍ତ୍ରୀ । ଏ ଦୁହିଁଙ୍କ ସମ୍ପର୍କରେ ପ୍ରହେଳିକା ତିଆରି ହୋଇଛି :

✡ ବଧ ହୋଇ ରାଜକନ୍ୟା କିଏ ହୋଇଥିଲା,
ଦୁଇଖଣ୍ଡ ହୋଇ ଦୁଇ ଜଣଙ୍କ ଭାର୍ଯ୍ୟା ହେଲା ।
ସେମାନଙ୍କ ନାମ କଣ କୁହ ଜ୍ଞାନୀ ମାନୀ
ଏପରି ଅଦ୍ଭୁତ କଥା ରାମାୟଣରୁ ଶୁଣି ।

**ମେଘନାଦ :-** ସେ ରାବଣ ଓ ମନ୍ଦୋଦରୀଙ୍କ ପୁତ୍ର । ସେ ଜଣେ ବୀର ସୁପୌରୁଷର ପ୍ରତିମୂର୍ତ୍ତି । ସେ ମହେଶ୍ୱରଙ୍କ ପାଖରୁ ବରଲାଭ କରିଥିଲେ । ରାମାୟଣରେ ଆମ୍ଭେ ମେଘନାଦଙ୍କ ବୀରତ୍ୱର ବର୍ଣ୍ଣନା ଶୁଣୁ । ମେଘନାଦ ଇଚ୍ଛା ଅନୁସାରେ ଗତିଶୀଳ ଅନ୍ତରୀକ୍ଷଗାମୀ ଦିବ୍ୟରଥରେ ଯତ୍ରତତ୍ର ବିହାର କରି ପାରୁଥିଲେ ଏବଂ ପ୍ରୟୋଜନ ଅନୁସାରେ ଅନ୍ଧକାର ସୃଷ୍ଟି କରିବାପାଇଁ ତାମସୀ ମହାବିଦ୍ୟା ମଧ ତାଙ୍କର ଜଣା ଥିଲା । ମେଘନାଦଙ୍କର ସେଇ ବୀରତ୍ୱର ଗାଥା ଗ୍ରାମ୍ୟକବି ଭୁଲି ନାହାନ୍ତି । ତେଣୁ ପ୍ରହେଳିକା ମାଧମରେ ସେ ମେଘନାଦଙ୍କର ପରିଚୟ ଦେଇଛନ୍ତି :-

✡ ଚାରି ବର୍ଣ୍ଣରେ ନାମ ମୋହର ଶୁଣ ଶିଶୁଗଣ,
ନାଁ ମୋହର ପାଇବ ଯେବେ ପଢ଼ିବ ରାମାୟଣ ।
ପ୍ରଥମାର୍ଦ୍ଧେ ଜାଣ ମୋହର ଆକାଶରେ ବାସ,
ବାୟୁକୁ ବାହାନ କରି ଭ୍ରମେ ବାରମାସ ।
ଦ୍ୱିତୀୟାର୍ଦ୍ଧେ ଶୁଣି ତୁମେ ଚମକିବ ଗେହେ (=ଶରୀର)
ଆଦ୍ୟନ୍ତ ଅକ୍ଷରରେ ଆମ୍ଭେ ଥାଉ ଦେହୀ ଦେହେ ।
ଅନ୍ତବର୍ଣ୍ଣ ଛାଡ଼ି ଦେଲେ ହୁଏ ଏକ ନଦୀ,
ଏଥର ଉତ୍ତର ଦିଅ, ଖୋଜି ପାଅ ଯଦି ।

**ବିଭୀଷଣ :-** ଲଙ୍କାଧିପତି ରାବଣର କନିଷ୍ଠ ଭ୍ରାତା । ସେ ଜଣେ ସାଧୁ ଚରିତ୍ର ଓ ଧାର୍ମିକ ବ୍ୟକ୍ତି ଥିଲେ । ରାକ୍ଷସ ହୋଇ ମଧ ଅଧାର୍ମିକ ରାବଣର ବିରୋଧତା କରି ରାମଚନ୍ଦ୍ରଙ୍କ ପକ୍ଷ ଗ୍ରହଣ କରିଥିଲେ । ତାଙ୍କର ସେଇ ଧାର୍ମିକତା ସମ୍ପର୍କରେ ପ୍ରହେଳିକା ମାଧମରେ ସୁନ୍ଦର ଭାବରେ ବ୍ୟାଖ୍ୟାୟିତ ହୋଇଛି :

✡ **ଜାତିରେ ରାକ୍ଷସ ଅଟେ ତିଳେ ହିଂସା ନାହିଁ,**
**ଶୁଣିଲେ ନିଜର ନାମ ଡ଼ରି ମରେ ସେହି ।**
**ଧାର୍ମିକ ରହିଲା ଚିର ହୋଇଲା ଅମର,**
**ଭାବି ଦେଖ କିଏ ସେହି ହେ ପାଠକ ପ୍ରବର ।**

**ହନୁମାନ :-** ରାମାୟଣରେ ହନୁମାନଙ୍କ ଚରିତ୍ରଟି ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ହନୁମାନ ଶ୍ରୀ ରାମଙ୍କର ଅତ୍ୟନ୍ତ ଭକ୍ତ ଓ ବୀରଥିଲେ । ହିନ୍ଦୁମାନେ ଏହି ଭକ୍ତପ୍ରବର ମହାବୀରଙ୍କ ରୂପରେ ହନୁମାନଙ୍କୁ ଚିରଞ୍ଜୀବୀ ବୋଲି ବିଶ୍ୱାସ କରନ୍ତି । ଦାସ ଭାବରେ, ଉପାସକ ରୂପେ ତାଙ୍କର ନାମ ଉଜ୍ଜ୍ୱଳ ଭାବରେ ଚିହ୍ନିତ । ରାମାୟଣର ଏହି ଭକ୍ତପ୍ରବର ହନୁମାନଙ୍କର ଆହାର ପ୍ରଣାଳୀ ଓ ବୀରତ୍ୱର ଗାଥା ଏବଂ ଭଗବାନଙ୍କର ଭକ୍ତରୂପରେ ତାଙ୍କର ପରିଚୟ ଅପୂର୍ବଭାବରେ ପ୍ରହେଳିକାରେ ଫୁଟିଉଠିଛି :

✡ **ପଚାଶ ମହଣ ଚାଉଳର ଅନ୍ନ କଲେ ଯେ ଭକ୍ଷଣ,**
**କିଏ ଏହି ପେଟୁ ବୀର କୁହ ତତ୍‌କ୍ଷଣ ।**
**ଭଗବାନ ଭକ୍ତ ସେହୁ ରାମାୟଣେ ଅଛି.**
**କି ନାମ ତାହାର କୁହ ସଭାରେ ବିରାଜି ।**

**ଭରତ ଓ ହନୁମାନ :-** ଭରତଙ୍କର ଭ୍ରାତୃ ପ୍ରେମ ଅତୁଳନୀୟ । ତାଙ୍କ ପରି ଉଦାର ଚରିତ୍ର ଖୁବ କମ ଦେଖାଯାଏ । ପୁଣି ହନୁମାନ ଦାସ-ଭାବର ପ୍ରତୀକ । ହନୁମାନଙ୍କର ମଧ ଅତି ଉଦାର ଚରିତ୍ର ଥିଲା । ଭରତ ଓ ହନୁମାନଙ୍କର ଉତ୍ତମ ଚରିତ୍ର ପ୍ରହେଳିକା ମାଧମରେ ଅତି ସୁନ୍ଦର ଭାବରେ ବ୍ୟକ୍ତ :-

✡ **ରାମାୟଣରେ ଉତ୍ତମ ଚରିତ୍ର କୁହ କାହାର,**
**ମାନବ ଓ ପଶୁ ମଧରେ କୁହ ଦୁଇଥର ।**

**ଗୁହକ :-** ରାମାୟଣରେ ଗୁହକର ଅତିଥି ସେବାର ନିଦର୍ଶନ ତୁଳନା ରହିତ । ଅଯୋଧା ତ୍ୟାଗ କରି ଚାଲିଯିବା ପରେ ଗୁହକ ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ଭକ୍ତି ପୂର୍ବକ ଆତିଥେୟତା ପ୍ରଦାନ କରିଥିଲେ ଏବଂ ନୌକା ଦ୍ୱାରା ଗଙ୍ଗାପାର କରାଇଦେଇଥିଲେ । ରାମାୟଣରେ ଗୁହକର ଭକ୍ତିପୂର୍ଣ୍ଣ ଆତିଥ୍ୟର କଥା ପ୍ରହେଳିକାରେ ଫୁଟି ଉଠିଛି :-

✡ **ଭକ୍ତିଭରେ ଅତିଥିସେବା କିଏ କରିଥିଲା,**
**ଦାସ-ଭାବେ ଶ୍ରୀରାମ ଚରଣ କିଏ ପାଇଥିଲା ।**

**କାର୍ତ୍ତବୀର୍ଯାର୍ଜୁନ :-** ସେ ଦତ୍ତାତ୍ରେୟ ମୁନିଙ୍କ ପାଖରୁ ହଜାରେ ହାତ ପାଇ ଅଜେୟ ହୋଇଥିଲେ । କାର୍ତ୍ତବୀର୍ଯ୍ୟଙ୍କ ବୀରତ୍ୱ ଗାଥା ରାମାୟଣରେ ଲେଖା ଅଛି । ତାହା ପ୍ରହେଳିକା ରଚୟିତାଙ୍କର ଦୃଷ୍ଟି ଏଡ଼ାଇ ଯାଇନି । ତେଣୁ ତାଙ୍କର ହଜାରେ ହାତ ଓ ବୀରତ୍ୱର ଗାଥା ପ୍ରହେଳିକାରେ ଅତି ସୁନ୍ଦର ଭାବରେ ପ୍ରକାଶ ପାଇଛି :-

✡ **ରାମାୟଣ କଥା ଏହା, ନୁହେଁ ମିଛ କଥା,**
**ହଜାରେଟି ହାତ ତାର ମାତ୍ର ଗୋଟେ ମଥା ।**

✡ **ମହାବୀର ଥିଲା ସେହି ସର୍ବଲୋକ ଜାଣେ**
**କହିବକି ତାର ନାମ ଯଦି ଥାଏ ମନେ ।**

**ମାରୀଚ :-** ଯକ୍ଷକନ୍ୟା ତାଡ଼କାର ଗର୍ଭରୁ ମାରୀଚର ଜନ୍ମ । ସୀତାଙ୍କୁ ହରଣ କରିବା ପାଇଁ ରାବଣର ନିର୍ଦ୍ଦେଶରେ ସେ ସୁବର୍ଣ୍ଣ ହରିଣ ରୂପ ଧାରଣ କରି ସୀତାଙ୍କୁ ପ୍ରଲୁବ୍ଧ କରିଥିଲା । ରାମାୟଣରୁ ମାରୀଚ ସମ୍ପର୍କରେ ପ୍ରହେଳିକା ଶୁଣାଯାଏ :-

✡ **ସ୍ୱର୍ଣ୍ଣମୃଗ ରୂପେ କିଏ ସୀତାଙ୍କୁ ମୋହିଲା,**
**କିଏ ସେ ସ୍ୱର୍ଣ୍ଣମୃଗ ରୂପ ଧରିଥିଲା ।**

**କାଳନେମି :-** ସେ ରାବଣର ମାମୁଁ । ଶକ୍ତିଅସ୍ତ୍ର ପ୍ରୟୋଗରେ ଲକ୍ଷ୍ମଣ ଅଚେତ ହେଲେ । ଅଚୈତନ୍ୟ ଲକ୍ଷ୍ମଣଙ୍କୁ ବଞ୍ଚାଇବା ପାଇଁ ହନୁମାନ ଗନ୍ଧମାର୍ଦନ ପର୍ବତରୁ ଔଷଧ ଆଣିବାକୁ ଗଲେ । ଇତ୍ୟବସରରେ ହନୁମାନଙ୍କୁ ମାରିବା ପାଇଁ ରାବଣ କାଳନେମିକୁ ପଠାଇଲେ । ହନୁମାନ କାଳନେମିକୁ ଆକାଶରୁ ଏପରି ଭାବରେ ଛାଟିଦେଲେ ଯେ ସେ ଭୂମିରେ ପଡ଼ି ମରିଗଲା । ରାବଣର ଏହି ମାମୁଁଙ୍କ ସମ୍ପର୍କରେ ପ୍ରହେଳିକା ରଚିତ:-

✡ **ରାବଣର ମାମୁଁ କିଏ ଥିଲା ଧରାତଳେ,**
**ହନୁମାନ ପଠାଇଲା ମୃତ୍ୟୁର କବଳେ ।**

**ଅହିରାବଣ :-** ରାମାୟଣରେ ଅହିରାବଣ ନାମରେ ଗୋଟିଏ ଚରିତ୍ରର ସନ୍ଧାନ ମିଳେ । ତା ସମ୍ବନ୍ଧରେ କୁହାଯାଏ ଯେ ସେ ଜନ୍ମଗ୍ରହଣ କଲା ମାତ୍ରେ ଯୁଦ୍ଧ କରିଥିଲା । ଏହି ବାର୍ତ୍ତା ଗ୍ରାମ୍ୟକବି ପ୍ରହେଳିକା ମାଧ୍ୟମରେ ଦର୍ଶାଇଛନ୍ତି:-

✡ **ଜନ୍ମମାତ୍ରେ କେଉଁ ଜନ ଯୁଦ୍ଧ କରିଥିଲା,**
**ରାମାୟଣରେ ଅଛି ଲେଖା, କୁହ ଦେଖି ଭଲା ।**

ମହାଭାରତ କାହାଣୀ ପଲ୍ଲୀ ଗ୍ରାମାଞ୍ଚଳରେ ସର୍ବତ୍ର ପ୍ରଭୂତ ଭାବରେ ପ୍ରଚଳିତ ।

ମହାଭାରତରେ ଯେଉଁସବୁ ଚରିତ୍ର ଗ୍ରାମବାସୀମାନଙ୍କ ମନରେ କୌତୂହଳ ସୃଷ୍ଟି କରିଛି ବା ଦାଗ ପକେଇଛି, ସେହି ସବୁ ଚରିତ୍ର ସମ୍ପର୍କରେ ପ୍ରହେଳିକା ରଚିତ ହୋଇଛି । ତେବେ ଏହି ଧରଣର ପ୍ରହେଳିକାଗୁଡ଼ିକର ଉତ୍ତର ଯେ ସଦାବେଳେ ମହାଭାରତର ଚରିତ୍ର ସହିତ ସାମଞ୍ଜସ୍ୟ ରକ୍ଷା କରିଛି ତା ନୁହେଁ, ଅନେକ ସମୟରେ ଗ୍ରାମବାସୀଗଣ ନିଜ ନିଜର ଧାରଣା, ଜ୍ଞାନ ବା ଚିନ୍ତା ବୁଦ୍ଧି ସାହାଯ୍ୟରେ ଉତ୍ତର ଦେଇଛନ୍ତି । ଅନେକ କ୍ଷେତ୍ରରେ ହୁଏତ ଏହିପରି ପ୍ରହେଳିକାର ଉତ୍ତର ସୁସ୍ପଷ୍ଟ ନୁହେଁ । ତେବେ ସାଧାରଣ ଧାରଣା ବା ବିଶ୍ୱାସରୁ ଏହିସବୁ ପ୍ରହେଳିକାର ଉତ୍ତର ପଲ୍ଲୀବାସୀଗଣ କୌଣସି ଦ୍ୱିଧା ବା ସଂଶୟ ନ କରି ଦେଇଛନ୍ତି । ମହାଭାରଚରେ ଯେଉଁ କେତୋଟି ଚରିତ୍ର ସମ୍ପର୍କରେ ପ୍ରହେଳିକା ସଂଗୃହୀତ ହୋଇଛି, ସେହି ପ୍ରହେଳିକାଗୁଡ଼ିକର ପରିଚୟ ନିମ୍ନରେ ପ୍ରଦତ୍ତ ହେଲା ।

**ଭୀଷ୍ମ :-** ଦେବବ୍ରତ ଭୀଷ୍ମ ମହାଭାରତର ଜଣେ ଆଦର୍ଶବାନ ବୀର ଥିଲେ । ସେ ଗଙ୍ଗା ଓ ଶାନ୍ତନୁଙ୍କର ପୁତ୍ର । ଭୀଷ୍ମଙ୍କ ପ୍ରତିଜ୍ଞା ଓ ବୀରତ୍ୱର କାହାଣୀ କାହାରିକୁ ଅବିଦିତ ନୁହେଁ । ଭୀଷ୍ମଙ୍କର ବୀରତ୍ୱର କଥା ପ୍ରହେଳିକା ମାଧ୍ୟମରେ ପ୍ରତିପାଦିତ ହୋଇଛି :-

✡ **ମହାଭାରତରେ କିଏ ସେ ମହାବୀର**
**ଯିଏ କହି ପାରିବ ସେହି ହେବ ଧୀର (=ବିଦ୍ୱାନ) ।**

**ଗାନ୍ଧାରୀ :-** ସେ ହେଲେ ଗାନ୍ଧାର ଦେଶର ରାଜା ସୁବଳଙ୍କ କନ୍ୟା ଏବଂ ଧୃତରାଷ୍ଟ୍ରଙ୍କ ସ୍ତ୍ରୀ । ଧୃତରାଷ୍ଟ୍ର ଜନ୍ମାନ୍ଧ ଥିଲେ । ପତିଭକ୍ତି ପାଇଁ ଗାନ୍ଧାରୀ ବିବାହ ପରେ ଆଖିରେ ପଟି ବାନ୍ଧି ଅନ୍ଧ ହୋଇ ରହୁଥିଲେ । ଗାନ୍ଧାରୀ ରାଜକନ୍ୟା ଓ ରାଜରାଣୀ ହେଲେବି ଅନ୍ଧହୋଇ ରହୁଥିଲେ । ଲୌହମୁଦ୍‌ଗରରେ ତାଙ୍କ ନିଜର ଗର୍ଭ ନଷ୍ଟ କରିବାର କଥା ମହାଭାରତରୁ ପ୍ରତୀୟମାନ ହୁଏ । ଗ୍ରାମ୍ୟକବି ଯେ ଏ ସବୁ କଥା ଭୁଲିନାହାନ୍ତି, ତାହା ଗାନ୍ଧାରୀ ବିଷୟକ ପ୍ରହେଳିକା ହିଁ ପ୍ରମାଣ :-

✡ **ରାଜାଘରେ ଜନ୍ମ ନେଲା ସ୍ୱାମୀ ରାଜା ହେଲା,**
**ବିଧି ବଳେ କେଉଁ ନାରୀ ଜଗତ ସୃଜିଲା ।**
**ଚକ୍ଷୁ ଥାଇ ଅନ୍ଧ ସମ ତାକୁ ଦେଖା ଯେ ନ ଯାଏ,**
**ଲୌହ ମୁଦ୍ଗରରେ ନିଜ ଗର୍ଭ ନଷ୍ଟ କଲା ହାୟ ।**

**କୁନ୍ତୀ :-** ପାଣ୍ଡୁ ରାଜାଙ୍କର ପ୍ରଥମ ସ୍ତ୍ରୀ ହେଲେ କୁନ୍ତୀ । ସେ ପଞ୍ଚପାଣ୍ଡବଙ୍କର ମାତା, ଆଉ କର୍ଣ୍ଣଙ୍କର ମଧ୍ୟ ମାତା । କୁନ୍ତୀଙ୍କର ମାତୃସ୍ନେହର କଥା ମହାଭାରତରୁ ଶୁଣାଯାଏଁ । ମହାଭାରତର ସେଇ କୁନ୍ତୀ ଦେବୀ ଯେ ପରର କାର୍ଯ୍ୟ ପାଇଁ ନିଜର ସନ୍ତାନମାନଙ୍କୁ ନିୟୋଜିତ କରିଥିଲେ, ସେ କଥା ମଧ୍ୟ ପ୍ରହେଳିକା ମାଧ୍ୟମରେ କୁହାଯାଇଛି :-

✡ ପର ଉପକାରେ ଯିଏ ଆପଣା କୁମର,
ପଠାଇଥିଲା ଭକ୍ଷ୍ୟ ପାଇଁ ନିଶାଚର ।
ଏପରି କେଉଁ ମାତା ଥିଲା ଭାରତ-ଭୂଇଁରେ,
ପଠାଏ ନନ୍ଦନକୁ ପର ଉପକାର ପାଇଁରେ ।

**କୁନ୍ତୀ ଓ ମାଦ୍ରୀ :-** ପାଣ୍ଡୁ ରାଜାଙ୍କର ପତ୍ନୀଦ୍ୱୟ ହେଲେ କୁନ୍ତୀ ଓ ମାଦ୍ରୀ । କୁନ୍ତୀ ଓ ମାଦ୍ରୀଙ୍କର ସନ୍ତାନମାନେ ଯେ ସମସ୍ତେ କ୍ଷେତ୍ରଜ ପୁତ୍ର ଥିଲେ, ସେ କଥା ପ୍ରହେଳିକା ରଚୟିତା କୁନ୍ତୀ ଓ ମାଦ୍ରୀ ବିଷୟକ ପ୍ରହେଳିକା ମାଧ୍ୟମରେ ସ୍ପଷ୍ଟଭାବରେ ପ୍ରକାଶ କରିଛନ୍ତି ।

✡ ସ୍ୱାମୀ ଜୀଇଁ ଥାଉଁ ଥାଉଁ ନ ପାଇଲା ଔରସ,
କେଉଁ ନାରୀ ଧରାରେ ଅଛି କୁହ ମହାଶୟ ।
ଅନ୍ୟର ଔରସରୁ ଜନ୍ମିଲା ସନ୍ତାନ,
ଦୁଇ ରମଣୀର ନାମ କୁହ ମହାତ୍ମାନ ।

**କର୍ଣ୍ଣ:-** କୁନ୍ତୀଙ୍କର କୁମାରୀ ଅବସ୍ଥାରେ ସୂର୍ଯ୍ୟଙ୍କ ଔରସରୁ କର୍ଣ୍ଣ ଜନ୍ମ ଗ୍ରହଣ କରିଥିଲେ । ମାତ୍ର ଏହି ଜନ୍ମବୃତ୍ତାନ୍ତ କର୍ଣ୍ଣ ଜାଣିନଥିଲେ । କର୍ଣ୍ଣ ଜନ୍ମ ହେବା ପରେ କୁନ୍ତୀ ତାଙ୍କୁ କାଠ ବାକ୍ସରେ ରଖି ନଦୀରେ ଭସାଇ ଦେଇଥିଲେ । କର୍ଣ୍ଣ ସୂତ ଅଧିରଥଙ୍କ ଗୃହରେ ପ୍ରତିପାଳିତ ହୋଇଥିଲେ । କର୍ଣ୍ଣଙ୍କର ଏହି ଜନ୍ମରହସ୍ୟ କାହାକୁ ଅଛପା ନାହିଁ । କର୍ଣ୍ଣ ଜଣେ ଆଦର୍ଶ ବୀର । ତାଙ୍କର ବୀରତ୍ୱ ଗାଥା ମଧ୍ୟ ସମସ୍ତଙ୍କୁ ଜଣା । କର୍ଣ୍ଣ ସମ୍ବନ୍ଧରେ ପ୍ରଚଳିତ ବିଶ୍ୱାସ ଓ ଧାରଣାରୁ ପଲ୍ଲୀକବି କର୍ଣ୍ଣ ବିଷୟକ ପ୍ରହେଳିକା ରଚନା କରିଛନ୍ତି :

✡ ଶିଷ୍ୟ ହୋଇ ଗୁରୁପତ୍ନୀ କଲା ଯେ ହରଣ,
ଅଭିଶାପ ଲଭିଲେ ସେ ସହସ୍ର ଲୋଚନ ।
ତାଙ୍କର ପୁତ୍ରର ମାତା ଅଭିଆଡ଼ି ବେଳେ,
ପ୍ରସବ କରିଲା କାରେ କୁହ ବୁଦ୍ଧି ବଳେ ।

**ପଞ୍ଚୁପାଣ୍ଡବ :-** ପାଣ୍ଡୁ ରାଜାଙ୍କର ପାଞ୍ଚପୁତ୍ର ହେଲେ ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଓ ସହଦେବ । ଏମାନେ ହେଲେ ଦ୍ରୌପଦୀଙ୍କର ସ୍ୱାମୀ । ମହାଭାରତର ପଞ୍ଚପାଣ୍ଡବ ବିଷୟକ ପ୍ରହେଳିକା ହେଲା :

✡ ଦଶଭୁଜା ପତି ଯିଏ ଦ୍ୱିଭୁଜ ରମଣୀ,
ତାହାଙ୍କର ପିତାର ପୁତ୍ର ଅପୁତ୍ରିକ ଗଣି ।

**ଯୁଧିଷ୍ଠିର :-** ପାଣ୍ଡୁଙ୍କର ପ୍ରଥମ ପୁତ୍ର ଯୁଧିଷ୍ଠିର । କିନ୍ତୁ ଯୁଧିଷ୍ଠିରଙ୍କର ମାତା କୁନ୍ତୀଦେବୀ ଧର୍ମରାଜାଙ୍କ ଔରସରୁ ଗର୍ଭଧାରଣ କରିଥିଲେ । ଯୁଧିଷ୍ଠିର ଅତ୍ୟନ୍ତ ଆଦର୍ଶବାନ

ଓ ସତ୍ୟବାଦୀ ପୁରୁଷ ଥିଲେ । ସେ ଥିଲେ ଯମପୁତ୍ର ଏବଂ କୁନ୍ତୀଙ୍କର ଗର୍ଭଜାତ ସନ୍ତାନ । ଯୁଧିଷ୍ଠିରଙ୍କ ସମ୍ପର୍କରେ କୌତୁକ କରି ପ୍ରହେଳିକା ରଚନା କରାଯାଇଛି । ଯମପୁତ୍ର ଯୁଧିଷ୍ଠିର, ପୁଣି ସୂର୍ଯ୍ୟଙ୍କର ପୁତ୍ର କର୍ଣ୍ଣ, ଉଭୟହିଁ କୁନ୍ତୀଙ୍କ ଗର୍ଭଜାତ । ଯୁଧିଷ୍ଠିର ବିଷୟକ ପ୍ରହେଳିକା ହେଲା :

✡ ପିତା ପୁତ୍ର ଏକ ନାରୀ କଲେ ଆଲିଙ୍ଗନ,
ଉଭୟ ଔରସରୁ ଜାତ ଉଭୟ ନନ୍ଦନ ।
ଉଭୟର ନାମ କ'ଣ କୁହ ଦେଖି ଶୁଣି,
ମିଥ୍ୟା ନୁହେଁ ସତ୍ୟ ଏହା ଶାସ୍ତ୍ର ଦେଖ ଆଣି ।

✡ ପୁତ୍ର ହୋଇ ଇଚ୍ଛା କରେ ପିତା ହେଉ ଅତି,
ଶାଶୁ ହୋଇ ଇଚ୍ଛା କରେ ଜୁଆଁଇ ହେଉ ପତି ।
ବଧୂ ହୋଇ ଇଚ୍ଛା କରେ ଶ୍ୱଶୁର ଆଲିଙ୍ଗନ,
ପତି ହୋଇ ଇଚ୍ଛା କରି ପତ୍ନୀ ଗର୍ଭକୁ ଗମନ ।

**ଅର୍ଜୁନ :-** ତାଙ୍କୁ ତୃତୀୟ ପାଣ୍ଡବ କୁହାଯାଏ । ସେ କୁନ୍ତୀଙ୍କର ଗର୍ଭଜାତ ସନ୍ତାନ ଓ ପାଣ୍ଡୁଙ୍କର କ୍ଷେତ୍ରଜ ପୁତ୍ର । ସେ ଜଣେ ଅସାଧାରଣ ବୀର ଥିଲେ । କୁନ୍ତୀଙ୍କ ଗର୍ଭରେ ଦେବରାଜ ଇନ୍ଦ୍ରଙ୍କ ଦ୍ୱାରା ସେ ଜନ୍ମଲାଭ କରିଥିଲେ । ସେ କୃଷ୍ଣଙ୍କର ପାଦତଳେ ବସି କୃଷ୍ଣଙ୍କର ମନଜୟ କରିଥିଲେ । ଦ୍ରୌପଦୀଙ୍କ ସ୍ୱାମୀ ଅର୍ଜୁନ ହେଲେ ମଧ ସେ ତାଙ୍କ ମାମୁଁ ଝିଅ ଭଉଣୀ ସୁଭଦ୍ରାଙ୍କୁ ହରଣ କରିନେଇ ବିବାହ କରିଥିଲେ ଏବଂ ଭାର୍ଯ୍ୟା ହିସାବରେ ଗ୍ରହଣ କରିଥିଲେ । ଏହି ସବୁ କଥା ପ୍ରହେଳିକା ରଚୟିତା ଚମତ୍କାର ଭାବରେ ବ୍ୟଞ୍ଜିତ କରିଛନ୍ତି :-

✡ ଭଉଣୀ ପ୍ରେମରେ କିଏ ମୋହ ହୋଇଥିଲା
ହରଣ କରି ତାକୁ ସେ ଘେନି ପଳାଇଲା ।

✡ ପଞ୍ଚ ପାଣ୍ଡବଙ୍କ ଏକ ବଳା, ବଳେ
ଯାଇ ବସିଲେ କୃଷ୍ଣ ପାଦ ତଳେ ।

**ଅର୍ଜୁନ ଓ ଉର୍ବଶୀ :-** ଅର୍ଜୁନ ସ୍ୱର୍ଗର ନର୍ତ୍ତକୀ କାମାତୁରା ଉର୍ବଶୀର ପ୍ରେମ ନିବେଦନ ଗ୍ରହଣ ନ କଲାରୁ ଉର୍ବଶୀ ଅପମାନିତା ହୋଇ ଅର୍ଜୁନଙ୍କୁ ଅଭିଶାପ ଦେଇଥିଲେ । ସେଇ ଅଭିଶାପହିଁ ଅଜ୍ଞାତବାସ ସମୟରେ ଅର୍ଜୁନଙ୍କ ପାଇଁ ବର ସ୍ୱରୂପ ହୋଇଥିଲା । ମହାଭାରତରେ ଏହି କଥା ମଧ ପ୍ରହେଳିକା ମଧ ଦେଇ ବ୍ୟଞ୍ଜିତ ହୋଇଅଛି :

✡ ରମଣୀର ଅଭିଶାପ ପୁରୁଷକୁ ବର ହେଲା,
ସେହି ବରରେ ସେହି ଜନ ମୁକ୍ତି ଲାଭ କଲା ।
କୁହ ଭାଇ ସେମାନେ କେଉଁ ଜନ,
ନର ନାରୀର କି କି ନାମ କୁହ ବିଜ୍ଞଜନ ।

**ଦ୍ରୌପଦୀ :-** ପାଞ୍ଚାଳ ରାଜକନ୍ୟା ଦ୍ରୌପଦୀ ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଓ ସହଦେବଙ୍କର ପତ୍ନୀ । ସେ ଅତ୍ୟନ୍ତ ତେଜସ୍ୱିନୀ ମହିଳା ଥିଲେ । ପାଞ୍ଚଜଣ ସ୍ୱାମୀ ଥିବା ସତ୍ତ୍ୱେ ତାଙ୍କର ସତୀତ୍ୱର କଥା ଗ୍ରାମ୍ୟକବି ପ୍ରହେଳିକା ମାଧ୍ୟମରେ ଉଲ୍ଲେଖ କରିଛନ୍ତି :-

✡ **ପାଞ୍ଚଭାଇ ଘଇତା / କେଉଁ ନାରୀର ଥିଲା ଧରାପରେ,**
**ଜଗତର ସବୁ ଲୋକ / ସତୀ କହେ ତାରେ ।**

ପୁଣି ପୂର୍ବଜନ୍ମରେ ଦ୍ରୌପଦୀ ଶିବପୂଜା କରିଥିଲେ । ସେଥିରେ ସନ୍ତୁଷ୍ଟ ହୋଇ ଶିବ ତାଙ୍କୁ ପାଞ୍ଚଟି ବର ପ୍ରଦାନ କରିଥିଲେ । ସେଇ ପାଞ୍ଚଟି ବର ପାଇ ଦ୍ରୌପଦୀ ଯେ ପାଞ୍ଚସ୍ୱାମୀ ପାଇଥିଲେ, ତାହା ମଧ୍ୟ ପ୍ରହେଳିକା ମାଧ୍ୟମରେ ସୁନ୍ଦର ଭାବରେ ପ୍ରକାଶିତ ହୋଇଛି :-

✡ **ପୂର୍ବଜନ୍ମରେ କେଉଁ ନାରୀ ଶିବଙ୍କୁ ପୂଜିଲେ,**
**ଯେଉଁ ପାଇଁ ଶିବ ତାଙ୍କୁ ପାଞ୍ଚ ବର ଦେଲେ ।**
**ପାଞ୍ଚଥର ସ୍ୱାମୀ ମିଳୁ, ବାସନା ଜଣାଏ,**
**ସେଇପାଇଁ ପାଞ୍ଚ ସ୍ୱାମୀ ସେହି ନାରୀ ପାଏ ।**

**ଭୀମ ଓ ଦ୍ରୌପଦୀ :-** ଦ୍ରୌପଦୀ ଭୀମଙ୍କର ମଧ୍ୟ ପତ୍ନୀ । ପୁଣି ଭୀମ ହେଲେ ପବନପୁତ୍ର । ସମ୍ପର୍କରେ ପବନ ଦ୍ରୌପଦୀଙ୍କର ଶ୍ୱଶୁର । ଦ୍ରୌପଦୀ ଥରେ ରନ୍ଧନ କାର୍ଯ୍ୟରେ କ୍ଳାନ୍ତ ହୋଇ ପବନ ଦେବଙ୍କୁ ପ୍ରାର୍ଥନା କରିଥିଲେ । ସେ ବିଷୟକ କଥା ପ୍ରକାଶ ପାଇଛି ପ୍ରହେଳିକା ମାଧ୍ୟମରେ :

✡ **ବକ୍ଷବସ୍ତ୍ର ଖସାଇଲା ଘନ ପ୍ରଭଞ୍ଜନ,**
**ତାହା ଦେଖି ଶ୍ୱଶୁରର ହୋଇଲା କମ୍ପନ ।**
**ରନ୍ଧନେ କ୍ଳାନ୍ତ ହୋଇ ଭୀମର କାମିନୀ,**
**ସ୍ତନରୁ ଅମ୍ବର ଖସି ଲୋଟିଲା ଧରଣୀ ।**
**ଶ୍ୱଶୁର ସମ୍ଭୋଗ ଇଚ୍ଛା ହୁଏ ଯେତ୍ନେ,**
**କେମିତି ସମ୍ଭୋଗ ହେବ ଏହା ଭାବ ମନେ ।**

**ଅଭିମନ୍ୟୁ :-** ଅର୍ଜୁନ ଓ ସୁଭଦ୍ରାଙ୍କର ପୁତ୍ର ଅଭିମନ୍ୟୁଙ୍କ ବୀରତ୍ୱର ପଟାନ୍ତର ନାହିଁ । ପୁଣି ସେ ହେଉଛନ୍ତି କୃଷ୍ଣଙ୍କର ଭଣଜା ଓ ଦ୍ରୌପଦୀଙ୍କର ସଉତୁଣୀ ପୁତ୍ର । ଏଣୁ ଅଭିମନ୍ୟୁଙ୍କ ସମ୍ପର୍କରେ ପ୍ରହେଳିକା ରଚିତ ହୋଇଛି :

✡ **ଏକମାତ୍ର ପୁଅ ମୋହର କପାଳ ବଡ଼ ମନ୍ଦ,**
**ସେ ପୁଣି ମୋର ଭଣଜା, ଦେଢ଼ଶୁର, ସଉତୁଣୀ**
**ଦିଅର ପୁଅ ଚାରି ସମ୍ବନ୍ଧ ।**

**କୁନ୍ତୀ, ଦ୍ରୌପଦୀ ଓ ସୁଭଦ୍ରା :-** କୁନ୍ତୀ ହେଲେ ପଞ୍ଚପାଣ୍ଡବଙ୍କ ମାତା । ଦ୍ରୌପଦୀ ଓ ସୁଭଦ୍ରା ହେଲେ କୁନ୍ତୀଙ୍କର ପୁତ୍ରବଧୂ । ସୁଭଦ୍ରା ପୁଣି ଅର୍ଜ୍ଜୁନଙ୍କ ପତ୍ନୀ, ତେଣୁ ସେ ସମ୍ପର୍କରେ ଦ୍ରୌପଦୀଙ୍କ ସଉତୁଣୀ । ଏମାନଙ୍କୁ ଏକତ୍ର କରି ପ୍ରହେଳିକା ରଚିତ ହୋଇଛି:

✡ **ସାତ ଘଇତାରେ ସାବିତ୍ରୀ, ପାଞ୍ଚ ଘଇତା ଇଏ,**
**ଭାଇ ଘଇତା କହି ଗଲା ବାପ ଘଇତା ସିଏ ।**

ଏମାନେ ତିନିଜଣ ସଧବା ଏବଂ ଏମାନେ ସାବିତ୍ରୀଙ୍କ ପରି ସତୀ ସାଧ୍ୱୀ ନାରୀ । ତେଣୁ କୁହାଯାଇଛି :

✡ **ସାତ ଘଇତା ମାତୁଳ ତୁଲ / ପାଞ୍ଚ ଘଇତା ହୁଏ,**
**ଭାଇ ଘଇତା ବାହା ହଉଛି / ବାପ ଘଇତା ଖାଏ ।**

ଏଠାରେ ଗ୍ରାମବାସୀମାନେ ଏହି ଧରଣର ପ୍ରହେଳିକା ଗୁଡ଼ିକୁ ନିଜନିଜର ମତାନୁସାରେ ବ୍ୟାଖ୍ୟା କରିଥାଆନ୍ତି ।

**ଜୟଦ୍ରଥ ବଧ :-** ଜୟଦ୍ରଥ ଥିଲେ ସିନ୍ଧୁରାଜ ବୃଦ୍ଧକ୍ଷେତ୍ରଙ୍କର ପୁତ୍ର ଓ ଧୃତରାଷ୍ଟ୍ରଙ୍କ କନ୍ୟା ଦୁଃଶୀଳାର ପତି । ଜୟଦ୍ରଥ ବଡ଼ ଖ୍ୟାତନାମା ବୀର ଥିଲେ । ଅଭିମନ୍ୟୁଙ୍କର ମୃତ୍ୟୁ ପରେ ଜୟଦ୍ରଥଙ୍କୁ ନିଜ ହାତରେ ବଧ କରିବା ପାଇଁ ଅର୍ଜ୍ଜୁନପ୍ରତିଜ୍ଞା କରିଥିଲେ । କିନ୍ତୁ ଜୟଦ୍ରଥ ମଧ କମ ବୀର ନୁହଁନ୍ତି । ତେଣୁ ଶ୍ରୀକୃଷ୍ଣ କୌଶଳ କ୍ରମେ ଅସମୟରେ ଅର୍ଥାତ୍ ଦିନବେଳେ ଅନ୍ଧକାର ସୃଷ୍ଟି କରନ୍ତେ ଅର୍ଜ୍ଜୁନ ଅସ୍ତ୍ରଦ୍ୱାରା ଜୟଦ୍ରଥଙ୍କର ମୁଣ୍ଡ ଛେଦନ କଲେ । ଜୟଦ୍ରଥ ବଧର ଏହି ଘଟଣା ପ୍ରହେଳିକା ରଚୟିତା ଅପୂର୍ବ ଭାବରେ ବର୍ଣ୍ଣନା କରିଛନ୍ତି :

✡ **ଅକାଳରେ କାଳ ନିଶି କିଏ ନାହିଁ ଜାଣେ,**
**ନିଶିରେ ଫୁଟଇ ପଦ୍ମ, କୁମୁଦିନୀ ଦିନେ ।**

**ପରୀକ୍ଷିତ :-** ଅର୍ଜ୍ଜୁନଙ୍କର ପୁତ୍ର ଅଭିମନ୍ୟୁ ଓ ପୁତ୍ରବଧୂ ଉତ୍ତରାଙ୍କ ପୁତ୍ର ଥିଲେ ପରୀକ୍ଷିତ । ପିତାଙ୍କର ମୃତ୍ୟୁ ସମୟରେ ପରୀକ୍ଷିତ ମାତୃ ଗର୍ଭରେ ଥିଲେ । ଜନ୍ମପରେ ସେ ରାଜା ହୋଇଥିଲେ । ଶମୀକ ମୁନିଙ୍କର ଅଭିଶାପରୁ ମହାନାଗ ତକ୍ଷକଙ୍କର ଦଂଶନରେ ତାଙ୍କର ମୃତ୍ୟୁ ହୋଇଥିଲା । ଗ୍ରାମ୍ୟ ପ୍ରହେଳିକା ରଚୟିତା ପରୀକ୍ଷିତଙ୍କ ବିଷୟରେ ଏପରି ବର୍ଣ୍ଣନା କରିଛନ୍ତି -

✡ **ପିତାଙ୍କ ମୃତ୍ୟୁ ପରେ ଜନ୍ମିଲା ରାଜକୁମାର,**
**ବ୍ରହ୍ମଶାପ ପଡ଼ିଥିଲା ତାହାର ଉପର ।**
**ତକ୍ଷକ ଦଂଶନ ହେଲା ମୃତ୍ୟୁର କାରଣ**
**କୁହ ବୁଝି ସୁଝି କେଉଁ ମହାମ୍ବନ ।**

**ଶକୁନି :-** ମହାଭାରତରେ ଶକୁନି ହେଲେ ଗାନ୍ଧାରରାଜା ସୁବଳଙ୍କ ଜ୍ୟେଷ୍ଠ ପୁତ୍ର ଏବଂ ସେ କୌରବମାତା ଗାନ୍ଧାରୀଙ୍କ ଜ୍ୟେଷ୍ଠଭ୍ରାତା ଥିଲେ । ଅର୍ଥାତ୍ କୌରବମାନଙ୍କର ମାମୁଁ ଶକୁନି । ପଶା ଖେଳରେ ଶକୁନି କପଟ ଉପାୟରେ ପାଣ୍ଡବମାନଙ୍କୁ ହରାଇ ଦେଇଥିଲେ । ତାଙ୍କର ଦ୍ୟୁତ କ୍ରୀଡ଼ା କଥା ସମସ୍ତଙ୍କୁ ଜଣା । ରାମାୟଣରେ କାଳନେମୀର ଲଙ୍କା-ଭାଗ ଭଳି ଶକୁନିର ପରାମର୍ଶରେ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ମନାନ୍ତର ହୋଇଥିଲା । କୌରବମାନଙ୍କର ସେଇ ଷଡ଼ଯନ୍ତ୍ରକାରୀ ମାମୁଁ ଶକୁନିଙ୍କ ସମ୍ପର୍କରେ ରଚିତ ପ୍ରହେଳିକା :-

✡ **ଦୁର୍ଯ୍ୟୋଧନର ମାମୁଁ କିଏ କାଳନେମି ଭଳି,**
**ଦ୍ୱାପରରେ ସେହି ଥିଲା ଭକ୍ତର ଭକ୍ତ ଭଳି ।**

**ଧର୍ମରାଜ :-** ମହାଭାରତରେ ବକରୂପୀ ଧର୍ମରାଜଙ୍କର ଉଲ୍ଲେଖ ରହିଛି । ତୃଷାର୍ତ୍ତ ପଞ୍ଚପାଣ୍ଡବ ବଣ ମଧ୍ୟରେ ଜଳ ଆଶାରେ ଜଳାଶୟ ପାଖକୁ ଯାଆନ୍ତେ ଧର୍ମରାଜ ଏମାନଙ୍କୁ କେତେକ ପ୍ରଶ୍ନ କଲେ । ଭୀମ, ଅର୍ଜ୍ଜୁନ, ନକୁଳ ଓ ସହଦେବ ସେହିସବୁ ପ୍ରଶ୍ନର ସଠିକ୍ ଉତ୍ତର ଦେଇ ନ ପାରିବାରୁ ମୃତ୍ୟୁବରଣ କଲେ । କିନ୍ତୁ ଯୁଧିଷ୍ଠିର ସମସ୍ତ ପ୍ରଶ୍ନର ସଠିକ୍ ଉତ୍ତର ଦେଇ, ବକ-ରାକ୍ଷସ ରୂପୀ ଧର୍ମରାଜାଙ୍କ କବଳରୁ, ଭ୍ରାତାମାନଙ୍କର ଜୀବନ ଫେରାଇ ଆଣିଥିଲେ । ଧର୍ମରାଜ ବକ-ରାକ୍ଷସର ଛଦ୍ମବେଶରେ ପଞ୍ଚପାଣ୍ଡବଙ୍କୁ ପରୀକ୍ଷା କରିଥିଲେ । ମହାଭାରତରେ ସେଇ ବକରୂପୀ ଧର୍ମରାଜଙ୍କ ସମ୍ପର୍କରେ ଚମତ୍କାର ପ୍ରହେଳିକା ଶୁଣିବାକୁ ମିଳେ :

✡ **ବକ ପ୍ରଶ୍ନର ଉତ୍ତର କିଏ ନ ପାରିଲେ ଦେଇ,**
**ଯୁଧିଷ୍ଠିର ଦେଇଥିଲେ ସଭା ଶେଷେ ଯାଇ ।**
**ସେହି ବକ କିଏ ଥିଲା କୁହ ମହାଶୟ**
**ନ ପାରିଲେ ଧର୍ମ ମାର୍ଗେ ରହିବ ସଂଶୟ ।**

ପଲ୍ଲୀଗ୍ରାମବାସୀମାନେ ଯେ କେବଳମାତ୍ର ରାମାୟଣ- ମହାଭାରତର ବିଭିନ୍ନ ଚରିତ୍ରକୁ ପାଥେୟ କରି ପ୍ରହେଳିକା ରଚନା କରିଛନ୍ତି ତା ନୁହେଁ, ବହୁ ପୌରାଣିକ ଚରିତ୍ର ଅବଲମ୍ବନ କରି ସେମାନେ ପ୍ରହେଳିକା ରଚନା କରିଛନ୍ତି । ସବୁବେଳେ ଯେ ଏହିସବୁ ପ୍ରହେଳିକା ମାଧ୍ୟମରେ ପୌରାଣିକ ଜ୍ଞାନ ବା ଅଭିଜ୍ଞତା ପ୍ରକାଶ ପାଇଛି ତା ନୁହେଁ, ସାଧାରଣ ଧାରଣା ବା ଲୋକବିଶ୍ୱାସ ଫଳରେ ବି ଅନେକ ସମୟରେ ଏହି ଧରଣର ପ୍ରହେଳିକାଗୁଡ଼ିକ ଲୋକମୁଖରେ ପ୍ରଚାର ହେବା ଫଳରେ ହୁଏତ କିଛି ପରିବର୍ତ୍ତିତ / ପରିବର୍ଦ୍ଧିତ ହୋଇଛି, ସେ ବିଷୟରେ ସନ୍ଦେହ ନାହିଁ । ତେବେ ଯାତ୍ରା, ସୁଆଙ୍ଗ, ପାଲା-ଗାଆଣ, କଥକତା ପ୍ରଭୃତି ସମାରୋହମାନଙ୍କରେ ଗ୍ରାମ୍ୟ ମଣିଷମାନେ ଯେଉଁ ଧାରଣା ପୋଷଣ କରନ୍ତି ଏବଂ ତାହା ସହିତ ଲୋକମୁଖରେ ପ୍ରଚାରହେବା ଫଳରେ ଯେ ପରିବର୍ତ୍ତନ ହୋଇଛି, ସେଥିରେ

ପୌରାଣିକ ଚରିତ୍ରର ବିଶେଷତ୍ୱ ଓ ଲୌକିକ ଉପାଦାନହିଁ ଅଧିକ ପରିମାଣରେ ରକ୍ଷିତ ଥାଏ । ତେବେ ଗ୍ରାମ୍ୟଜୀବନରେ ଯେ ପୁରାଣର ପ୍ରଭାବ କେତେ ବ୍ୟାପକ ହୋଇଥିଲା, ତାହା ଏହି ଧରଣର ପ୍ରହେଳିକାଗୁଡ଼ିକରୁ ଜଣା ପଡ଼େ । ବହୁ ସମୟରେ ଅନେକ ପୌରାଣିକ ଚରିତ୍ର ବିଷୟକ ପ୍ରହେଳିକାର ଉତ୍ତର ହୁଏତ ସୁସ୍ପଷ୍ଟ ନ ହୋଇପାରେ, ତେବେ ମଧ୍ୟ ଗ୍ରାମ୍ୟଜୀବନରେ ଏହି ଧରଣର ପ୍ରହେଳିକାଗୁଡ଼ିକର ଉତ୍ତର କୌଣସି ଦ୍ୱିଧା ବା ସଂଶୟ ନ କରି ସାଧାରଣ ଭାବରେ ପ୍ରଚଳିତ ଧାରଣା ସାଙ୍ଗରେ ଦର୍ଶାଯାଇଛି ।

**ଅରୁଣ :-** ପୁରାଣରେ ଅରୁଣ ହେଲେ ଗରୁଡ଼ଙ୍କ ବଡ଼ ଭାଇ । ଅରୁଣର ମାତା ବିନତା ବ୍ୟସ୍ତତା ପାଇଁ ଅରୁଣ ଉରୁହୀନ ଅପୁଷ୍ଟ ହୋଇ ଜନ୍ମଗ୍ରହଣ କରିଥିଲେ । ସେତେବେଳେ ଅରୁଣ ତାଙ୍କର ମାତା ବିନତାଙ୍କୁ ଅଭିଶାପ ଦେଇଥିଲେ ଯେ ଏହି ବ୍ୟସ୍ତତା ପାଇଁ ବିନତା ତାଙ୍କ ସଉତୁଣୀ କଦ୍ରୁର ପାଖରେ ପାଞ୍ଚଶହ ବର୍ଷ ଦାସୀ ହୋଇ ରହିବେ । ଅରୁଣର ଏହି ଅଭିଶାପ କଥା ପ୍ରହେଳିକା ମାଧ୍ୟମରେ ଅତି ସୁନ୍ଦର ଭାବରେ ଚିତ୍ରିତ ହୋଇଛି :

✡ **କେଉଁ ପୁଅ ତା ମାଆକୁ ଅଭିଶାପ ଦେଲା,**
**ଅଦ୍ୟାବଧି ସେଇ ପୁଅ ଜଗତେ ରହିଲା ।**

**ଅଶ୍ୱିନୀକୁମାର ଦ୍ୱୟ :-** ପୁରାଣରେ ଅଛି ଅଶ୍ୱିନୀଙ୍କର ଗର୍ଭରେ ସୂର୍ଯ୍ୟଙ୍କର 'ଅଶ୍ୱିନ' ଓ 'ରେବନ୍ତ' ନାମରେ ଦୁଇଟି ଯାଆଁଳା ସନ୍ତାନ ଜନ୍ମ ହେଲେ । ଏହି ଦୁଇ ଭାଇ ସ୍ୱର୍ଗର ବୈଦ୍ୟ ଥିଲେ । ଉଭୟଙ୍କର ଚିକିତ୍ସାବିଦ୍ୟାରେ ପାରଦର୍ଶିତା ଥିଲା । ତେଣୁ ପ୍ରହେଳିକା ମାଧ୍ୟମରେ ସେମାନଙ୍କର ଚିକିତ୍ସାର କଥା କୁହାଯାଇଛି :-

✡ **ପୁରାଣରେ ଲେଖାଅଛି କେଉଁ କୁମାର ଦ୍ୱୟ,**
**ଯାହା ଦ୍ୱାରା ଚିକିତ୍ସିତ ଦେବ ଦେବରାୟ ।**

**ଉର୍ବଶୀ :-** ଉର୍ବଶୀ ହେଉଛନ୍ତି ସ୍ୱର୍ଗର ଅପ୍ସରା ବା ଅତି ସୁନ୍ଦରୀ ନର୍ତ୍ତକୀ । ଉର୍ବଶୀ ପୁରୁରବାଙ୍କ ରୂପରେ ମୁଗ୍ଧ ହେଲେ । ଫଳରେ ତାଙ୍କର ନାଚର ତାଳଭଙ୍ଗ ହେଲା । ସେତେବେଳେ ସେ ଅଭିଶପ୍ତ ହୋଇ ମର୍ତ୍ତ୍ୟରେ ଜନ୍ମଲାଭ କଲେ । ଦିନବେଳେ ସେ ଅଶ୍ୱିନୀ ରୂପ ଓ ରାତିରେ କାମିନୀରୂପ ଧାରଣ କରିଥିଲେ । ଏହି ସବୁକଥା ଅତି ସୁନ୍ଦର ଭାବରେ ପ୍ରହେଳିକା ମାଧ୍ୟମରେ ପ୍ରତିଫଳିତ ହୋଇଛି :-

✡ **ମୁନି ଅଭିଶାପେ କିଏ ଆସିଲା ଅବନୀ,**
**ଦିବସେ ଅଶ୍ୱିନୀ ହୁଏ, ରାତ୍ରିରେ କାମିନୀ ।**

**ଋଷିଧ୍ୱଜ ମୁନି :-** ପୁରାଣରେ ଋଷିଧ୍ୱଜ ନାମକ ଏକ ମହାନ ଋଷିଙ୍କର ନାମ ଶୁଣାଯାଏ । ସେ ଜମ୍ବୁ ନଦୀର ତୀରରେ ବସି ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରିଥିଲେ ।

✡ ଗୋଲକର ଜମ୍ବୁନଦୀ ତୀରେ ସଦା ବସି,
ଧ୍ୟାନ କରେ ଶ୍ରୀକୃଷ୍ଣଙ୍କୁ କୁହ କେଉଁ ଋଷି ।

**ଏକଲବ୍ୟ :-** ନିଷାଦରାଜା ହିରଣ୍ୟଧନୁଙ୍କର ପୁତ୍ର ଏକଲବ୍ୟ । ଦ୍ରୋଣାଚାର୍ଯ୍ୟ ଏକଲବ୍ୟଙ୍କୁ ଶିଷ୍ୟରୂପେ ଗ୍ରହଣ କରିବାକୁ ମନା କରିଥିଲେ, କିନ୍ତୁ ଏକଲବ୍ୟ ଦ୍ରୋଣାଚାର୍ଯ୍ୟଙ୍କ ମୂର୍ତ୍ତି ସ୍ଥାପନ କରି ଗୁରୁ ବୋଲି ଗ୍ରହଣ କରିଥିଲେ । ଏକଲବ୍ୟ ଧନୁର୍ବିଦ୍ୟାରେ ଅତ୍ୟନ୍ତ ପାରଦର୍ଶୀ ଥିଲେ । ଅର୍ଜୁନଙ୍କଠାରୁ ଏକଲବ୍ୟ ଯେପରି ଧନୁର୍ବିଦ୍ୟାରେ ଆଗେଇ ଯାଇ ପାରିବ ନାହିଁ, ସେଥିପାଇଁ ଦ୍ରୋଣ ଏକଲବ୍ୟକୁ ଶିଷ୍ୟ ହିସାବରେ ଗ୍ରହଣ କରିବାର ପ୍ରତିଶ୍ରୁତି ଦେଇ ତାର ଡାହାଣ ହାତର ବୁଢ଼ା ଆଙ୍ଗୁଳିଟି ଗୁରୁ ଦକ୍ଷିଣା ଦେବାକୁ କହିଲେ । ଏକଲବ୍ୟ ଗୁରୁଦକ୍ଷିଣା ସ୍ୱରୂପ ତାର ଡାହାଣ ହାତର ବୁଢ଼ା ଆଙ୍ଗୁଳିଟି କାଟି ଦେଲେ । ଏକଲବ୍ୟଙ୍କର ଏହି ଗୁରୁଦକ୍ଷିଣା କଥା ସମସ୍ତଙ୍କୁ ଜଣା । ଗ୍ରାମ୍ୟ କବି ପ୍ରହେଳିକା ମାଧ୍ୟମରେ ଏହାର ପରିଚୟ ଦେଇଛନ୍ତି :

✡ ଗୁରୁର ଆଦେଶ କିଏ ମୁଣ୍ଡ ପାତି ନିଏ
ଯେ କରେ ଅଙ୍ଗୁଷ୍ଠ ଛେଦନ ଗୁରୁ ଦକ୍ଷିଣାରେ ।

**କଚ :-** ସେ ହେଉଛନ୍ତି ଦେବଗୁରୁ ବୃହସ୍ପତିଙ୍କର ପୁତ୍ର । ଦୈତ୍ୟଗଣ କଚଙ୍କୁ ଟିକି ଟିକି କରି କାଟି ହତ୍ୟା କରିଥିଲେ । ପୁଣି କଚ ଜୀବନ ପାଇ ଉଠିଲାରୁ ତାକୁ ମାରି ଶିଳରେ ବାଟି ସୁରା ସହିତ ମିଶାଇ ଶୁକ୍ରାଚାର୍ଯ୍ୟଙ୍କୁ ପିଆଇ ଦେଲେ । କିନ୍ତୁ ଶୁକ୍ରାଚାର୍ଯ୍ୟ ତାକୁ (କଚକୁ) ଜୀବିତ କରାଇ ସଞ୍ଜୀବନୀ ମନ୍ତ୍ର ଶିକ୍ଷା ଦେଲେ । ବାରମ୍ବାର ମୃତ୍ୟୁ ପରେ ମଧ୍ୟ କଚ ଜୀବିତ ହୋଇ ଉଠନ୍ତି । ଏହି ଘଟଣା ପ୍ରବାଦ ପ୍ରହେଳିକା ମାଧ୍ୟମରେ ଚମତ୍କାର ଫୁଟି ଉଠିଛି :

✡ କାରେ ମାରି କାଟି ବାଟି କରିଲେ ମିଶ୍ରଣ,
ସୁରା ସଙ୍ଗେ ମିଶାଇ କରାଇଲେ ଭକ୍ଷଣ ।
ବାରମ୍ବାର ଏହିରୂପେ କାଳକେ ଘଟିଲା,
ତଥାପି ସେହି ଲୋକ ଜୀବନ ବଞ୍ଚିଲା ।

**କପିଳ ମୁନି :-** ପୁରାଣରେ କପିଳ ମୁନିଙ୍କର କଥା ଶୁଣାଯାଏ । ସେ ଶିବଙ୍କର ଭକ୍ତ ଥିଲେ । ପୁରାଣର ମୁନିମାନଙ୍କ ମଧ୍ୟରେ କପିଳ ମୁନି ଯେ ଜଣେ ଖ୍ୟାତନାମା ଋଷି ଥିଲେ, ତାହା ପ୍ରହେଳିକା ରଚୟିତାଙ୍କୁ ଅଜଣା ନଥିଲା । ତେଣୁ କପିଳ ମୁନିଙ୍କ ସମ୍ପର୍କରେ କୁହାଯାଇଛି:

✡ ତିନି ବର୍ଣ୍ଣରେ ନାମ ମୋର ମୁନି ନାମରେ ଖ୍ୟାତ
ଅନ୍ତର କାଟିଦେଲେ ଆମ୍ଭେ କଳରେ ପରିଣତ ।
ପିଳ ବୋଲିବେ ମୋତେ କାଟିଲେ ମସ୍ତକ
ଅନ୍ତ ହୀନ ହେଲେ ଆମ୍ଭେ ଶ୍ରୀରାମ ସେବକ ।

**କରାଳ ଦୈତ୍ୟ :-** ମା' କାଳୀ ହେଲେ ଦଶମହାବିଦ୍ୟାଗୁ ଏକ ମହାବିଦ୍ୟା । ଶାକ୍ତମାନଙ୍କ ପାଖରେ ସେ ଆଦ୍ୟାଶକ୍ତିରୂପରେ ପୂଜିତା । ତାଙ୍କର ଚାରିଟି ହାତ । ଗୋଟିଏ ହାତରେ ରହିଛି 'କରାଳ ଦୈତ୍ୟର' କଟା ମୁଣ୍ଡ । କାରଣ ମା' କରାଳ ଦୈତ୍ୟକୁ ବଧ କରିଥିଲେ । ଏହି କଥା ପ୍ରହେଳିକା ମାଧମରେ କୁହା ଯାଇଛି :-

✡ **କାଳୀ ମା'ଙ୍କ ହାତରେ କାହାର ମୁଣ୍ଡ ଅଛି,**
**ଶାସ୍ତ୍ର ଯଦି ଜଣା ଥାଏ କୁହ ବୁଝି ସୁଝି ।**

**ଚିତ୍ରଗୁପ୍ତ :-** ପୁରାଣମତରେ ଧର୍ମରାଜ ଯମ ହେଉଛନ୍ତି ସୂର୍ଯ୍ୟଙ୍କର ପୁତ୍ର । ତାଙ୍କ ହାତରୁ କାହାରି ନିଷ୍କୃତି ନାହିଁ । ଯମରାଜାଙ୍କର ମନ୍ତ୍ରୀ ଥିଲେ ଚିତ୍ରଗୁପ୍ତ । ଚିତ୍ରଗୁପ୍ତ ପାପ ପୁଣ୍ୟର ହିସାବ କିତାବ ରଖୁଥିଲେ । ଚିତ୍ରଗୁପ୍ତଙ୍କର ନାମ ଓ ତାଙ୍କର କାର୍ଯ୍ୟ ସମ୍ପର୍କରେ ପ୍ରହେଳିକା ମାଧମରେ ଶୁଣିବାକୁ ମିଳେ :-

✡ **ଯମରାଜାଙ୍କ ମନ୍ତ୍ରୀ ନାମ ଜଣା ଅଛି କିହେ !**
**ପାପ ପୁଣ୍ୟର ହିସାବ ଯାହା ପାଖରେ ରହେ ।**

**ଜରାସନ୍ଧ :-** ସେ ହେଉଛନ୍ତି ଚନ୍ଦ୍ରବଂଶୀୟ ମଗଧରାଜା ବୃହଦ୍ରଥଙ୍କର ପୁତ୍ର । କାଶୀରାଜାଙ୍କର ଦୁଇ ଜାଆଁଳା କନ୍ୟା ବୃହଦ୍ରଥଙ୍କ ପତ୍ନୀ ଥିଲେ । ପୁତ୍ରଲାଭ ପାଇଁ ମୁନି ପ୍ରଦତ୍ତ ଗୋଟିଏ ଆମ୍ବ ଦୁଇରାଣୀ ଭାଗ କରି ଖାଇଲେ । ଦୁଇ ରାଣୀଙ୍କର ଅର୍ଦ୍ଧଦେହ ଯୁକ୍ତ ଗୋଟିଏ ଗୋଟିଏ ସନ୍ତାନ ହେଲା । ଉଭୟ ରାଣୀ ସନ୍ତାନ ଦୁଇଟିକୁ ରାଜପଥରେ ଫୋପାଡ଼ି ଦେଇ ଆସିଲେ । ଜରା ରାକ୍ଷସୀ ଏହି ଅର୍ଦ୍ଧ ଅଂଶ ଦୁଇଟିକୁ ଯୋଡ଼ି ଦେଲାରୁ ତାହା ଗୋଟିଏ ଶିଶୁରେ ପରିଣତ ହେଲା । ଏହି ପୁଅ ପିଲାଟି 'ଜରାସନ୍ଧ' ନାମରେ ପରିଚିତ । ଜରାସନ୍ଧର ଜନ୍ମଦାତ୍ରୀ ଯେ ଦୁଇରାଣୀ, ତାହା ପ୍ରହେଳିକା ରଚୟିତାଙ୍କୁ ଅଜଣା ନୁହେଁ । ତେଣୁ ଜରାସନ୍ଧର ଜନ୍ମବୃତ୍ତାନ୍ତକୁ ଆଧାର କରି ପ୍ରହେଳିକା ତିଆରି ହୋଇଛି :

✡ **ଦୁଇରାଣୀ ଗର୍ଭରୁ ସନ୍ତାନ ଗୋଟିଏ ଜନ୍ମିଲା,**
**କି ନାମ ତାର ଥିଲା ବୁଝି ବିଚାରି କୁହ ଭଲା ।**

**ତିଳୋତ୍ତମା :-** ପୁରାଣରେ କଥିତ ଅଛି ଯେ , ସୁନ୍ଦ-ଉପସୁନ୍ଦ ନାମରେ ଦୁଇଟି ଦୈତ୍ୟ ଭ୍ରାତାଙ୍କର ଅତ୍ୟାଚାରରେ ସ୍ୱର୍ଗରାଜ୍ୟ ଯେତେବେଳେ ଦେବତାମାନଙ୍କର ହାତଛଡ଼ା ହେବାକୁ ବସିଲା, ସେ ସମୟରେ ଦେବତାଗଣ ଏହି ଦୁଇ ଭାଇଙ୍କୁ ଦମନ କରିବା ପାଇଁ ବ୍ରହ୍ମାଙ୍କ ପାଖକୁ ଗଲେ । ବ୍ରହ୍ମା ବିଶ୍ୱକର୍ମାଙ୍କ ଦ୍ୱାରା ବିଶ୍ୱର ତିଳ ତିଳ ସୌନ୍ଦର୍ଯ୍ୟ ମିଶ୍ରିତ ଏକ ଅପରୂପା ସୁନ୍ଦରୀ ନାରୀ ସୃଷ୍ଟି କଲେ । ସେଇ ନାରୀହିଁ 'ତିଳୋତ୍ତମା' । ତାର ଅସାଧାରଣ ସୌନ୍ଦର୍ଯ୍ୟ ଦେଖି ତାକୁ ପାଇବା ପାଇଁ କାମ ଉନ୍ମତ୍ତ ହୋଇ ସୁନ୍ଦ-ଉପସୁନ୍ଦ ନିଜ ନିଜ ମଧରେ

ମାଡ଼ମରାମରି ଲାଗିଲେ ଏବଂ ଉଭୟେ ମଲେ । ପୁରାଣର ସେଇ ସୁନ୍ଦରୀ ତିଳୋତ୍ତମାର କଥା ପ୍ରହେଳିକା ମାଧ୍ୟମରେ ବ୍ୟଞ୍ଜିତ ହୋଇଛି :

✡ **ଦୈତ୍ୟ ଭ୍ରାତାଦ୍ୱୟଙ୍କୁ ବଧ କଲେ କେଉଁଜନ**
**ପୁରାଣେ ବର୍ଣ୍ଣିତ ଯେଉଁ ନାରୀଙ୍କୁ ଜନ୍ମ ଦେଲେ ଦେବଗଣ ।**

**ଦେବକୀ :-** ସେ ହେଲେ ଶ୍ରୀକୃଷ୍ଣଙ୍କର ମାତା । କିନ୍ତୁ ଦେବକୀଙ୍କ ଅଷ୍ଟମ ଗର୍ଭଜାତ ସନ୍ତାନ କୃଷ୍ଣଙ୍କୁ ଯଶୋଦାଙ୍କ ପାଖରେ ରଖି ଦେଇ ଆସିଥିଲେ ବାସୁଦେବ । ବୃନ୍ଦାବନରେ କୃଷ୍ଣ ପାଳିତା ମାତା ଯଶୋଦାଙ୍କ ପାଖରେ ମନୁଷ୍ୟ ହୋଇଥିଲେ । ଯଶୋଦାଙ୍କ ସ୍ନେହର ଗାଥା ବୈଷ୍ଣବ ସାହିତ୍ୟରେ ଶୁଣିବାକୁ ମିଳେ । କିନ୍ତୁ କୃଷ୍ଣଙ୍କର ପ୍ରକୃତ ମାତା ଯେ ଦେବକୀ, ତାହା ପ୍ରହେଳିକା ରଚୟିତାଙ୍କୁ ଅଜଣା ନାହିଁ । ଗ୍ରାମ୍ୟ କବି ଦେବକୀଙ୍କ ସମ୍ପର୍କରେ କୁହନ୍ତି :-

✡ **ଶ୍ରୀକୃଷ୍ଣ ମାତାଙ୍କ ନାମ କିଏ କୁହ ଜାଣେ ।**
**ଦ୍ୱାପରଯୁଗରେ ଯେବେ ଆସନ୍ତି ବୃନ୍ଦାବନେ ।**

**ନଳରାଜା :-** ପୁରାଣରେ ନଳରାଜାଙ୍କ କାହାଣୀ ଶୁଣାଯାଏ । ନଳ ଅତ୍ୟନ୍ତ ଧାର୍ମିକ ରାଜା ଥିଲେ । ନଳରାଜାଙ୍କର ପତ୍ନୀ ହେଲେ ଦମୟନ୍ତୀ । ବନବାସ କାଳରେ ନଳରାଜା ସ୍ତ୍ରୀକୁ ବଣରେ ଛାଡ଼ି ଚାଲିଯାଇଥିଲେ । ମାତ୍ର ବଣ ମଧ୍ୟରେ ନଳରାଜାଙ୍କୁ କର୍କୋଟକ ନାଗ ଦଂଶନ କଲା । ସେ ଅଜ୍ଞାନ ହୋଇ ପଡ଼ିଲେ । ପୁରାଣର ସେଇ ନଳରାଜାଙ୍କ ସମ୍ପର୍କରେ ପ୍ରହେଳିକା ରଚିତ ହୋଇଛି :

✡ **କେଉଁ ରାଜା ନିଜ ଭାର୍ଯ୍ୟାକୁ ବଣରେ ଛାଡ଼ିଗଲେ,**
**ନାଗ ଦଂଶନରେ ବଣରେ ଚେତନା ଶୂନ୍ୟ ହେଲେ ।**

**ନାରଦ :-** ବ୍ରହ୍ମବୈବର୍ତ୍ତ ପୁରାଣ ଅନୁସାରେ ନାରଦ ବ୍ରହ୍ମାଙ୍କର କଣ୍ଠରୁ ଜନ୍ମ ହୋଇଥିଲେ । ପିତା ବ୍ରହ୍ମା ନାରଦଙ୍କୁ ଅବିବାହିତ ରହିବାକୁ ବାରଣ କଲେ । ମାତ୍ର ନାରଦ ପିତାଙ୍କ କଥାରେ ରାଜି ହେଲେ ନାହିଁ । ତେଣୁ ବ୍ରହ୍ମା ନାରଦଙ୍କୁ ଅଭିଶାପ ଦେଲେ । ପୁତ୍ର ହୋଇ ମଧ୍ୟ ପିତାର ଅଭିଶାପକୁ ନାରଦ ଚିରକାଳ ଭୋଗ କରିଥିଲେ । ଏହି କଥା ପ୍ରହେଳିକା ମାଧ୍ୟମରେ ସୂଚିତ ହୋଇଛି :

✡ **ପିତା ହୋଇ କେଉଁ ପୁତ୍ରକୁ ଅଭିଶାପ ଦେଲେ**
**ଚିରକାଳ ସେଇ ଶାପ ପୁତ୍ର ଭୋଗିଥିଲେ ।**

ପୁରାଣ ଅନୁସାରେ ନାରଦ ପିତାଙ୍କର ଅଭିଶାପ ଫଳରେ ଗନ୍ଧର୍ବରୂପରେ ଜନ୍ମଗ୍ରହଣ କରିଥିଲେ । ଗନ୍ଧର୍ବ ସନ୍ତାନ ଆଶାରେ ଶିବଙ୍କୁ ତପସ୍ୟା କରିଥିଲେ । ଶିବ ସନ୍ତୁଷ୍ଟ ହୋଇ ନାରଦଙ୍କୁ ବର ଦେଲେ ଯେ ନାରଦ ଶିବଙ୍କ ଗର୍ଭରେ ପୁତ୍ର ହୋଇ ଜନ୍ମିବେ । ଶିବଙ୍କର ସେଇ ଗର୍ଭର କଥା ପ୍ରହେଳିକା ମାଧ୍ୟମରେ ଚମତ୍କାର ଭାବରେ କୁହାଯାଇଛି :-

✡ **ମହାଦେବଙ୍କ ଗର୍ଭ ହେଲା ପୁରାଣରେ ଅଛି,**
**କୁହ ଭଲା ସେଇ ଗର୍ଭରେ କିଏ ଜନ୍ମିଅଛି ।**

**ପୌଣ୍ଡ୍ର ବାସୁଦେବ :-** କାରୁଷ୍ୟ ଦେଶର ରାଜା ହେଲେ ପୌଣ୍ଡ୍ର ବାସୁଦେବ । ସେ ଥରେ ଦ୍ୱାରକାକୁ ଶ୍ରୀକୃଷ୍ଣଙ୍କ ପାଖକୁ ଦୂତ ପଠେଇ ନିଜକୁ ଭଗବାନ ବୋଲି ପରିଚୟ ଦେଲେ ଏବଂ କୃଷ୍ଣଙ୍କୁ ତାଙ୍କର ଆରାଧନା କରିବା ପାଇଁ କହିଲେ । ଏହି କଥା ଶୁଣି କୃଷ୍ଣ ରାଗରେ ଜର୍ଜରିତ ହୋଇ ତାଙ୍କୁ ଆକ୍ରମଣ କରି ହତ୍ୟା କଲେ । ପୌଣ୍ଡ୍ର ବାସୁଦେବ ଗର୍ବରେ ନିଜକୁ କୃଷ୍ଣ ଅପେକ୍ଷା ଶ୍ରେଷ୍ଠ ବୋଲି କହିବା ହେତୁ ତାଙ୍କର ମୃତ୍ୟୁ ହେଲା । ଏହି ଗର୍ବିତ କଥା ପ୍ରହେଳିକା ମାଧମରେ ଶୁଣାଯାଏ :

✡ **କେଉଁ ରାଜା ନିଜକୁ କହେ ଭଗବାନ,**
**ଶ୍ରୀକୃଷ୍ଣ ଠାରୁ ଶ୍ରେଷ୍ଠ ବୋଲି କରେ ପ୍ରକାଶନ ।**

**ବଶିଷ୍ଠ :-** ପୁରାଣରେ ଅଛି ଯେ ଅରୁନ୍ଧତୀ ଶୂଦ୍ରକନ୍ୟା ଅକ୍ଷମାଳା ରୂପେ ଜନ୍ମ ହୋଇ ବଶିଷ୍ଠଙ୍କ ସହିତ ବିବାହ କରିଥିଲେ । ପୁଣି ବଶିଷ୍ଠ ପତ୍ନୀ ଅରୁନ୍ଧତୀ ସ୍ୱାମୀଙ୍କ ସହିତ ସହମୃତା ହୋଇଥିଲେ । ବଶିଷ୍ଠ ମୁନି ସେହି ଚଣ୍ଡାଳ କନ୍ୟା ଅକ୍ଷମାଳାକୁ ବିବାହ କରିବା ଓ ଅରୁନ୍ଧତୀର ସ୍ୱାମୀ ସହିତ ସହମୃତ୍ୟୁ ହେବାର କଥାକୁ ଆଧାର କରି ପ୍ରହେଳିକା ରଚିତ ହୋଇଛି

✡ **କେଉଁ ଋଷି ଚଣ୍ଡାଳର କନ୍ୟା ବାହା ହେଲେ,**
**ଯାହା ସ୍ତ୍ରୀ ସ୍ୱାମୀର ସହମୃତା ହୋଇଥିଲେ ।**

**ବିନତା :-** ପୁରାଣରେ ବର୍ଣ୍ଣିତ ବିନତା ହେଲେ ଦକ୍ଷ ପ୍ରଜାପତିଙ୍କ କନ୍ୟା ଓ କାଶ୍ୟପଙ୍କ ପତ୍ନୀ । କାଶ୍ୟପଙ୍କ ବରରେ ବିନତା ଦୁଇଟି ଅଣ୍ଡା ପ୍ରସବ କରନ୍ତି । ବିନତାର ସଉତୁଣୀ କଦ୍ରୁର ପୁତ୍ର ଈର୍ଷାତୁରା ହେବାରୁ ବିନତା ଧୈର୍ଯ୍ୟହରା ହୋଇ ଗୋଟିଏ ଅଣ୍ଡା ଭାଙ୍ଗିଦେଲାରୁ ପୁତ୍ର ଅରୁଣର ଜନ୍ମ ହେଲା । ବିନତାଙ୍କର ଏହି କାର୍ଯ୍ୟପାଇଁ ଅରୁଣ ମା ବିନତାଙ୍କୁ କଦ୍ରୁର ଦାସୀ ହୋଇ ରହିବୁ ବୋଲି ଅଭିଶାପ ଦେଲେ । ଆହୁରି ୫୦୦ ବର୍ଷପରେ ଦ୍ୱିତୀୟ ଅଣ୍ଡାରୁ ଗରୁଡ଼ ଜନ୍ମିଲେ ଏବଂ ଗରୁଡ଼ ଅମୃତ ଆଣି ମାତା ବିନତାଙ୍କୁ ଶାପମୁକ୍ତ କଲେ । ବିନତାଙ୍କର ଏହି ଅଭିଶାପର କଥା ପ୍ରହେଳିକା ରଚୟିତା ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି :-

✡ **ଲୋଭରେ କେଉଁ ନାରୀ ସଉତୁଣୀର ଦାସୀ ହେଲା,**
**ପୁତ୍ର ହୋଇ ମାତାର ଦାସୀତ୍ୱ ମୋଚନ କରିଲା ।**

**ବିଶ୍ୱକର୍ମା :-** ବିଶ୍ୱକର୍ମା ହେଲେ ଶିଳ୍ପ ଓ ଭାସ୍କର ଏବଂ ଯନ୍ତ୍ରର ଦେବତା । ପୁଣି ବେଦରେ ଏହାଙ୍କୁ ପୃଥିବୀର ସୃଷ୍ଟିକର୍ତ୍ତା ବୋଲି କୁହାଯାଇଛି । ବିଶ୍ୱର ସୁନ୍ଦରୀ ତିଳୋତ୍ତମାଙ୍କୁ

ସେ ସୃଷ୍ଟି କରିଥିଲେ । ବିଶ୍ୱକର୍ମାଙ୍କର ଶିଳ୍ପ ନୈପୁଣ୍ୟର କଥା ଗ୍ରାମ୍ୟ କବି ପ୍ରହେଳିକା ମାଧ୍ୟମରେ ଖଞ୍ଜି ଦେଇ ଯାଇଛନ୍ତି :-

✡ **ବ୍ରହ୍ମାଙ୍କ ନାଭିପଦ୍ମରୁ କିଏ ଜନ୍ମ ନେଲା,**
**କାରୁକାର୍ଯ୍ୟରେ ଯିଏ ଅଭିଜ୍ଞ ନ ଥିଲା ।**

**ବିଶ୍ୱାମିତ୍ର :-** ସେ ଜଣେ ବିଖ୍ୟାତ ରାଜର୍ଷି ଥିଲେ । କୌଶିକୀ ନଦୀ ତୀରରେ କ୍ଷତ୍ରିୟ ବିଶ୍ୱାମିତ୍ର କଠୋର ତପସ୍ୟା କରିଥିଲେ । ସେହି ତପସ୍ୟା ଫଳରେ ସେ ବ୍ରାହ୍ମଣ ରୂପେ ପରିଚିତ ହେଲେ । ସେ କ୍ଷତ୍ରିୟରୁ ବ୍ରାହ୍ମଣ ହେବା ସମ୍ପର୍କରେ ଗ୍ରାମ୍ୟକବି ପ୍ରହେଳିକା ମାଧ୍ୟମରେ କହିଛନ୍ତି :

✡ **କେଉଁ କ୍ଷତ୍ରିୟ ତପସ୍ୟା ବଳେ ବ୍ରାହ୍ମଣ ହୋଇଲେ**
**ପୁରାଣରେ ଲେଖା ଅଛି ଜାଣିବ ପଢ଼ିଲେ ।**

**ଭଗୀରଥ :-** ପୁରାଣ ମତରେ ଭଗୀରଥ ସୂର୍ଯ୍ୟ ବଂଶରେ ଜନ୍ମ ଗ୍ରହଣ କରିଥିଲେ । ଭଗୀରଥ କପିଳଙ୍କ ଅଭିଶାପରେ ଭସ୍ମ ହୋଇଥିବା ଷାଠିଏ ହଜାର ପିତୃପୁରୁଷଙ୍କ ଉଦ୍ଧାର ପାଇଁ କଠୋର ତପସ୍ୟା କଲେ । ତାଙ୍କ ତପସ୍ୟାରେ ପ୍ରୀତ ହୋଇ ବ୍ରହ୍ମା ବଂଶରକ୍ଷା ଓ ପିତୃପୁରୁଷଙ୍କ ଉଦ୍ଧାର ପାଇଁ ବରସ୍ୱରୂପ ଗଙ୍ଗାଙ୍କୁ ଭଗୀରଥଙ୍କ ଅନୁଗାମୀ ହେବାକୁ ନିବେଦନ କରିଥିଲେ । ଗଙ୍ଗାଙ୍କର ଗୋଟିଏ ଧାରା ଭଗୀରଥଙ୍କ ପଛେ ପଛେ ଅଗ୍ରସର ହୋଇଥିଲା । ଏହି ଧାରାଟିର ନାମ ଭାଗୀରଥୀ । ଦିବ୍ୟରଥ ଚଢ଼ି ଭଗୀରଥ ପଥ ଦେଖାଇ ଗଙ୍ଗାଙ୍କୁ ନେଇ ଆସିଲେ । ଗଙ୍ଗାଙ୍କର ଜଳସ୍ପର୍ଶରେ ତାଙ୍କର ପିତୃ ପୁରୁଷଗଣ ଉଦ୍ଧାର ହେଲେ । ପୁରାଣର ଏହି ଭଗୀରଥ ସମ୍ବନ୍ଧରେ ଗ୍ରାମ୍ୟ ପ୍ରହେଳିକା ରଚୟିତା ନିଜସ୍ୱ ମତବ୍ୟକ୍ତ କରିଛନ୍ତି :-

✡ **ଏକ ମା' ଗର୍ଭରୁ ଜନ୍ମ ସମସ୍ତଙ୍କୁ ଗୋଚର,**
**ଦୁଇ ମା' ଗର୍ଭରୁ ଜନ୍ମ କୁହ କେଉଁ ଜନଙ୍କର ।**

**ଭୃଗୁ ମୁନି :-** ବିଷ୍ଣୁ-ପୁରାଣ ମତରେ ଭୃଗୁ ବ୍ରହ୍ମାଙ୍କର ମାନସପୁତ୍ର । ସୃଷ୍ଟିରକ୍ଷା ପାଇଁ ଭୃଗୁ ଘୁମନ୍ତ ନାରାୟଣଙ୍କ ଛାତିରେ ଗୋଇଠା ମାରିଲେ । ନାରାୟଣଙ୍କର ନିଦ୍ରା ଭଙ୍ଗ ହେଲା । ଭୃଗୁଙ୍କୁ କଷ୍ଟ ହୋଇଛି ମନେ କରି ସେ ନ ରାଗି ଭୃଗୁଙ୍କର ପାଦ ଘସି ଦେବାକୁ ଲାଗିଲେ । ସେହି ସମୟରୁ ବିଷ୍ଣୁରୂପୀ ନାରାୟଣଙ୍କ ଛାତିରେ ଭୃଗୁଙ୍କର ପଦଚିହ୍ନ ମୁଦ୍ରିତ ହୋଇ ରହିଛି । ଭୃଗୁଙ୍କ ଏହି କଥା ଗ୍ରାମ୍ୟକବି ପ୍ରହେଳିକାରେ ପ୍ରକାଶ କରିବାକୁ ଛାଡ଼ି ନାହାନ୍ତି :

✡ **ନାରାୟଣଙ୍କ ବକ୍ଷରେ କିଏ ପାଦ ଥାପିଥିଲେ,**
**ପୁରାଣ ଯୁଗର କଥା କୁହ ଆହେ ଜଣା ଥିଲେ ।**

**ଶିଶୁପାଳ :-** ସେ ଶ୍ରୀକୃଷ୍ଣଙ୍କର ପିଉସୀ ପୁଅ ଭାଇ । ଜରାସନ୍ଧଙ୍କ ପାଖରେ ପାଳିତ ହୋଇଥିଲେ । ସେ ଜନ୍ମରୁ ଅତ୍ୟନ୍ତ କୃଷ୍ଣବିରୋଧୀ ଥିଲେ । ଶ୍ରୀକୃଷ୍ଣଙ୍କୁ ଦର୍ଶନ ମାତ୍ରେ ତାଙ୍କର

ଦୁଇ ହାତ ଖସି ପଡ଼ିଥିଲା ଏବଂ ଶ୍ରୀକୃଷ୍ଣଙ୍କର ସୁଦର୍ଶନ ଚକ୍ର ଦ୍ୱାରା ତାଙ୍କର ମୃତ୍ୟୁ ଘଟିଥିଲା । ଶିଶୁପାଳର ଏହି ପରିଚୟ ପ୍ରହେଳିକା ମାଧମରେ ଫୁଟି ଉଠିଛି :-

✡ **ଶ୍ରୀକୃଷ୍ଣ ଦର୍ଶନେ ଯାର ଦୁଇ ହାତ ଖସେ,**
**କୃଷ୍ଣ ନିନ୍ଦା କରି ସେହୁ ଧ୍ୱଂସ ହେଲା ଶେଷେ ।**
**କହ ଭଲା ସେଇ ଜନର କିସ ନାମ ଥିଲା,**
**ମୃତ୍ୟୁ ଅନ୍ତେ ବୈକୁଣ୍ଠରେ ସ୍ଥାନ ସେ ପାଇଲା ।**

**ରାଜା ସୁରଥ :-** ରାଜା ସୁରଥ ଚନ୍ଦ୍ରବଂଶର ଏକ ବିଖ୍ୟାତ ରାଜା । ସେ ଦାନଶୀଳ, ବୀର, ସତ୍ୟବାଦୀ ଓ ଅତ୍ୟନ୍ତ ଦେବୀଭକ୍ତ ଥିଲେ । ଏହାଙ୍କ ଦ୍ୱାରା ପ୍ରଥମେ ଦୁର୍ଗାପୂଜା ପ୍ରଚଳିତ ହୋଇଥିଲା ବୋଲି ପ୍ରହେଳିକାରେ ପ୍ରକାଶ ପାଇଛି ।

✡ **ସର୍ବ ପ୍ରଥମେ କେଉଁ ରାଜା ଦୁର୍ଗାପୂଜା କଲେ,**
**ଏକଲକ୍ଷ ଜୀବ ବଳିଦାନ କରାଇଣ ଥିଲେ ।**

**ହରିଶ୍ଚନ୍ଦ୍ରଃ-** ସୂର୍ଯ୍ୟବଂଶର ରାଜା ତ୍ରିଶଙ୍କରଙ୍କର ପୁତ୍ର ଥିଲେ ହରିଶ୍ଚନ୍ଦ୍ର । ହରିଶ୍ଚନ୍ଦ୍ରଙ୍କର ସ୍ତ୍ରୀ ଶୈବ୍ୟା ଏବଂ ପୁତ୍ର ରୋହିତାଶ୍ୱ । ସେ ଅତ୍ୟନ୍ତ ଧାର୍ମିକ ଓ ଦାନଶୀଳ ରାଜା ହିସାବରେ ବିଖ୍ୟାତ । ଦେଣା ପରିଶୋଧ ପାଇଁ ସେ ତାଙ୍କର ସ୍ତ୍ରୀ ଓ ପୁତ୍ର ଉଭୟଙ୍କୁ ବିକ୍ରୟ କରିଥିଲେ । ପ୍ରହେଳିକା ମାଧମରେ ରାଜା ହରିଶ୍ଚନ୍ଦ୍ରଙ୍କର ସେହି ମହନୀୟତାର କଥା ସୁନ୍ଦର ଭାବରେ କୁହାଯାଇଛି :-

✡ **ସ୍ତ୍ରୀ ପୁତ୍ର ବିକ୍ରି କଲେ ଋଣ ଶୁଝିବାରେ,**
**କିଏ ସେଇ ରାଜା ଥିଲେ କୁହ ଏ ସଂସାରେ ।**

ଆଲୋଚିତ ପ୍ରହେଳିକାଗୁଡ଼ିକ ମାଧମରେ ରାମାୟଣ, ମହାଭାରତ ଓ ପୁରାଣର ଚରିତ୍ରଗୁଡ଼ିକର ଗୁଣଗତ ବୈଶିଷ୍ଟ୍ୟ ଚମତ୍କାର ଭାବରେ ଧରା ପଡ଼ିଛି । ତତ୍‌ସଙ୍ଗେ ସଙ୍ଗେ ଗ୍ରାମ୍ୟ କବିଙ୍କର ଏହିସବୁ ଚରିତ୍ର ପ୍ରତି ସାଧାରଣ ଜ୍ଞାନ ବା ଧାରଣା ଯେ କେତେ ପରିମାଣରେ ଥିଲା ତାହା ମଧ୍ୟ ବୁଝାଯାଏ । ରାମାୟଣ, ମହାଭାରତ ଓ ପୁରାଣର ଯେଉଁ ସମସ୍ତ ଚରିତ୍ର ଗ୍ରାମ୍ୟ ମନୁଷ୍ୟମାନଙ୍କ ପାଖରେ ଅତି ପରିଚିତ ବା ପ୍ରିୟ, କେବଳ ମାତ୍ର ସେଇ ସବୁ ଚରିତ୍ର ମାଧମରେ ପ୍ରହେଳିକାଗୁଡ଼ିକ ରଚିତ । ଏଥିରୁ ଏଇୟା ବୁଝାଯାଏ ଯେ ଗ୍ରାମବାସୀମାନଙ୍କର ପୌରାଣିକ ଚରିତ୍ର ସମ୍ପର୍କରେ ଜାଣିବାର ଆକାଂକ୍ଷା ଓ କୌତୁହଳ କେତେ ପରିମାଣରେ ଥିଲା ।

**ଦେବଦେବୀ :-** ମନୁଷ୍ୟର ଆରାଧ୍ୟ ଦେବତା ଓ ଦେବୀ ସମ୍ପର୍କରେ କୌତୁହଳର ସୀମା ନାହିଁ । ଫଳରେ ପୌରାଣିକ ଦେବତା ଓ ଦେବୀମାନଙ୍କ ଚରିତ୍ରର ଜନ୍ମ ଓ ସେମାନଙ୍କର ପରିଚୟ ସମ୍ପର୍କରେ ଯେଉଁ ବିଶେଷତ୍ୱ ରହିଛି, ସେ ସମ୍ପର୍କରେ ବହୁ ପ୍ରହେଳିକାର ସୃଷ୍ଟି

ହୋଇଛି । ରାମାୟଣ, ମହାଭାରତ ଓ ପୁରାଣରେ ଯେଉଁସବୁ ଦେବତା ଓ ଦେବୀମାନଙ୍କ ସମ୍ପର୍କରେ ଉଲ୍ଲେଖ କରାଯାଇଚି କିମ୍ବା ଯେଉଁ ଦେବତା ଓ ଦେବୀ ମାନେ ଗ୍ରାମାଞ୍ଚଳରେ ଅଧିକ ପୂଜିତ ହୁଅନ୍ତି, ସେମାନଙ୍କ ସମ୍ବନ୍ଧରେ ପ୍ରହେଳିକା ଶୁଣାଯାଏ । ଦେବ-ଦେବୀ ବିଷୟକ ପ୍ରହେଳିକା ମାଧମରେ ପଲ୍ଲୀବାସୀଙ୍କର ପୌରାଣିକ ଜ୍ଞାନ ଯେତେ ନ ଅଛି ତା' ଠାରୁ ବେଶୀ ମିଶ୍ରିତ ହୋଇଛି ସେମାନଙ୍କର କଳ୍ପନା । ଫଳରେ ଲୋକମାନସର ଧାରଣା ପ୍ରସୂତ ଦେବଦେବୀ ବିଷୟକ ପ୍ରହେଳିକାଗୁଡ଼ିକ ଚମତ୍କାର ଭାବରେ ବର୍ଣ୍ଣିତ ହୋଇଛି । ବିଭିନ୍ନ ଦେବଦେବୀ ଦେଖିବାକୁ କିପରି, କିପରି ଭାବରେ ସେମାନେ ପୂଜିତ ହୁଅନ୍ତି, ସେମାନଙ୍କର ଗୁଣାବଳୀ ବା ଗୁଣାଗୁଣ କ'ଣ, ଏହି ସମସ୍ତ ଦିଗ ସମୂହ ସମ୍ପର୍କରେ ପ୍ରହେଳିକା ରଚୟିତାଗଣ ଗ୍ରାମାଞ୍ଚଳର ପ୍ରଚଳିତ ବିଶ୍ୱାସ ଓ ଧାରଣାର ବଶବର୍ତ୍ତୀ ହୋଇ ସୁନ୍ଦର ଭାବେ ପ୍ରହେଳିକା ମାଧମରେ ବର୍ଣ୍ଣନା କରିଛନ୍ତି । ଏମାନେ ପ୍ରତ୍ୟେକେହିଁ ଗ୍ରାମାଞ୍ଚଳର ବା ପଲ୍ଲୀସମାଜର ଆରାଧ୍ୟ ଦେବତା । ଏହି ସବୁ ଦେବତାଙ୍କ ସମ୍ପର୍କରେ ମନୁଷ୍ୟର ଧାରଣା ଏବଂ କଳ୍ପନା ମିଶ୍ରିତ ହୋଇ ଏହି ଧରଣର ପ୍ରହେଳିକାଗୁଡ଼ିକ ମନୁଷ୍ୟର କୌତୁହଳ ନିବୃତ୍ତ କରିବାକୁ ସମର୍ଥ ହୋଇଛି । ଏହାହିଁ ଦେବଦେବୀ ବିଷୟକ ପ୍ରହେଳିକାଗୁଡ଼ିକର ସାର୍ଥକତା ।

**ଭଗବାନ ବା ଈଶ୍ୱର :-** ଭଗବାନ ବା ଈଶ୍ୱରଙ୍କ ସମ୍ପର୍କରେ ମନୁଷ୍ୟର ଯେଉଁ ଧାରଣା, ତାକୁ କେନ୍ଦ୍ର କରି ଭଗବାନ ବା ଈଶ୍ୱର ବିଷୟକ ପ୍ରହେଳିକା ରଚିତ ହୋଇଛି । ଭଗବାନ ବା ଈଶ୍ୱରଙ୍କୁ ମାନିବା ବା ନମାନିବା ମନୁଷ୍ୟର ଇଚ୍ଛାଧୀନ କିମ୍ବା ଭଗବାନଙ୍କୁ ପିତା ବୋଲି ସମ୍ବୋଧନ କରିବା ବା ସେ ଯେ ସର୍ବଶକ୍ତିମାନ ଓ ସମସ୍ତଙ୍କର ଆରାଧ୍ୟ ବୋଲି ପୂଜିତ, ପ୍ରହେଳିକା ମାଧମରେ ଏହି ସମସ୍ତ ପ୍ରସଂଗ ସୁନ୍ଦର ଭାବରେ ବର୍ଣ୍ଣିତ :

✡ **ଚାରି ଅକ୍ଷରରେ ନାମ ସବୁ ଲୋକ ଜାଣେ,**
**ଭରଣ ପୋଷଣ ପାଇଁ ସବୁ ଲୋକ ମାନେ ।**
**ଦ୍ୱିତୀୟ ଅକ୍ଷର ମାନେ ଗତିଦାତା ହୁଏ,**
**ସର୍ବଶକ୍ତିମାନ ସେ ଯେ କୁହ କିଏ ହୁଏ ।**

**ବ୍ରହ୍ମା-ଦୂର୍ଗା :-** ବ୍ରହ୍ମା ହେଲେ ସୃଷ୍ଟିକର୍ତ୍ତା । ପୁରାଣରେ ବ୍ରହ୍ମାଙ୍କର ଚାରି ହାତ ଓ ପଞ୍ଚ ମୁଖ ସମ୍ପର୍କରେ କୁହାଯାଇଛି । ବ୍ରହ୍ମାଙ୍କର ଏହି ରୂପ ସାଧାରଣ ମନୁଷ୍ୟ ମନରେ କୌତୁହଳ ସୃଷ୍ଟି କରିଛି । ପୁଣି ଦୁର୍ଗା ହେଲେ ମହାଦେବଙ୍କର ପତ୍ନୀ । ବ୍ରହ୍ମାଙ୍କୁ ସୃଷ୍ଟିର ଆଦି ଦେବତା କୁହାଯାଏ ଏବଂ ଦୁର୍ଗା ଦଶଭୁଜା ମାତୃରୂପରେ ପୂଜିତା । ଏହି ଧାରଣା ଓ କଳ୍ପନାର ବଶବର୍ତ୍ତୀ ହୋଇ ବ୍ରହ୍ମା-ଦୂର୍ଗାଙ୍କୁ ଏକାଠି କରି ସୁନ୍ଦର ଭାବରେ ପ୍ରହେଳିକା ମାଧମରେ ବର୍ଣ୍ଣନା କରାଯାଇଛି :-

✡ ଚାରିଦେବ ଉପବିଷ୍ଟ ହୋଇ ବିରାଜନ୍ତି,
ଗଣିଲେ ପାଞ୍ଚପଦ ତିନିପେଟ ହୁଅନ୍ତି ।
ନଅଟି ମସ୍ତକ ଆଉ ବାହୁ ଚୌଦ ଥାନ
ଉଣେଇଶ ପୟର ଅଷ୍ଟାଦଶ କାନ ।

**ନାରାୟଣ :-** ନାରାୟଣ ସମସ୍ତଙ୍କର ଘରେ ପୂଜିତ ହୁଅନ୍ତି ଏବଂ ସେ ହେଉଛନ୍ତି ନରନାରୀମାନଙ୍କର ଆଶ୍ରୟସ୍ଥଳ । ଏହି ଦେବତାଙ୍କୁ ସ୍ମରଣ କଲେ ମନୁଷ୍ୟ ଭବସଂସାରରୁ ମୁକ୍ତିଲାଭ କରି ଥାଏ । ନାରାୟଣଙ୍କୁ ପ୍ରହେଳିକା ମାଧ୍ୟମରେ ଏହିପରି ଭାବରେ ବ୍ୟକ୍ତ କରାହୋଇଛି :-

✡ ଆଦ୍ୟ ଅକ୍ଷରରେ କହିବି 'ନା' ଶେଷ ଅକ୍ଷରରେ କହିବ 'ଣ',
ନିରାକାର ନିମସ୍ତକ ଏଇ ଭେଦ ମାତ୍ର ଜାଣ ।
ମଝିରେ ଅକ୍ଷର ରାୟ ବୋହିଛି ତୁମକୁ,
ଯାହାର ସ୍ମରଣେ ଜୀବ ଯାଏ ଭବ ପାରକୁ ।

ପୁଣି କେତେ ଅଞ୍ଚଳରେ ନାରାୟଣଙ୍କୁ ସରସ୍ୱତୀଙ୍କ ପତି ବୋଲି କହନ୍ତି :-

✡ ସରସ୍ୱତୀଙ୍କ ସ୍ୱାମୀଙ୍କ ନାଁ ଯିଏ କହି ପାରେ,
ଜାଣିବି ତାହାର ଭକ୍ତି ରହିଛି ଉଚ୍ଚରେ ।

**ଶାଳଗ୍ରାମ ଶିଳା :-** ବିଷ୍ଣୁଙ୍କର ମୂର୍ତ୍ତିରୂପରେ ପରିଗଣିତ ଶାଳଗ୍ରାମ-ଶିଳା ଛିଦ୍ରଯୁକ୍ତ ଗୋଲାକାର ପ୍ରସ୍ତରଖଣ୍ଡ । କିନ୍ତୁ ତାକୁ 'ନାରାୟଣ' ରୂପରେ ଘରେ ଘରେ ପୂଜା କରା ଯାଏ । ଏହି ଧରଣର ପ୍ରହେଳିକା ଅତ୍ୟନ୍ତ କୌତୁକପ୍ରଦ ହୋଇ ବର୍ଣ୍ଣିତ । ଏହି ପ୍ରସ୍ତର ଖଣ୍ଡଟି ସବୁବେଳେ ଚନ୍ଦନ ଚର୍ଚ୍ଚିତ ଓ ପୁଷ୍ପମୟ ହୋଇ ସିଂହାସନରେ ଆରୋହଣ କରନ୍ତି, ଅଥଚ ସେ ମହାରାଜା ବି ନୁହନ୍ତି । ତେଣୁ ଲୋକ କବି କହିଛନ୍ତି:

✡ ହସ୍ତପଦ ନାହିଁ ଦେହ କୁଷ୍ମାଣ୍ଡ ଆକାରୀ,
ପୈତା କେଭେ ନାହିଁ ଦେହେ ତଥାପି ପୈତାଧାରୀ ।
ଚନ୍ଦନ ଚର୍ଚ୍ଚିତ କୃଷ୍ଣ ଅଙ୍ଗ ପୁଷ୍ପମୟେ,
ମହାରାଜା ନୁହେଁ କିନ୍ତୁ ସିଂହାସନେ ରହେ ।
ଭକ୍ଷ୍ୟ ପାଣି ନ ଚାହିଁଲେ ବି ଭୋଗ ଦିଆ ହୁଏ
ଆଶିଷ ନ କରେ କେଭେ ପ୍ରଣମିଲେ ତାରେ ।

**ହରି :-** ଜଗତରେ ଶ୍ରେଷ୍ଠ ସନାତନ ବ୍ୟକ୍ତି ହେଲେ ହରି । ତାଙ୍କୁ ସେବା କଲେ ବା ତାଙ୍କର ନାମ ସ୍ମରଣ କଲେ ମନୁଷ୍ୟ ଭବ ପାରାବାରରୁ ଉତ୍ତୀର୍ଣ୍ଣ ହୁଏ । ତାଙ୍କର ପୂଜା ଜଗତରେ

ସମସ୍ତେ କରନ୍ତି । ଏହି ହରି ଗ୍ରାମ୍ୟ ମନୁଷ୍ୟର ଧାରଣାରେ ପ୍ରହେଳିକା ମାଧ୍ୟମରେ ସୁନ୍ଦର ଭାବରେ ଫୁଟି ଉଠିଛି :

✡ **କୁହ ଆହେ ତାଙ୍କୁ ମୁହିଁ ପାରେ କି ଗୁରୁ କରି,**
**କାହାର ପୂଜା ଜଗତରେ କରେ ନରନାରୀ ।**
**ଯାକୁ-ତାକୁ ପୂଜା କଲେ ଏହା ସେହି ପାଏ,**
**କେବଳ ସେଇ ତ୍ରିଭୁବନେ ଶ୍ରେଷ୍ଠ ମହାଶୟେ ।**

**ମହାଦେବ ବା ଶିବ :-** ମହାଦେବ ଓ ଶିବ ଏକ ଦେବତା କିନ୍ତୁ ନାମ ଅଲଗା । ଶିବ ବା ମହାଦେବ ହେଲେ ଦେବତାମାନଙ୍କ ମଧ୍ୟରେ ବ୍ରହ୍ମା, ବିଷ୍ଣୁଙ୍କ ଭଳି ପ୍ରଧାନ ଦେବତା । ସେ ସନ୍ୟାସୀ ମହାଯୋଗୀ ଓ ନିର୍ଗୁଣ ଧ୍ୟାନର ପ୍ରତୀକ । ପୁଣି ସେ ସୃଷ୍ଟି ଓ ଧ୍ୱଂସର ନିୟାମକ । ତାଙ୍କର ମୁଣ୍ଡରେ ଜଟା, ତିନୋଟି ଆଖି, କପାଳରେ ତୃତୀୟ ଚକ୍ଷୁ ଅଗ୍ନି । ରୁହନ୍ତି ଶ୍ମଶାନରେ ଓ କୈଳାସରେ । ଶିବ ସମସ୍ତଙ୍କର ମଙ୍ଗଳ ସାଧନ କରନ୍ତି । ଜଟାଧାରୀ, ସର୍ପଭୂଷିତ ମହାଦେବଙ୍କର ମୁଣ୍ଡରେ ଅର୍ଦ୍ଧଚନ୍ଦ୍ର । ପରିଧାନ ବ୍ୟାଘ୍ରଚର୍ମ, ଉତରୀୟ କୃଷ୍ଣସାର ମୃଗଚର୍ମ । ସେ ସ୍ତ୍ରୀଙ୍କୁ ମୁଣ୍ଡରେ ଥୋଇ ନୃତ୍ୟ କରନ୍ତି, ସବୁବେଳେ ଭୂତପ୍ରେତମାନଙ୍କ ସହିତ ଥାଆନ୍ତି । ମହାଦେବଙ୍କର ଏହି ରୂପ ଓ ଗୁଣ ପଲ୍ଲୀକବି ଅତ୍ୟନ୍ତ ସୁନ୍ଦର ଭାବରେ ପ୍ରହେଳିକା ମାଧ୍ୟମରେ ବର୍ଣ୍ଣନା କରିଛନ୍ତି । ମହାଦେବଙ୍କର ବିଭିନ୍ନ ନାମକୁ ଆଧାର କରି ବହୁ ପ୍ରହେଳିକା ମଧ୍ୟ ରଚିତ ହୋଇଛି ।

✡ **ଭୂତ ନୁହେଁ ଭୂତ ସଙ୍ଗେ କରନ୍ତି ଭ୍ରମଣ,**
**କେବେ ସେ ଯୋଗୀ ବେଶ କେବେ ସେ ବ୍ରାହ୍ମଣ ।**

✡ **କେଉଁ ଦେବତା ମାଇପକୁ ମୁଣ୍ଡରେ ଥୋଇ ନାଚେ,**
**ପ୍ରେମ ଦାୟରେ କେଉଁ ଦେବତା ନିଶାରେ ପାଣି ସିଞ୍ଚେ ।**

**ବାବା ତାରକନାଥ :-** ମହାଦେବଙ୍କର ଆଉ ଏକ ନାମ ତାରକନାଥ । ତାରକନାଥଙ୍କୁ ସମସ୍ତେ ବାବା ବୋଲି ସମ୍ବୋଧନ କରନ୍ତି । ଏହା ପ୍ରହେଳିକା ମାଧ୍ୟମରେ ବ୍ୟକ୍ତ କରା ହୋଇଛି :-

✡ **ପିତା ମାତା ଦୁହିତା ଯାଆନ୍ତି ସାଙ୍ଗରେ / ତିନିଜଣ ଯାକ ଏକଇ ପଥରେ**
**ଏ କହେ ଆସ ବାବା / ସେ କହେ ଆସ ବାବା**
**ବୁଝି ସୁଝି କୁହ ଭାଇ / କିଏ ସେଇ ଲୋକଟା ।**

**ହର:-** ମହାଦେବଙ୍କର ଆଉ ଗୋଟିଏ ନାମ ହର । ଏହାଙ୍କ ନାମ ସ୍ମରଣ କଲେ ମନୁଷ୍ୟର ମନସ୍କାମନା ପୂର୍ଣ୍ଣ ହୁଏ । ସୁନ୍ଦର ଭାବରେ ଏହା ପ୍ରହେଳିକା ମାଧ୍ୟମରେ ବର୍ଣ୍ଣିତ ।

✡ ଦୁଇ ବର୍ଣ୍ଣ ମିଶିଲେ ହୁଏ ଦେବତାଙ୍କ ନାମ,
ସେଇ ନାମ ଉଚ୍ଚାରିଲେ ପୂର୍ଣ୍ଣ ହୁଏ ମନସ୍କାମ ।
ଶେଷରେ ହ୍ରସ୍ୱଇକାର ଦେଲେ ଆଉ ଏକ ଦେବ ହୁଅଇ
ସେଇ ନାମ ଉଚ୍ଚାରିଲେ ହୁଅନ୍ତି ନରେ ମୃତ୍ୟୁଞ୍ଜୟୀ ।

**ପଞ୍ଚାନନ :-** ମହାଦେବଙ୍କର ଆଉ ଗୋଟିଏ ନାମ ହେଲା ପଞ୍ଚାନନ । ସେଇ ପଞ୍ଚାନନ ନନ୍ଦୀଗ୍ରାମରେ ବାସ କରନ୍ତି, ଯିଏ ପାର୍ବତୀଙ୍କର ସ୍ୱାମୀ, ସେଇ ପଞ୍ଚାନନଙ୍କୁ ପାଥେୟ କରି ଏବଂ ପଞ୍ଚାନନ ନାମରେ ସୁନ୍ଦର ବ୍ୟାଖ୍ୟା ମାଧମରେ ଗୋଟିଏ ଚମତ୍କାର ପ୍ରହେଳିକା ଶୁଣିବାକୁ ମିଳେ :

✡ ତିନି ତେର ମଝିରେ ବାର / ଚାରି ଦ୍ୱାରା ପୁରଣ କର ।
ଘର ମୋର ନନ୍ଦୀ ଗ୍ରାମ / ଏହି ମୋର ସ୍ୱାମୀଙ୍କ ନାମ ।

ପୁଣି ପଞ୍ଚାନନ ଓ ଷଡ଼ାନନଙ୍କୁ ଏକାଠି କରି ଗୋଟିଏ ପ୍ରହେଳିକା ଶୁଣାଯାଏ ।

✡ ଦୁଇ ଦେବତାଙ୍କର ଏଗାର ମୁଣ୍ଡ ।

**ଶିବ, ସାପ ଓ ଷଣ୍ଢ :-** ଶିବଙ୍କର ଅଙ୍ଗର ଭୂଷଣ ହେଲା ସାପ, ଷଣ୍ଢହେଲା ତାଙ୍କର ବାହନ । ଶିବଙ୍କର ଏଭଳି ରୂପ କିଏ ବା ନ ଜାଣେ । ତେଣୁ ଶିବ, ସାପ ଓ ଷଣ୍ଢକୁ ଏକତ୍ର କରି ପ୍ରହେଳିକା ରଚିତ ହୋଇଛି ।

✡ ଜଣଙ୍କ ଗମନରେ ତିନିଙ୍କ ଗମନ
ଛଅପାଦ ଆଉ ଉଣେଇଶ ନୟନ ।
କୁହ ଆହେ ସେ କେଉଁ ଜନ
ସାଥିରେ କିଏ ଦୁଇଜଣ ।

ପୁଣି ଏହି ତିନିଙ୍କୁ ଆଧାର କରି ପ୍ରହେଳିକା ଶୁଣିବାକୁ ମିଳେ ।

✡ ଉଣେଇଶ ଲୋଚନ, ଅଷ୍ଟଜିହ୍ୱା, ଦୁଇପାଦ
କେଉଁ ବୀରର ପାଦ ଛଅ,
ବୁଦ୍ଧି ଥିଲେ କହି ଦିଅ ।

ଓଡ଼ିଶାର ପଲ୍ଲୀଭୂଇଁରେ 'ହର-ଗୌରୀ' ତଥା 'ହରଗୌରା' ନାମକ ଗୋଟିଏ ସୁନ୍ଦର ଫୁଲ ଦେଖାଯାଏ । ଏହି ଫୁଲକୁ ଆଧାର କରି ହର ଓ ଗୌରୀ (ମହାଦେବ ଓ ପାର୍ବତୀ)ଙ୍କୁ ବର୍ଣ୍ଣନା କରା ଯାଇଛି । ଏହି ପ୍ରକାର ପ୍ରହେଳିକାର କୌଣସି ପୌରାଣିକ ଭିତ୍ତି ନାହିଁ । ସାଧାରଣ ଜ୍ଞାନ ବା ଏ ସମ୍ପର୍କିତ ପରିଚିତି ଉପରେ ଏହି ଧରଣର ପ୍ରହେଳିକାର ଉତ୍ତର ନିର୍ଭର କରେ-

✡ **ପ୍ରଥମାଂଶରେ ସ୍ୱାମୀ, ଦ୍ୱିତୀୟାଂଶରେ ତାର ଦାର,**
**ଚାରି ଅକ୍ଷର ମିଶିଲେ ଫୁଲ, କେଡ଼େ ଚମତ୍କାର ।**

ଶିବ ଓ କାଳୀ ପ୍ରତିମାର ବର୍ଣ୍ଣନା ଶିବ ଓ କାଳୀ ବିଷୟକ ପ୍ରହେଳିକା ମାଧ୍ୟମରେ ଅତି ସୁନ୍ଦର ଭାବରେ ଫୁଟି ଉଠିଛି । ଶିବଙ୍କ ଛାତି ଉପରେ ମା' କାଳୀ ଦଣ୍ଡାୟମାନ ହୋଇଛନ୍ତି - ଏହି ମୂର୍ତ୍ତି ସମସ୍ତେ ଦେଖିଛନ୍ତି ଏବଂ ସମସ୍ତଙ୍କୁ ଜଣା ।

✡ **ଏମିତି କଥା ଦେଖିଛ କି ଆହେ ସଦାଚାରୀ,**
**ତଳେ ଥାଏ ପୁରୁଷ ତା' ଉପରେ ଥାଏ ନାରୀ ।**

**ଶ୍ରୀକୃଷ୍ଣ :-** କୃଷ୍ଣ ହିନ୍ଦୁ ମାନଙ୍କର ପ୍ରଧାନ ଓ ପରମ ଉପାସ୍ୟ ଦେବତା । ସେ ବିଷ୍ଣୁଙ୍କର ପୂର୍ଣ୍ଣ ଅବତାର ବୋଲି ସ୍ୱୀକୃତ । ବୈଷ୍ଣବ ପଦାବଳୀରେ କୃଷ୍ଣଙ୍କର ପ୍ରେମ-ଲୀଳା ବର୍ଣ୍ଣିତ । ସେ ସମସ୍ତଙ୍କର ମଙ୍ଗଳକାରୀ, ଜନପ୍ରିୟ । କୃଷ୍ଣ ଜନ୍ମ ପରେ ପରେ ଯଶୋଦାଙ୍କ ଗୃହରେ ଆଶ୍ରୟ ନେଇଥିଲେ ଏବଂ ପରିଶେଷରେ ମାମୁଁଙ୍କୁ ସଂହାର କଲେ । ପୁଣି ଶିଶୁ ବୟସରେ ସେ ଲହୁଣୀ ଚୋରୀ କରି ଖାଇଥିଲେ ଏବଂ ବୃନ୍ଦାବନରେ ରାଧା ଓ ଅନ୍ୟ ଗୋପୀମାନଙ୍କ ସାଙ୍ଗରେ ରାସଲୀଳାରେ ମତ୍ତ ହୋଇଥିଲେ । କୃଷ୍ଣଙ୍କର ଏହିସବୁ ଗୁଣାବଳୀ ପ୍ରହେଳିକା ମାଧ୍ୟମରେ ପଲ୍ଲୀ କବି ସୁନ୍ଦର ଭାବରେ ବ୍ୟଞ୍ଜନା କରିଛନ୍ତି :-

✡ **ବୃନ୍ଦାବନରେ ବାସ ତାଙ୍କର କି ନାମରେ ହକାଏ,**
**ଯଶୋଦାଙ୍କ ପୁତ୍ର ହୋଇ ଲବଣୀ ଚୋର ବୋଲାଏ ।**

✡ **ଜନ୍ମ ନେଇ ମାତୃସ୍ତନ ନ ପାରିଲା ଖାଇ,**
**ପରଗୃହେ ପ୍ରାଣଭୟେ ଆଶ୍ରା ନେଲା ଯାଇ ।**
**ସର୍ବଶେଷେ ମାତୁଳକୁ କରିଲା ସଂହାର,**
**ହେ ପ୍ରଭୁ, ମଙ୍ଗଳ ବିଧି କରନ୍ତୁ ସବୁର ।**

ପୁଣି ଶ୍ରୀକୃଷ୍ଣ କାଳୀରୂପ ଧାରଣ କରିଥିଲେ । ଏ ସମ୍ପର୍କରେ ମଧ୍ୟ ପ୍ରହେଳିକା ଶୁଣାଯାଏ ।

✡ **ପୁରୁଷ ଗଳାରେ ଯେବେ ନାରୀ ମାଳା ଦେଲା,**
**ପୁରୁଷ ରମଣୀ ହେଲା ଅଦ୍ଭୁତ ଘଟିଲା ।।**

**ନୀଳମାଧବ :-** ଶ୍ରୀକୃଷ୍ଣଙ୍କର ଆଉ ଏକ ନାମ 'ମାଧବ' ଏବଂ ତାଙ୍କର ବର୍ଣ୍ଣ 'ନୀଳ', ତେଣୁ ତାଙ୍କୁ ନୀଳମାଧବ ନାମରେ ଆରାଧନା କରାଯାଇଥାଏ । ନୀଳମାଧବଙ୍କୁ ଆଧାର କରି ସୁନ୍ଦର ପ୍ରହେଳିକା ରଚିତ ହୋଇଛି :

✡ **ପାଞ୍ଚଟି ବର୍ଣ୍ଣରେ ନାଆଁ ତାର / ସେ ହେଲେ ଏକ ଦେବତା**
**ପ୍ରଥମାଂଶଟି ରଙ୍ଗ ବିଶେଷ / ଦ୍ୱିତୀୟାଂଶରେ ଦେବତା ।**

**ଜଗନ୍ନାଥ :-** ଶ୍ରୀ ଜଗନ୍ନାଥ ହେଉଛନ୍ତି ବିଷ୍ଣୁ ବା କୃଷ୍ଣଙ୍କର ଅବତାର । କେବଳ ଭାରତବର୍ଷରେ ନୁହେଁ, ପୃଥିବୀରେ ସର୍ବତ୍ର ପୂଜିତ । କଥିତ ଅଛି ଯଦୁବଂଶ ଧ୍ୱଂସ ହେଲା ପରେ କୃଷ୍ଣଙ୍କର ମୃତ୍ୟୁ ହୋଇଥିଲା । ତାଙ୍କର ମୃତ ଦେହ ଗଛତଳେ ପଡ଼ିଥିଲା । ଏହି ସମୟରେ କେତେଜଣ ଭକ୍ତ କୃଷ୍ଣଙ୍କର କେତୋଟି ଅସ୍ଥି ସଂଗ୍ରହ କରି ପେଡ଼ିରେ ରଖିଥିଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁପୂଜା କରିବାପାଇଁ ମନସ୍ଥ କଲେ । କିନ୍ତୁ କେଉଁ ମୂର୍ତ୍ତିର ପୂଜା କରିବେ ତାହା ଭାବି ଠିକ୍ କରି ପାରିଲେ ନାହିଁ । ବିଷ୍ଣୁ ଏହି ସମୟରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ତାଙ୍କର ସନାତନ ମୂର୍ତ୍ତି ନିର୍ମାଣ କରି ତନ୍ମଧ୍ୟରେ କୃଷ୍ଣଙ୍କର ଅସ୍ଥି ରକ୍ଷା କରିବାକୁ କହିଲେ । ବିଶ୍ୱକର୍ମା ଏହି ମୂର୍ତ୍ତି ନିର୍ମାଣର ଭାର ନେଇଥିଲେ ଏବଂ ନିଭୃତରେ ମୂର୍ତ୍ତି ନିର୍ମାଣ କରିବାକୁ ଲାଗିଲେ । ସର୍ତ୍ତ ଥିଲା ଯେତେଦିନ ପର୍ଯ୍ୟନ୍ତ ମୂର୍ତ୍ତି ତିଆରି ନ ସରିଛି, ସେତେଦିନ ପର୍ଯ୍ୟନ୍ତ ଯେପରି କେହି ତାଙ୍କୁ ବିରକ୍ତ ନ କରନ୍ତି । କିନ୍ତୁ ପନ୍ଦରଦିନ ଅତିବାହିତ ହେଲା ପରେ ରାଜା ଅସ୍ଥିର ହୋଇ ପଡ଼ିଲେ । ବିଶ୍ୱକର୍ମା କି ପ୍ରକାର ମୂର୍ତ୍ତି ନିର୍ମାଣ କଲେ, ତାହା ଦେଖିବାକୁ ଆସି ନିଭୃତ କକ୍ଷରେ ଉପସ୍ଥିତ ହେଲେ । ଫଳରେ ବିଶ୍ୱକର୍ମା ରାଗିଗଲେ । ହାତ ପାଦ ଗଢ଼ା ହୋଇନଥିବା ଅର୍ଦ୍ଧ ମୂର୍ତ୍ତିର ଚକ୍ଷୁ ଓ ପ୍ରାଣଦାନ କଲେ ଏବଂ ନିଜେ ପୁରୋହିତ ହୋଇ ପୂଜା କଲେ । ହାତ ପାଦ କଟା ଥୁଣ୍ଟା ଜଗନ୍ନାଥଙ୍କର ଏହି ରୂପପ୍ରତି ମଧ୍ୟ ପ୍ରହେଳିକା ରଚୟିତାଙ୍କର କୌତୁହଳ ସୃଷ୍ଟି ହୋଇଛି । ଫଳରେ ରଚିତ ହୋଇଛି ଜଗନ୍ନାଥଙ୍କ ସମ୍ପର୍କରେ ଗୋଟିଏ ଚମତ୍କାର ପ୍ରହେଳିକା :-

✡ **ହାତ ପାଦ ହୀନ ଥୁଣ୍ଟା ଦେବତା ବସିଥାଏ ଠାଏ,**
**କୋଟି କୋଟି ନରନାରୀ ଦର୍ଶନାର୍ଥେ ପାଗଳ ପ୍ରାୟେ ।**

**ଇନ୍ଦ୍ର :-** ସେ ହେଉଛନ୍ତି ସ୍ୱର୍ଗର ଦେବତାମାନଙ୍କର ରାଜା । ତେଣୁ ତାଙ୍କୁ ଦେବରାଜ ଇନ୍ଦ୍ରବୋଲି କୁହାଯାଏ । ଇନ୍ଦ୍ର ଥରେ କପଟ କରି ଗୁରୁ ବେଶରେ ଗୁରୁ ପତ୍ନୀଙ୍କୁ ହରଣ କରିଥିଲେ । ଏହି ପୌରାଣିକ କଥାର ଆଧାରରେ ଇନ୍ଦ୍ର ବିଷୟକ ପ୍ରହେଳିକାଟି ରଚିତ ହୋଇଛି :-

✡ **ଗୁରୁଙ୍କ ଆକାର ଧରି ଗୁରୁପତ୍ନୀ ହରେ,**
**ସିଏ କେଉଁଜଣ କେଉଁ ନାମ ଧରେ ।**

**ନୀଳାମ୍ବର :-** ସେ ହେଉଛନ୍ତି ଦେବରାଜ ଇନ୍ଦ୍ରଙ୍କର ପୁତ୍ର । ଶିବଙ୍କ ଦ୍ୱାରା ଅଭିଶପ୍ତ ହୋଇ ନୀଳାମ୍ବର ମର୍ତ୍ତ୍ୟରେ କାଳକେତୁ ରୂପରେ ଜନ୍ମଗ୍ରହଣ କରିଥିଲେ । ଏହି କାହାଣୀକୁ ପଲ୍ଲୀବାସୀ ନୀଳାମ୍ବରଙ୍କ ସମ୍ପର୍କରେ ପ୍ରହେଳିକା ରଚନା କରିଛନ୍ତି ।

✡ **କାଳକେତୁ ସ୍ୱର୍ଗପୁରେ ଇନ୍ଦ୍ରପୁତ୍ର ଥିଲା**
**ସ୍ୱର୍ଗପୁରେ ତାହାର କି ନାମ ଥିଲା ।**

**ଯମ :-** ଯମରାଜ ହେଉଛନ୍ତି ମୃତ୍ୟୁର ଦେବତା । ମୃତ୍ୟୁ ପରେ ପାପ ପୂଣ୍ୟର

ବିଚାରକ । ଯମଙ୍କୁ ସମସ୍ତେ ଭୟ କରନ୍ତି । ଯମଙ୍କ ହାତରୁ କୌଣସି ମନୁଷ୍ୟର ତ୍ରାହି ନାହିଁ । ଯମଙ୍କର ଚେହେରା ଯେ ଭୟଙ୍କର ଏବଂ ସମସ୍ତଙ୍କ ପାଇଁ ସେ ଯେ ଭୟର ପାତ୍ର, ଏହା ସମସ୍ତଙ୍କୁ ଜଣା ।

✡ **ଦୁଇ ଅକ୍ଷରରେ ନାଆଁଟି ତାର,**
**ଭୟଙ୍କର ରୂପ ଦେଖିଲେ ମାଡ଼େ ଡ଼ର ।**
**ଏକ ଆକାରରେ ଖାଇବା ଜିନିସ,**
**ଦୁଇ ଆକାରରେ ହୁଏ ପିନ୍ଧିବା ଜିନିସ ।**

✡ **ଦୁଇ ଅକ୍ଷରରେ ନାଁ ତାର ଶୁଣି ଲାଗେ ଭୟ,**
**ପ୍ରଥମରେ ଆକାର ଦେଲେ ସମସ୍ତଙ୍କର ପ୍ରିୟ ।**
**ଉଭୟରେ ଆକାର ଦେଲେ ପରିଧାନ ହୁଏ ।**
**ଶେଷ ଅକ୍ଷରରେ ହ୍ରସ୍ୱ'ଇ' ହୃଦୟରେ ରଖୁ,**
**ତାପରେ 'ତା' ଦେଲେ ଆଦରରେ ଡାକୁ ।**

**ଚନ୍ଦ୍ର :-** ପୁରାଣ ଅନୁଯାୟୀ ଚନ୍ଦ୍ରମଣ୍ଡଳର ଅଧିଷ୍ଠାତ୍ରୀ ଦେବତା ଚନ୍ଦ୍ର । ଦକ୍ଷଙ୍କ ଅଭିଶାପରେ ଚନ୍ଦ୍ର ଥରେ ଯକ୍ଷ୍ମାଗ୍ରସ୍ତ ହୋଇଥିଲେ । ଯକ୍ଷ୍ମାଗ୍ରସ୍ତ ଚନ୍ଦ୍ରଙ୍କର ଗାଥା ମଧ୍ୟ ପଲ୍ଲୀବାସୀମାନଙ୍କ ପାଖରେ ଅଜଣା ନୁହେଁ । ଏହାର ପ୍ରମାଣ ଚନ୍ଦ୍ର ବିଷୟକ ପ୍ରହେଳିକାରୁ ମିଳେ ।

✡ **ଗୁରୁପତ୍ନୀ ହରଣେ କାହାର ଯକ୍ଷ୍ମା ରୋଗ ହେଲା ।**

**ବଳରାମ :-** ପୁରାଣ ମତରେ ବଳରାମ ହେଉଛନ୍ତି ବିଷ୍ଣୁଙ୍କର ଅଷ୍ଟମ ଅବତାର । ପୁଣି ତାଙ୍କୁ ଅନନ୍ତ ନାଗର ଅବତାର ବୋଲି ମଧ୍ୟ ପୁରାଣରେ କୁହାଯାଇଛି । କିନ୍ତୁ ଏଠାରେ ବଳରାମ ବିଷୟକ ପ୍ରହେଳିକା ମାଧ୍ୟମରେ ପୌରାଣିକ ଜ୍ଞାନର ପରିଚୟ ମିଳେ ନାହିଁ । ବଳରାମ ଯେ ଜଣେ ଦେବତା, କେବଳ ଏତିକି ମାତ୍ର ପ୍ରହେଳିକା ମାଧ୍ୟମରେ ବ୍ୟକ୍ତ କରା ହୋଇଛି :-

✡ **ଚାରି ଅକ୍ଷରରେ ନାଁ ତାଙ୍କର ଅଟନ୍ତି ଏକ ଠାକୁର**
**ପ୍ରଥମାଂଶରେ ହୁଏ ଶକ୍ତି, ଦ୍ୱିତୀୟାଂଶରେ ଅବତାର ।**

**କାର୍ତ୍ତିକ :-** ମୟୂର ବାହନ କାର୍ତ୍ତିକ ହେଉଛନ୍ତି ହର-ପାର୍ବତୀଙ୍କ ପୁତ୍ର । ଏଠାରେ କିନ୍ତୁ କାର୍ତ୍ତିକଙ୍କର କୌଣସି ପୌରାଣିକ ବ୍ୟାଖ୍ୟା କରା ଯାଇନି । ସାଧାରଣ ଅର୍ଥରେ କାର୍ତ୍ତିକ ସମ୍ପର୍କରେ ପଲ୍ଲୀବାସୀମାନେ ଯେଉଁ ଧାରଣା ପୋଷଣ କରିଛନ୍ତି, ସେହି ଧାରଣାର ବଶବର୍ତ୍ତୀ ହୋଇ ଏହି ପ୍ରହେଳିକାଟି ରଚିତ ହୋଇଛି :-

✡ **ଏପରି ଗୋଟିଏ ତିନିବର୍ଣ୍ଣର ନାମ କହିବ,**
**ଯେଉଁ ନାମ ଦେବତା ଓ ମାଛ ମଧ୍ୟରେ ପାଇବ ।**

**ଗଣେଶ :-** ହର ଓ ଗୌରୀଙ୍କର ପୁତ୍ର ହେଲେ ଗଣେଶ । ଯେ କୌଣସି ପୂଜା

ପୂର୍ବରୁ ଗଣେଶଙ୍କୁ ପୂଜା କରାଯାଏ । ବେଦବ୍ୟାସଙ୍କ ମହାଭାରତର ଶ୍ଳୋକ ଗଣେଶ ଯେ ଲେଖିଦେଇଥିଲେ, ଏକଥା କାହାକୁ ଅଛପା ନାହିଁ । ଏହି କଥାହିଁ ପ୍ରହେଳିକା ମାଧ୍ୟମରେ ବ୍ୟକ୍ତ କରାଯାଇଛି :-

✡ **ମହାଭାରତ ବେଦବ୍ୟାସ ରଚନା କରିଥିଲେ,**
**କେଉଁ ଜନ ଲେଖିଥିଲା, କୁହ ଜଣା ଥିଲେ ।**

**ଶନି ଓ ଗଣେଶ :-** ଶନି ହେଲେ ସୂର୍ଯ୍ୟ ଓ ଛାୟାଙ୍କର ପୁତ୍ର । ଶନିଙ୍କ ପ୍ରଚଣ୍ଡ ତେଜ ସମ୍ପର୍କରେ ସମସ୍ତେ ଅବଗତ । ଆଉ ଗଣେଶ ହେଲେ ହର ଓ ପାର୍ବତୀଙ୍କ ପୁତ୍ର । ଶନିଙ୍କ ଦୃଷ୍ଟିରୁ ଗଣେଶଙ୍କର ମୁଣ୍ଡ ଶରୀରରୁ ବିଖଣ୍ଡିତ ହୋଇଥିଲା । ଶନି ଓ ଗଣେଶଙ୍କୁ ଏକତ୍ର କରି ପ୍ରହେଳିକା ଶୁଣିବାକୁ ମିଳେ, ମାତ୍ର ତାହା ଏକାନ୍ତ ଗ୍ରାମ୍ୟଉକ୍ତିକ । ଯେପରି:

✡ **କେଉଁ ଦେବତାଙ୍କ ଆଖିରେ ଠୁଳି (=ଢ଼ାଙ୍କୁଣି),**
**ଆଉ କେଉଁ ଦେବତାଙ୍କ ହାତରେ ଖୁଲ (=ଖୋଳ) ।**

**କାଳୀମାତା :-** ମହାଦେବଙ୍କର ପତ୍ନୀ କାଳୀ । ସମସ୍ତଙ୍କ ପୂଜନୀୟା ଦେବୀ । ସେ ହେଲେ ଦଶମହାବିଦ୍ୟାରୁ ଏକ ମହାବିଦ୍ୟା । ଭକ୍ତଙ୍କ ପାଇଁ ସେ ଆଦ୍ୟାଶକ୍ତି ରୂପରେ ପରିଚିତ । ସମସ୍ତେ ଯେ ତାଙ୍କୁ ମା' ବୋଲି ସମ୍ବୋଧନ କରନ୍ତି, ତାହା ଅତି ସୁନ୍ଦରଭାବରେ କୁହାଯାଇଛି :-

✡ **ମାମୁଁ ବୋଇଲେ ମା'**
**ମାଇଁ ବୋଇଲେ ମା'**
**ବାପା ବୋଇଲେ ମା'**
**ବୋଉ ବୋଇଲେ ମା'**
**ପୁଅ ବୋଲେ ମା'**
**ଝିଅ ବୋଲେ ମା'**
**କେମିତି ହେଲା, କିଏ ସେହି ମା' ?**

**ନୃମୁଣ୍ଡମାଳିନୀ କାଳୀ :-** ପୁଣି ପ୍ରହେଳିକା ମାଧ୍ୟମରେ କାଳୀଙ୍କର ଅନ୍ୟରୂପ ସମ୍ପର୍କରେ କୁହାଯାଇଛି :-

✡ **ଏକ ଜିଭ ତାର ଅଶୀ ମଥା,**
**ଶୁଣି ଯାରେ ମଜା-ମଜା କଥା ।**

**ଦୁର୍ଗା:-** ଦେବୀ ଦୁର୍ଗା ମହାଦେବଙ୍କ ସ୍ତ୍ରୀ । ସକଳଙ୍କର ସେ ପୂଜିତା । ମହିଷାସୁରର ଅତ୍ୟାଚାରରେ ସ୍ୱର୍ଗଚ୍ୟୁତ ଦେବତାଗଣ ବ୍ରହ୍ମାଙ୍କର ଶରଣାପନ୍ନ ହେଲେ । ବ୍ରହ୍ମା, ଶିବ ଓ

ଅନ୍ୟାନ୍ୟ ଦେବତାମାନଙ୍କୁ ନେଇ ବିଷ୍ଣୁଙ୍କ ପାଖକୁ ଆସିଲେ । ବ୍ରହ୍ମାଙ୍କ ବରରେ ମହିଷାସୁର ପୁରୁଷ ଦ୍ୱାରା ଅବଧ୍ୟ । ବିଷ୍ଣୁ ନିର୍ଦ୍ଦେଶ ଦେଲେ ଯେ ନିଜ ସ୍ତ୍ରୀ ସହିତ ମିଳିତ ହୋଇ ନିଜ ନିଜର ତେଜ ପାଖରେ ପ୍ରାର୍ଥନା କରିବାକୁ ହେବ । ସମବେତ ତେଜରୁ ଏକ ନାରୀମୂର୍ତ୍ତିର ଆବିର୍ଭାବ ହେବ । ଏହାଶୁଣି ଦେବତାମାନଙ୍କ ଦେହରୁ ତେଜ ବାହାରି ସେଇ ତେଜ ସମ୍ମିଳିତ ହୋଇ ଏକ ଦେବୀଙ୍କର ସୃଷ୍ଟି ହେଲା । ଦେବତାଗଣ ନିଜ ନିଜର ଅସ୍ତ୍ର ଦେଇ ତାଙ୍କୁ ସଜ୍ଜିତ କଲେ । ଏହି ଦେବୀ ହେଲେ ଦୁର୍ଗା । ସେ ଦଶଭୂଜାରୂପରେ ମହିଷାସୁରକୁ ବଧ କରିଥିଲେ । ଦୁର୍ଗାଙ୍କର ରୂପ କିପରି, ତାହା ପ୍ରହେଳିକା ମାଧମରେ ଚମତ୍କାର ଭାବରେ ଫୁଟି ଉଠିଛି :-

✡ **ଦୁଇଭୁଜା ରମଣୀ ତାର ଦଶଭୁଜା ପୋତୀ (=ବସ୍ତ୍ର),**
**ପଞ୍ଚ ମୁଣ୍ଡ ହୁଏ ପତିର ନୁହେଁ ପଶୁପତି ।**

✡ **ପତିର ପିତାର କୌଣସି ପୁତ୍ର ନ ହୋଇଲା,**
**କିଏ ସେହି ନାରୀ ଭାବିଚିନ୍ତି କହ ଭଲା ।**

**ଦୁର୍ଗା ପ୍ରତିମା :-** ଦୁର୍ଗା ପ୍ରତିମାକୁ ଆଧାରିତ କରି ଖୁବ୍ ସୁନ୍ଦର ପ୍ରହେଳିକା ରଚିତ ହୋଇଛି । ଶିଳ୍ପୀ ଦ୍ୱାରା ତିଆରି ବାହନସମେତ ଦୁର୍ଗା-ପ୍ରତିମା ଦେଖିବାକୁ ଯେ କେତେ ସୁନ୍ଦର, ତାହା ପ୍ରହେଳିକା ମାଧମରେ ବର୍ଣ୍ଣିତ ହୋଇଛି :-

✡ **ସିଂହ ଉପରେ ଏକ ସୁନ୍ଦରୀ / କି ରୂପ ତାର କି ମାଧୁରୀ ।**

✡ **ଗୋଟିଏ କୁଞ୍ଚ୍ ଅଙ୍କା ବଙ୍କା / ଫୁଲ ଫୁଟିଛି ଝଙ୍କା ଝଙ୍କା ।**
**କୋଉ କୁମ୍ଭାର ଗଢ଼ିଛି / ସୁନା ଦେହରେ ଛାଇଛି ।**

**ଭଗବତୀ :-** ଦେବୀ ଦୁର୍ଗାଙ୍କର ଅନ୍ୟ ଏକ ନାମ ଭଗବତୀ । ରାମଚନ୍ଦ୍ର ଅକାଳରେ ଦେବୀ ଭଗବତୀଙ୍କର ପୂଜା କରି ରାବଣକୁ ବଧ କରିବାକୁ ସମର୍ଥ ହୋଇଥିଲେ । ସନ୍ତାନସହ ଏଇ ଭଗବତୀଙ୍କ ସମ୍ପର୍କରେ କୌତୁକପୂର୍ଣ୍ଣ ପ୍ରହେଳିକା ଶୁଣିବାକୁ ମିଳିଥାଏ :

✡ **ପ୍ରସବ କଲେ ଝିଅ ଛାଗ ମୁଣ୍ଡିଆ ପତି**
**ହାତୀ କାନିଆ ପୁଅଟିକୁ ସର୍ବେ ଜଣାନ୍ତି ପ୍ରଣତି ।**

ଏହି ପ୍ରହେଳିକା ମାଧମରେ ଦକ୍ଷଙ୍କର ଛାଗମୁଖ ଏବଂ ଭଗବତୀ ଯେ ଦକ୍ଷଦୁହିତା ଏବଂ ଗଣେଶଙ୍କ କାନ ଯେ ହାତୀର କାନ ପରି, ତାହା ଖୁବ ସୁନ୍ଦର ଭାବରେ ହାସ୍ୟମୟ ଢଙ୍ଗରେ ପ୍ରକାଶ ପାଇଛି । ଏଥିରୁ ବୁଝାଯାଏ ଯେ ପ୍ରହେଳିକା ରଚୟିତାଙ୍କର ପୌରାଣିକ ଜ୍ଞାନ ଓ ଅଭିଜ୍ଞତା କେତେ ପରିମାଣରେ ଥିଲା ଏବଂ ମନ ମଧ ସେହିପରି କୌତୁକ ରସରେ ଭରପୁର ଥିଲା ।

ପୁଣି ଅନ୍ୟ ଏକ ପ୍ରହେଳିକା ମାଧମରେ ଭଗବତୀଙ୍କର ଅନ୍ୟ ରୂପର ବର୍ଣ୍ଣନା କରାଯାଇଛି :-

✡ କେଉଁ ରମଣୀ କରିଥିଲା ଏପରି କାର୍ଯ୍ୟ
ସ୍ୱାମୀ ପାଇଁ ପିନ୍ଧିଥିଲା ବିଧବାର ସାଜ ।

**ଦେବୀ କମଳା :-** ଦେବୀ କମଳା ଧନ ବା ଐଶ୍ୱର୍ଯ୍ୟର ଅଧିଷ୍ଠାତ୍ରୀ ଦେବୀ । ତାଙ୍କର ବାସସ୍ଥଳୀ ନାରାୟଣଧାମ । ସେଇ ଦେବୀ କମଳାଙ୍କୁ କୌତୁକ ଛଳରେ ପ୍ରହେଳିକା ମାଧ୍ୟମରେ ବର୍ଣ୍ଣନା କରାଯାଇଛି :

✡ ଗଛରେ ଜନମ ତାର ତିନି ବର୍ଣ୍ଣର ନାମ,
ଅଥବା ବସତି ତାଙ୍କର ନାରାୟଣ-ଧାମ ।
ଫଳ ଫୁଲେ ଦେବକୁଳେ ପାଉଁ ଦରଶନ,
ଧନ ପାଇଁ ତାଙ୍କ ପୂଜା କରେ ସର୍ବଜନ ।
ମଧ୍ୟାକ୍ଷର କାଟି ଦେଲେ ଲାଗେ ସେ ପୂଜାରେ,
କହିଲ ଏପରି ବସ୍ତୁ କିଏ ଅଛି ଏ ଧରାରେ ।

**ଶ୍ରୀଲକ୍ଷ୍ମୀ :-** ଶିବ-ଦୁର୍ଗାଙ୍କର ଜ୍ୟେଷ୍ଠା କନ୍ୟା ଶ୍ରୀଲକ୍ଷ୍ମୀ । ସେ ନାରାୟଣଙ୍କର ସ୍ତ୍ରୀ ଏବଂ ଐଶ୍ୱର୍ଯ୍ୟର ଦେବୀରୂପରେ ପୂଜିତା । ହିନ୍ଦୁମାନଙ୍କର ଘରେ ଘରେ ଲକ୍ଷ୍ମୀଙ୍କର ପୂଜା ହୋଇଥାଏ । କେବଳ ଶ୍ରୀଲକ୍ଷ୍ମୀଙ୍କର ପରିଚୟ ନୁହେଁ, ତାଙ୍କର ପତିଙ୍କର ପରିଚୟ ମଧ୍ୟ ପ୍ରହେଳିକାରେ ପ୍ରତିଫଳିତ ହୋଇଛି :

✡ ସମୁଦ୍ର ମନ୍ଥନ ବେଳେ ଯିଏ କଲେ ବିଷପାନ,
ମୋହିନୀ ସୁରତି ହରି କଲେ ଆଲିଙ୍ଗନ,
ତାଙ୍କର ଯେ ପ୍ରିୟ ପତ୍ନୀ ସିଂହ ପୃଷ୍ଠେ ଚଢ଼େ,
ଦୁର୍ଦ୍ଦାନ୍ତ ଦାନବକୁ ସେ ନାଶିଲେ ଯୁଦ୍ଧରେ ।
ତାଙ୍କର ଯେ ଜ୍ୟେଷ୍ଠା କନ୍ୟା କିବା ତାଙ୍କ ନାମ,
କୁହ ବାରେ ଶାସ୍ତ୍ର କଥା ଆହେ ମତିମାନ ।

**ଅଲକ୍ଷ୍ମୀ :-** ଅଲକ୍ଷ୍ମୀ ହେଲେ ଦୁର୍ଭାଗ୍ୟର ଦେବୀ । ଦୀପାନ୍ୱିତା ଅମାବାସ୍ୟା ଅର୍ଥାତ୍ କାର୍ତ୍ତିକଅମାବାସ୍ୟାର ସାୟଂକାଳରେ ଗୋବର ପୁତ୍ତଳିକାରେ କଳାବର୍ଣ୍ଣର ଫୁଲ ଦେଇ ବାଁ ହାତରେ ଏହାଙ୍କ ପୂଜା କରାଯାଏ । କୁଲା ବଜେଇ ସନ୍ଧ୍ୟାରେ କାଳ ଅର୍ଦ୍ଧରାତ୍ରିରେ ବିସର୍ଜନ ଦିଆଯାଏ । ତେଣୁ କାର୍ତ୍ତିକ ମାସରେ କାଳୀପୂଜା ଦିନ ଅଲକ୍ଷ୍ମୀ ପୂଜିତା ହୁଅନ୍ତି । ଏଇ ଅଲକ୍ଷ୍ମୀଙ୍କ ସମ୍ପର୍କରେ ପ୍ରହେଳିକା ଶୁଣିବାକୁ ମିଳେ :

✡ କେଉଁ ଦେବତାର ପୂଜାରେ ବାଜା ବାଜେ ନାହିଁ,
କାର୍ତ୍ତିକ ମାସରେ ପୁଜା ହୁଏ କୁହ ଦେଖି ଭାଇ ।

**ବୀଣାପାଣି :-** ବୀଣାପାଣି ହେଲେ ବୀଣାହସ୍ତେ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀ ଶିବ ଓ ଦୁର୍ଗାଙ୍କ କନ୍ୟା । ଘରେ ଘରେ ସେ ବିଦ୍ୟାଦାତ୍ରୀ ରୂପରେ ପୂଜିତା । ସେଇ ବୀଣାପାଣିଙ୍କ ଅବଲମ୍ବନରେ ପ୍ରହେଳିକା ସୃଷ୍ଟି ହୋଇଛି :

✡ **ଦୁଇଟି କଥାର ଅର୍ଥ ଶୁଣ ଶିଶୁବର,**
**ଗୋଟିକରେ ବାଦ୍ୟ ଯନ୍ତ୍ର, ଅନ୍ୟଟିରେ କର ।**
**ଦୁଇଟିକୁ ପାଖାପାଖି କରିଲେ ସ୍ଥାପନ,**
**ଶ୍ରଦ୍ଧାଭରେ ପୂଜନ୍ତି ତାଙ୍କୁ ବିଦ୍ୟାର୍ଥିଜନ ।**

**ଗଙ୍ଗାଦେବୀ :-** ଗଙ୍ଗା ଦେବୀରୂପେ ପୂଜିତା । ଗଙ୍ଗା, ମକର ବାହିନୀ, ଶୁକ୍ଳବର୍ଣ୍ଣା ଓ ଚତୁର୍ଭୁଜା । ଗଙ୍ଗା ଜଳରେ ସ୍ନାନ, ପାନ ଓ ସ୍ପର୍ଶରେ ଯେଉଁ ପୁଣ୍ୟ ଲାଭ ହୁଏ, ତାହା ବ୍ୟାଖ୍ୟାୟିତ ହୋଇଛି ପ୍ରହେଳିକା ମାଧ୍ୟମରେ :-

✡ **କେଉଁ ନାରୀ ଦର୍ଶନରେ ପୂଣ୍ୟ କର୍ମ ହୁଏ,**
**ତାହାଙ୍କ ସ୍ପର୍ଶରେ ମୋହ-ମନ ଶୁଦ୍ଧ ହୁଏ,**
**ବାରବ୍ରତରେ କକ୍ଷକୁ ତାର ଯାଏ ନରନାରୀ**
**ଦେବଦେବୀଙ୍କ ଶୁଭକାର୍ଯ୍ୟରେ ଆଦର ତାଙ୍କରି ।**

✡ **ପରସ୍ତ୍ରୀ ପରଶେ ମୁକ୍ତି, ପବିତ୍ର ମୁଖ ଚୁମ୍ବନେ**
**ଦର୍ଶନେ ତୀର୍ଥଯାତ୍ରା, ମହାପୁଣ୍ୟ ସଙ୍ଗମେ ।**

(ଏହା ଏକ ପ୍ରବାଦ ବାକ୍ୟ ହେଲେବି ପ୍ରହେଳିକା ହିସାବରେ ପରିଗଣିତ ।)

**ଶ୍ରୀରାଧା :-** ଶ୍ରୀକୃଷ୍ଣଙ୍କର ପ୍ରାଣର ଅଧିଷ୍ଠାତ୍ରୀ ଶ୍ରୀ ରାଧା ଦେବୀରୂପରେ ପୂଜିତା । ଏଇ ରାଧା ହିଁ ଈଶ୍ୱରଜ୍ଞାନରେ ଦେହ, ମନ, ପ୍ରାଣ ସବୁକିଛି କୃଷ୍ଣଙ୍କୁ ସମର୍ପଣ କରିଥିଲେ । ଘରେ ନିଜର ସ୍ୱାମୀ ଥିଲେ ମଧ ରାଧା ଯେ ପର ପୁରୁଷ ପ୍ରତି ପ୍ରେମାସକ୍ତ, ତାହା କାହାକୁ ଅଜଣା ନୁହେଁ । ତେଣୁ ଗ୍ରାମ୍ୟକବି ପ୍ରହେଳିକା ମାଧ୍ୟମରେ ଶ୍ରୀରାଧାଙ୍କ ସମ୍ପର୍କରେ ବ୍ୟଞ୍ଜନା କରିଛନ୍ତି :-

✡ **ଥିଲେ ବି ଘରେ ଆପଣା ସ୍ୱାମୀ,**
**ଭଣଜା ପ୍ରେମରେ ମଜିଲେ ମାମୀ ।**

**ନନ୍ଦରାଣୀ ଓ ରାଧାରାଣୀ :-** ନନ୍ଦରାଣୀ ହେଲେ ଶ୍ରୀକୃଷ୍ଣଙ୍କର ମାତା ଓ ରାଧାରାଣୀ ତଥା ଶ୍ରୀରାଧା ହେଲେ ଶ୍ରୀକୃଷ୍ଣଙ୍କର ପ୍ରେମିକା । ସେଇ ନନ୍ଦରାଣୀଙ୍କର ବାତ୍ସଲ୍ୟ ପେମର ଗାଥା ଏବଂ ଶ୍ରୀ ରାଧାଙ୍କର ପ୍ରେମର ଗାଥା ଅପୂର୍ବ ଭାବରେ ବର୍ଣ୍ଣନା କରିଛନ୍ତି ପଲ୍ଲୀକବି ।

✡ **ବାତ୍ସଲ୍ୟ ଭାବରୁ କିଏ ଶ୍ରୀକୃଷ୍ଣ ପାଇଲେ,**
**ମଧୁର ଭାବରେ କୁହ କିଏ ପୂଜିଥିଲେ ।**

**ମହାମାୟା :-** ମହାମାୟା ହେଉଛନ୍ତି ସୃଷ୍ଟି, ସ୍ଥିତି ଓ ପ୍ରଳୟର ଈଶ୍ୱରୀ । ସେ ଜୀବଗଣଙ୍କର କାମନା ମଧ୍ୟ ପୂର୍ଣ୍ଣ କରନ୍ତି । ଏହି ଦେବୀଙ୍କର ଭୟଙ୍କର ରୂପ ପ୍ରହେଳିକାରେ ସୁନ୍ଦର ଭାବରେ ବ୍ୟଞ୍ଜିତ ହୋଇଛି ।

✡ **କାଳୀଙ୍କ ପାଖେ ଶୃଗାଳୁଣୀ କିଏ ଉପନୀତ**
**କରାଳ ଦୈତ୍ୟର ମୁଣ୍ଡ ରକ୍ତ ପାନେ ରତ ।**

ବିଭିନ୍ନ ଦେବଦେବୀ ବିଷୟକ ପ୍ରହେଳିକାଗୁଡ଼ିକ ମଧ୍ୟରୁ ବୁଝାଯାଏ ଯେ ପଲ୍ଲୀଗ୍ରାମବାସୀମାନଙ୍କର ପୌରାଣିକ ଜ୍ଞାନ ବା ଅଭିଜ୍ଞତା କେତେ ପରିମାଣରେ ଥିଲା । ଏହା ମାଧ୍ୟମରେ ଜ୍ଞାନ ଓ ଅଭିଜ୍ଞତାର ପରିଚୟ ଫୁଟି ଉଠିଛି । କୌଣସି ପୌରାଣିକ ଯାତ୍ରା ଦେଖି, ପୁରାଣର କଥା ଶୁଣି ସେମାନେ ଏହି ଶ୍ରେଣୀୟ ପ୍ରହେଳିକା ଅନେକ ସମୟରେ ରଚନା କରିପାରି ଥାଆନ୍ତି । ଏହି ସମସ୍ତ ପ୍ରହେଳିକା ମାଧ୍ୟମରେ ପଲ୍ଲୀକବିଙ୍କର କୌତୁକ ରସର ପରିଚୟ ଫୁଟି ଉଠିଛି ।

## ପ୍ରକୃତି ବିଷୟକ ପ୍ରହେଳିକା

ପ୍ରକୃତି ଚିରକାଳ ସୌନ୍ଦର୍ଯ୍ୟର ଡାଲା ଧରି ଚତୁର୍ଦିଗରେ ବିଛେଇ ଦେଇଛି । ପ୍ରକୃତି ସମଗ୍ର ପୃଥିବୀକୁ ଅକୃପଣ ହସ୍ତରେ କେତେ ଯେ କ'ଣ ଦାନ କରି ଚାଲିଛି , ଦୁନିଆର ଗୋଟିଏ ପ୍ରାନ୍ତରେ ବସି ତାର ହିସାବ କରି ହେବ ନାହିଁ । କେଉଁଠି ତୁଷାର ଶୁଭ୍ର ପାହାଡ଼ ଉପରେ ପାହାଡ଼ ତ କେଉଁଠି ଅତଳାନ୍ତ ସୁନୀଳ ଜଳଧି, ପୁଣି କେଉଁଠି ଭୟଙ୍କର ଜଙ୍ଗଲ ଅତ୍ୟନ୍ତ ସୁନ୍ଦର ହୋଇପାରେ, ଆମ୍ଭେ ବୁଝୁ କିନ୍ତୁ କଳ୍ପନା କରି ପାରୁନା । ହିମପ୍ରବାହ କିମ୍ବା ନିର୍ଝରିଣୀର ସୌନ୍ଦର୍ଯ୍ୟ ବୋଧତା ଗୋଟିଏ ଦିଗ ଏବଂ ସେଇ ଅପୂର୍ବ ସୃଷ୍ଟି ମଧ୍ୟରେ ବିଧାତାର ମହିମା ଅନୁଭବ କରିବା ଅନ୍ୟ ଏକ ଦିଗ । ନଈ-ନାଳ, ତୋଟା-ମାଳ, ବଣ-ଜଙ୍ଗଲ, ବିସ୍ତୀର୍ଣ୍ଣ ପ୍ରାନ୍ତର, ବଗିଚା, ଧାନଖେତ, ସମୁଦ୍ର ଓ ବାଲୁକା ତଟ ସର୍ବସ୍ୱ ଓଡ଼ିଶାର ଏହି ପ୍ରାକୃତିକ ବୈଚିତ୍ର୍ୟ ଆଉ କ'ଣ କେଉଁଠି ମିଳିବ ? ଏହି ଶ୍ୟାମଳୀ ଭୂମିର ମନୋରମ ଓ ନୈସର୍ଗିକ ସୌନ୍ଦର୍ଯ୍ୟ ସୃଷ୍ଟିର ଆବାହମାନ କାଳରୁ ବିଦ୍ୟମାନ । ସେହି ସୌନ୍ଦର୍ଯ୍ୟର ବିପୁଳତାକୁ ଦେଖି ଯେ କେହି ବିସ୍ମୟ ବିମୁଗ୍ଧ ହୋଇଯିବ ଏବଂ ଦୁଇ ଆଖି ଅଶ୍ରୁ ସଜଳ ହୋଇ ଉଠିବ ।

ଓଡ଼ିଶାର ଏହି ପ୍ରାକୃତିକ ସୌନ୍ଦର୍ଯ୍ୟ ଯୁଗେ ଯୁଗେ କାଳେ କାଳେ ଓଡ଼ିଆ ସାହିତ୍ୟ, କାବ୍ୟ କବିତା, ଶିଳ୍ପ, ପ୍ରବାଦ, ଲୋକବାଣୀ ପ୍ରଭୃତିରେ ଚିରାୟୁ ସମ୍ପଦ ହୋଇ ରହିଛି । ଗ୍ରାମ୍ୟ ମୌଳିକ ପ୍ରହେଳିକାରେ ମଧ୍ୟ ଓଡ଼ିଶାର ପ୍ରାକୃତିକ ବୈଭବବାଦ ଯାଇନି । ଓଡ଼ିଆ ଲୋକେ ପ୍ରକୃତି ପ୍ରେମୀ ଏବଂ ଓଡ଼ିଶାର ପ୍ରକୃତି ମଧ୍ୟ ଚିର ହରିତ ଓ ଚିର ସୁନ୍ଦର । ଓଡ଼ିଶାର

ପ୍ରାକୃତିକ ସୌନ୍ଦର୍ଯ୍ୟ ରୂପମାଧୁର୍ଯ୍ୟ ଓ ବୈଚିତ୍ର୍ୟ ଅନ୍ୟାନ୍ୟ ଦେଶ ତୁଳନାରେ ବୋଧହୁଏ କୌଣସି ଅଂଶରେ କମ ନୁହେଁ । ରୂପମୟୀ ଓଡ଼ିଶା କେବଳମାତ୍ର ସାହିତ୍ୟିକମାନଙ୍କୁ ଭାବପ୍ରବଣତାର ଖୋରାକ ଯୋଗାଇନି, ପଲ୍ଲୀକବିର ପ୍ରହେଳିକା ଆସରରେ ମଧ୍ୟ ପ୍ରକୃତି ତାର ଆପଣା ସ୍ଥାନଟି ଦଖଲ କରି ନେଇଛି । ଓଡ଼ିଶାର ଶ୍ୟାମଳ ପ୍ରକୃତି ତାର ରୂପ, ରଙ୍ଗ, ରସ, ବର୍ଣ୍ଣ ଓ ଗନ୍ଧ ପ୍ରଭୃତିକୁ ପାଥେୟ କରି ପ୍ରହେଳିକା ରଚୟିତାର ମନରେ ଏକ ବିଚିତ୍ରବର୍ଣ୍ଣା ଭାବାବେଗ ସୃଷ୍ଟି କରିଛି ।

ପ୍ରକୃତି ସହିତ ଋତୁର ଏକ ବିଶେଷ ସଂଯୋଗ ରହିଛି । କାରଣ ଗୋଟିଏ ଗୋଟିଏ ଋତୁରେ ପ୍ରକୃତିଦେବୀ ଏକ ଏକ ରୂପରେ ସଜ୍ଜିତା ହେବା ଦେଖାଯାଏ । କିମ୍ବା ପ୍ରତିଋତୁରେ ନିଜର ସୌନ୍ଦର୍ଯ୍ୟକୁ ନୂଆ ନୂଆ ରଙ୍ଗରେ ପ୍ରକାଶ କରିଥାଏ । ଓଡ଼ିଶାର ପ୍ରକୃତି ତ ଏଇମିତି ରୂପସୀ, ଋତୁଚକ୍ରର ଆବର୍ତ୍ତନରେ ସେ ଆହୁରି ଅପରୂପ ହୋଇ ଉଠେ । ପ୍ରତ୍ୟେକଟି ଋତୁ ଓଡ଼ିଶାକୁ ତାର ବର୍ଣ୍ଣମୟ, ସଙ୍ଗୀତମୟ, ରୂପମୟ, ସ୍ୱତନ୍ତ୍ର ପ୍ରକୃତିକୁ ସାଥିରେ ଧରି ଆସିଥାଏ ଏବଂ ଏ ଧରିତ୍ରୀକୁ ତାର ବୈଚିତ୍ର୍ୟ ବିଳସିତ ସ୍ୱାତନ୍ତ୍ର୍ୟର ଅନୁପମ ରୂପସଜ୍ଜାରେ ସଜାଇଥାଏ । ଓଡ଼ିଶାର ଷଡ଼୍‌ଋତୁ ତାର ସ୍ୱକୀୟ ବୈଶିଷ୍ଟ୍ୟ ନେଇ ପରମ୍ପରା ଅନୁଯାୟୀ ପ୍ରକୃତିର ବୁକୁରେ ଆପଣା ଲୀଳା ବିସ୍ତାର କରି ଚାଲି ଯାଏ । ପ୍ରକୃତି ସହିତ ମନୁଷ୍ୟର ଯେଉଁ ନିଗୂଢ଼ ଆତ୍ମିକ ଯୋଗସୂତ୍ର ଅଛି, ତାହା ଏହି ଋତୁ ପର୍ଯ୍ୟାୟର ବିଚିତ୍ର ପରିବେଶର ସ୍ପର୍ଶରେ ଆପଣା ଚିତ୍ତ କମଳକୁ ସତେ ଯେମିତି ଶତଦଳରେ ବିକଶିତ କରି ଦିଏ । ଋତୁଚକ୍ରର ଆବର୍ତ୍ତନ ସୂତ୍ରରେ ହିଁ ଓଡ଼ିଶାର ଲୋକେ ନୂତନ ଭାବରେ ଆତ୍ମା ଆବିଷ୍କାର କରିବାକୁ ସମର୍ଥ ହୋଇଥାଆନ୍ତି । ଏପରିକି ପଲ୍ଲୀକବି ପ୍ରହେଳିକା ଜଗତରୁ ଋତୁକୁ ବାଦ ନ ଦେଇ ନାନା ଭାବରେ ବର୍ଣ୍ଣନା କରିଛନ୍ତି ।

**ଋତୁ** :- ଦୁଇ ମାସରେ ଯେ ଗୋଟିଏ ଋତୁ, ତାହା ଚମତ୍କାର ଭାବରେ ବର୍ଣ୍ଣନା କରାଯାଇଛି :-

**✡ କାହା ଜନ୍ମ ପୃଥିବୀରେ ଦୁଇମାସେ ହୁଏ**
**ଭାବି ଚିନ୍ତି ଠିକଭାବେ କହ ଭଲା ଟାଣେ ।**

ପ୍ରକୃତି ବିଷୟକ ପ୍ରହେଳିକାଗୁଡ଼ିକୁ ଦୁଇଟି ଭାଗରେ ବିଭକ୍ତ କରାଯାଏ ଯଥା :- (୧) ଉଦ୍ଭିଦ ଓ ବୃକ୍ଷଲତା-ପତ୍ର ସମ୍ବନ୍ଧୀୟ (୨) ଆକାଶ-ଗ୍ରହନକ୍ଷତ୍ର ଓ ପ୍ରକୃତି ସମ୍ବନ୍ଧୀୟ ।

**(କ) ଉଦ୍ଭିଦ ଓ ଲତା-ଗଛ-ପତ୍ର ସଂକ୍ରାନ୍ତ -**

ଓଡ଼ିଶାର ପ୍ରକୃତି ବର୍ଣ୍ଣାଢ୍ୟ ଓ ଚିତ୍ତାକର୍ଷକ । ନାନା ଫଳ ଓ ଫୁଲର ସମାରୋହରେ ଓଡ଼ିଶାର ପ୍ରକୃତି ଅପରୂପ ହୋଇ ସଜ୍ଜିତ ହୁଏ । ଓଡ଼ିଶାର ବିଭିନ୍ନ ରକମର ଗଛ, ନାନା ରଙ୍ଗର ଫୁଲ, ବିଭିନ୍ନ ପ୍ରକାର ଫଳ ସମୂହକୁ ଆଧାର କରି ଅନେକ ପ୍ରହେଳିକା ଶୁଣିବାକୁ

ମିଳେ । ଫୁଲର ରଙ୍ଗ ବା ସୁଗନ୍ଧ ସ୍ୱଭାବତଃ ପ୍ରହେଳିକା-କବିର ମନକୁ ଆକର୍ଷଣ କରିଥାଏ । ପୁଣି ଫଳର ସ୍ୱାଦ ବା ଆକୃତି ବା ପ୍ରୟୋଜନୀୟତା ସମ୍ପର୍କରେ ମଧ ପ୍ରହେଳିକା ରଚୟିତାର ଦୃଷ୍ଟି ଏଡ଼ାଇ ଯାଏ ନାହିଁ ।

ପ୍ରାଣୀ ଅପେକ୍ଷା ଉଦ୍ଭିଦ ଜଗତ୍ ପୁରୁଣା । ଗୋଟିଏ ଅର୍ଥରେ ଉଦ୍ଭିଦ ମଧ ପ୍ରାଣୀ, କେବଳ ଚଳନଶକ୍ତି-ରହିତ । ପ୍ରତ୍ନତତ୍ତ୍ୱବିଦ୍‌ଗଣ ସୃଷ୍ଟିର ଆଦି ଉତ୍ସ ଖୋଜିବାକୁ ଯାଇ ଉଭ ିଦ ସର୍ବପ୍ରାଚୀନ ବୋଲି ଉଲ୍ଲେଖ କରିଛନ୍ତି । ବିଶ୍ୱପ୍ରାଣ ଅକ୍ଷୁଣ୍ଣ ରଖିବାପାଇଁ ଉଭିଦର ପ୍ରୟୋଜନୀୟତା ସର୍ବଜନ ସ୍ୱୀକୃତ । ସମସ୍ତ ପ୍ରାଣୀଜଗତ ପ୍ରତ୍ୟକ୍ଷ ହେଉ ବା ପରୋକ୍ଷ ହେଉ, ଜୀବନ ଧାରଣ କରିବା ପାଇଁ ଉଭିଦ ପାଖରେ ଋଣୀ । ଉଭିଦ ଆମ୍ଭମାନଙ୍କ ନିତ୍ୟ ସହଚର । ଓଡ଼ିଶାର ପଲ୍ଲୀ ପ୍ରକୃତି ଚିର ଶ୍ୟାମଳ । ଘର ଅଗଣାରେ, ବାଟ-ଘାଟର ଗଛବୃଛ, ଲତା-ପତ୍ର, ଫୁଲ-ଫଳର ଦୃଷ୍ଟାନ୍ତ ଅତି ସାଧାରଣ ପଲ୍ଲୀର ପ୍ରହେଳିକା ରଚୟିତାର ଦୃଷ୍ଟି ଉଭିଦ ଜଗତକୁ ଆକୃଷ୍ଟ କରିଛି । ଯେଉଁ ଗଛ-ପତ୍ର ଆମ୍ଭମାନଙ୍କର ବ୍ୟାବହାରିକ ଜୀବନର ମଙ୍ଗଳ ସାଧନ କରେ, ସେଗୁଡ଼ିକ ସମ୍ବନ୍ଧରେ ଅଧିକ ପ୍ରହେଳିକା ରଚିତ ହୋଇଛି । ଯେପରି- ଆମ୍ବ, ପଣସ, କଦଳୀ, ପପେୟା, ବାଇଗଣ, ଓଲୁଅ, ସରୁ ମୂଳା, ବୋଇତାଳୁ, ତାଳ, ନଡ଼ିଆ, ତରଭୁଜ, ସପୁରୀ, ସିମା, ସଜନା, ଡାଳିମ୍ବ, ଧାନ, ନଳିତା, ଶିମ୍ବଳି ପ୍ରଭୃତି । ଏ ସବୁକୁ ଉପମିତ କରା ନଯାଇ ଅଧିକାଂଶ ଉପଜୀବ୍ୟ ଭାବରେ ରଚିତ ହୋଇଛି ।

ପ୍ରକୃତି ମଧରେ ଗଛ-ପତ୍ର, ଲତା, ଫୁଲ, ଫଳ, ପ୍ରତ୍ୟେକ ବିଷୟ ସମ୍ବନ୍ଧରେ ପଲ୍ଲୀକବିଙ୍କର ବାସ୍ତବତାବୋଧ ଓ ପ୍ରତ୍ୟକ୍ଷ ପରିଚୟରୁ ପ୍ରହେଳିକା ଗୁଡ଼ିକର ଜନ୍ମ । ତଥାପି ଉଭିଦ ଓ ଗଛ-ପତ୍ର ସଂକ୍ରାନ୍ତ ପ୍ରହେଳିକାଗୁଡ଼ିକ ଯେପରି ମନୁଷ୍ୟର ଜନ୍ମ-ମୃତ୍ୟୁର ଅଧୀନ, ସେହିପରି ଏହି ଧରଣର ପ୍ରହେଳିକାଗୁଡ଼ିକ ମାଧମରେ ଅନେକ ସମୟରେ ମନୁଷ୍ୟର ଜୀବନ ଦର୍ଶନ ବ୍ୟକ୍ତ ହୋଇଛି । ଏହି ଧରଣର ପ୍ରହେଳିକା ଗୁଡ଼ିକ ମଧରେ ପ୍ରହେଳିକା ରଚୟିତା ତାଙ୍କ ଆଖିରେ ଦେଖିବା ଜିନିଷ ଏବଂ ଅଭିଜ୍ଞତାକୁ ସୁନ୍ଦର ଭାବରେ ଚିତ୍ରଣ କରିଛନ୍ତି ।

**ବଗିଚା :-** ନାନାଦି ଗଛ-ବୃଛ, ଫଳ, ଫୁଲ ପ୍ରଭୃତିର ସମନ୍ୱୟରେ ତିଆରି ହୋଇଥାଏ ଏହି ସୁନ୍ଦର ବଗିଚା । ବଗିଚା ମନୁଷ୍ୟର ଅତିପ୍ରିୟ । ଏହି ବଗିଚାରେ ମନୁଷ୍ୟ ନାନାଦି ଗଛ, ଫଳ, ଫୁଲର ଚାଷ କରି ସୌଖୀନତାର ପରିଚୟ ଦେଇଥାଏ । ମନୁଷ୍ୟର ଏହି ପ୍ରିୟ ବଗିଚାକୁ ପାଥେୟ କରି ରଚିତ ହୋଇଛି ପ୍ରହେଳିକା ।

✡ ତିନି ବର୍ଣ୍ଣରେ ନାଁଟି ତାର ଫୁଲ ଫଳରେ ଭର୍ତ୍ତି,
ଗୋଡ଼ କାଟିଲେ ଘୋଡ଼ାଗାଡ଼ି ଚଢ଼ିଲେ ମନ ଫୁର୍ତ୍ତି ।
ପେଟ କାଟିଲେ ଜନମେ ପିଲା ଜନ ମନ ହରି,
କହରେ ମୋର ଭାଇ ଭଉଣୀ ମନ ଦୃଢ଼ କରି ।

ଏହାର ଉତ୍ତର ଯେ 'ବଗିଚା' ତାହା ସହଜରେ କହି ହୁଏ । ପୁଣି ପ୍ରହେଳିକା ମଧ୍ୟରେ ବଗିଚାର ମନୋରମ ଶୋଭା ଯେପରି ଚିତ୍ରିତ ହୋଇଛି, ତାହା ଦେଖିଲେ ମଣିଷ ଉଦାସ ହୋଇ ଯାଏ :-

✡ **ତିନି ଅକ୍ଷରରେ ନାମ, ମନୋହର ଶୋଭା ପାଏ,**
**ଆଖିରେ ପଡ଼ିଲେ ମଣିଷ ଉଦାସ ହୋଇଯାଏ ।**
**ଆଗ ଅକ୍ଷର ପର ଇକାର ଛାଡ଼ି ଖାଅ ବାଡ଼ି,**
**ମଝି ଅକ୍ଷର ଛାଡ଼ି ଦେଲେ ଶୁଣ ପିଲାର ରଡ଼ି ।**

**ବୀଜ (ମଞ୍ଜି)** ତରୁଲତା, ଗଛପତ୍ର ଫଳ ଓ ଫୁଲର ଜନ୍ମ ହୁଏ ବୀଜ ଅର୍ଥାତ୍ ମଞ୍ଜିରୁ । ସେଇ ବୀଜ ସମ୍ପର୍କରେ ପ୍ରହେଳିକା ରଚୟିତାଙ୍କର ରହିଛି ଅସୀମ କୌତୂହଳ, ଆଉ ସେଇ କୌତୁହଳର ବଶବର୍ତ୍ତୀ ହୋଇ ଗ୍ରାମ୍ୟକବି ବୀଜ ସମ୍ପର୍କରେ ପ୍ରହେଳିକା ରଚନା କରିଛନ୍ତି :-

✡ **ମାସ ପରେ ମାସ ମାଟି ତଳେ ଲୁଚି ଥାଏ ରହି,**
**ଯଥା ସମୟରେ ଉଠିପଡ଼େ ମାଟି ଭେଦ କରି ।**

ବୀଜ ମାଟି ତଳେ ଦୀର୍ଘଦିନ ଧରି ଲୁଚି ରହିବା ପରେ ଠିକ୍ ସମୟରେ ଚାରା ହୋଇ ଜନ୍ମେ ।

**ଗଛ :-** ବୀଜ ପରେ ଗଛ । ତୋଟା, ବଗିଚା ମଧ୍ୟରେ ପୂର୍ଣ୍ଣ ହୋଇ ରହିଛି ଗଛ । ସେଇ ଗଛର ଅବଲମ୍ବନରେ ପ୍ରହେଳିକା ଶୁଣାଯାଏ :

✡ **ମଣିଷ, ପଶୁ, ପକ୍ଷୀ, ପତଙ୍ଗର ଉପକାରାର୍ଥେ ଆସେ**
**ମରି ମଧ ମଣିଷର ବହୁ ଉପକାର କରିଯାଏ ।**

ଗଛ ସମସ୍ତଙ୍କର ଉପକାରୀ । ଜୀବିତ ଓ ମୃତ ଅବସ୍ଥାରେ ଗଛ ପ୍ରାଣୀର ଉପକାର ସାଧନ କରିଥାଏ । ଏହା ସୁନ୍ଦର ଭାବରେ ବ୍ୟକ୍ତ କରାଯାଇଛି ପୁଣି ଗଛକୁ ଗୋଟିଏ ମୁଣ୍ଡ ସହିତ ତୁଳନା କରି ଏବଂ ତାର ଯେ ସହସ୍ର ହାତ ଅର୍ଥାତ୍ ଶାଖା ପ୍ରଶାଖା ଅଛି- ଏହା ପ୍ରହେଳିକାରେ ସ୍ଥାନିତ ହୋଇଛି ।

✡ **ଏକ ମୁଣ୍ଡ ସିନା ସହସ୍ର ତାର ହାତ,**
**ଠିକ୍ କରି କହ ଭାଇ ଗଛ ନା ବୃକ୍ଷ ।**

**ପତ୍ର :-** ଗଛ ଅଜସ୍ର ପତ୍ରରେ ପରିପୂର୍ଣ୍ଣ ଥାଏ । ପତ୍ର ଗଛର ସୌନ୍ଦର୍ଯ୍ୟ ବୃଦ୍ଧି କରେ । ପତ୍ର ଓ ପତ୍ରର ରଙ୍ଗର ସୌନ୍ଦର୍ଯ୍ୟକୁ ଚମତ୍କାର ଭାବରେ ବର୍ଣ୍ଣନା କରାଯାଇଛି ।

✡ **ଫୁଲ ନାହିଁ, ଫଳ ନାହିଁ, ଗଛ ଭର୍ତ୍ତି ତା'ର**
**ଡାଳ ନାହିଁ, ସେଇଥିରେ ରଙ୍ଗର ବାହାର ।**

**ବଣ-ଜଙ୍ଗଲ :-** ଅଜସ୍ର ତରୁ,ଲତା ଫଳ, ଫୁଲ ଅଗଛ ପ୍ରଭୃତିର ସମନ୍ୱୟରେ ସୃଷ୍ଟି ହୁଏ ବଣ-ଜଙ୍ଗଲ । ସେଥିରେ ବାସ କରନ୍ତି ଭୟଙ୍କର ଜୀବଜନ୍ତୁ । ସେଇ ବଣ-ଜଙ୍ଗଲ ସମ୍ପର୍କରେ ଗ୍ରାମ୍ୟକବି ପ୍ରହେଳିକା ମାଧ୍ୟମରେ କହନ୍ତି :

✡ **ତିନି ବର୍ଣ୍ଣର ନାମଟି ତାର ଜୀବଜନ୍ତୁର ଆଶ୍ରୟ ସ୍ଥଳ,**
**ଆଦ୍ୟବର୍ଣ୍ଣ କାଟି ଓଲଟାଇଲେ ପରକୀୟା ବେଭାର ।**

✡ **ତିନିବର୍ଣ୍ଣରେ ନାମ ତାର କାନନ ବୁଝାଏ,**
**ପେଟ ତାର କାଟିଦେଲେ ପେୟ ବସ୍ତୁ ହୁଏ ।**
**ଲାଞ୍ଜ ତାର କାଟି ଦେଲେ ଶୁଣି ମାଡ଼େ ଡ଼ର ।**
**କି ନାମେ ଡାକନ୍ତି ତାକୁ କୁହ ଖର ଖର ।**

**ଗଛ-ବୁରୁଛ :-** ବିଭିନ୍ନ ଧରଣର ଗଛ-ବୁରୁଛ ଗଠନରେ ବୈଶିଷ୍ଟ୍ୟର ପାର୍ଥକ୍ୟ ପରିଲକ୍ଷିତ ହୁଏ । ସବୁ ଗଛ ଦେଖିବାକୁ ଏକ ପ୍ରକାର ନୁହଁନ୍ତି । କେଉଁ ଗଛ ସିଧା ହୋଇ ଠିଆ ହୋଇଛି ତ କେଉଁ ଗଛ ଲତା ପରି ମାଡ଼ିଛି । ସେଇ ଦିଗକୁ ଦୃଷ୍ଟି ରଖି ପ୍ରହେଳିକାର ରଚୟିତା ଉଦ୍ଭିଦ, ଲତା, ପତ୍ର ସଂକ୍ରାନ୍ତ ପ୍ରହେଳିକା ମଧ୍ୟରେ ପରିଚିତ ଓ ଅପରିଚିତ ତରୁଲତାର ବୈଶିଷ୍ଟ୍ୟ ସମ୍ପର୍କରେ ଶ୍ରୋତାମାନଙ୍କୁ ଅବହିତ କରାଇଛନ୍ତି ।

(ଅଶ୍ୱତ୍ଥ ଗଛ) ଓସ୍ତ ଗଛ - ଏଠାରେ ଓସ୍ତ ଗଛର ପତ୍ରକୁ ପାନ ସହିତ, ଫଳକୁ ଗୁଆ ସହିତ ଏବଂ ଡେମ୍ଫି ଭାଙ୍ଗିଲେ ନିର୍ଗତ ସେକୁ ଚୂନ ସହିତ ତୁଳନା କରିଛନ୍ତି ପଲ୍ଲୀକବି । ଏଥିରେ ପ୍ରହେଳିକା ରଚୟିତାର ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଶକ୍ତିର ପରିଚୟ ପ୍ରକାଶ ପାଇଛି ।

✡ **ଦେଖରେ ଭାଇ ଏ ଦେଶର ଗୁଣ**
**ଯେଉଁ ଗଛରେ ପାନ ଗୁଆ**
**ସେଇ ଗଛରେହିଁ ଚୂନ ।**

ପୁଣି ଓସ୍ତ ଗଛର କାଠରୁ ଯେ ବାଜା ତିଆରି ହୁଏ, ଏକଥା ମଧ୍ୟ ପ୍ରହେଳିକା ମାଧ୍ୟମରେ କୁହାଯାଇଛି :

✡ **କେଉଁ ଗଛର ବାଜା ବାଜେ ।**

**ସପୁରୀ ପଣଷ ଗଛ :-** ସପୁରୀ ଗଛଟି ଛୋଟ, କିନ୍ତୁ ଦେଖିବାକୁ ସୁନ୍ଦର । ଗଛ ଅଗରେ ସପୁରୀ ଫଳେ । ତାର ଚାରିପାଖରେ ସହସ୍ର ପତ୍ର । ସେଇ ପତ୍ର ଦ୍ୱାରା ଆବୃତ୍ତ ହୋଇଥିବା ସପୁରୀ ପଣଷ ଗଛଟିର ବର୍ଣ୍ଣନା ଅତି ସୁନ୍ଦର ଭାବରେ କରିଛନ୍ତି ପ୍ରହେଳିକା ରଚୟିତା :

✡ **ଅଗ କାଟି ପଗ କାଟି ପୋତିଥିଲି ଚାରା,**
**ଫୁଲ ନାହିଁ ଫଳ ନାହିଁ, ଖାଲି ପତ୍ରେ ଭରା ।**

ପୁଣି ସପୁରୀ ପଣସ ଦେଖିବାକୁ ଖୁବ୍ ସୁନ୍ଦର । ତାର ଦେହରେ ବାର କୋଡ଼ି ଅର୍ଥାତ୍ ସହସ୍ର ଆଖି । ଏଦିଗକୁ ମଧ ପ୍ରହେଳିକା କବି ଦୃଷ୍ଟି ନିକ୍ଷେପ କରିଛନ୍ତି । ସପୁରୀ ଗଛଟି ହାତେ ମାତ୍ର ଲମ୍ବା ହୁଏ ଏବଂ ତାର ପତ୍ର ଗଛଠାରୁ ବଡ଼ ଅର୍ଥାତ୍ ପତ୍ରକୁ ଦେଢ଼ ହାତ ବୋଲି ବର୍ଣ୍ଣନା କରିଛନ୍ତି ଗ୍ରାମ୍ୟକବି :

✡ **ଗୋଟିଏ ଗଛରେ ଗୋଟିଏ ବୁଢ଼ୀ**
**ଆଖି ତାହାର ବାରକୋଡ଼ି ।**

✡ **ଏକହାତ ଗଛରେ, ଦେଢ଼ହାତ ପତ୍ର ।**

**ସପୁରୀ ପତ୍ର :-** କେବଳ ସପୁରୀ ଗଛ ନୁହେଁ, ସପୁରୀ-ପତ୍ର ସମ୍ପର୍କରେ ପ୍ରହେଳିକା ଶୁଣିବାକୁ ମିଳେ । ସପୁରୀ ପତ୍ରଟି କରତ ପରି ଧାରୁଆ ଏବଂ ପତ୍ର ଅଗଟି ଯେ ଗୋଜିଆ, ଏହାମଧ ପ୍ରହେଳିକା ରଚୟିତାଙ୍କର ଦୃଷ୍ଟି ଏଡ଼େଇ ଯାଇନି । ତେଣୁ ଏହା ସମ୍ପର୍କରେ କହନ୍ତି :

✡ **କରତ ଦାନ୍ତି ଦୁଇ ଧାର / ଅଗଟି ତାର ଗୋଜିଆ**
**ଯିଏ ନ କହି ପାରିବ / ତାକୁ ଡାକିବ ଭକୁଆ**






ମୂଲ୍ୟ -୪୨/- ଟଙ୍କା




ମୂଲ୍ୟ -୩୦/- ଟଙ୍କା

ସାନ୍ତାଳମାନଙ୍କ ସମ୍ପର୍କରେ ସୂଚନା ସହ
୧୫ଟି ସଚିତ୍ର ମୌଳିକ ଗଳ୍ପ ସଙ୍କଳନ ।



୧୧୩୧୦*. ଜଇଶୋଳ ମାଧିଆ ! ଜନମ କାଳରୁ ନାଁ ଦିଆ ।

(କଟକ ଜିଲ୍ଲାର ଜଇଶୋଳ ନାମକ ଗ୍ରାମରେ ମାଧବ ନାମକ ବ୍ୟକ୍ତିଙ୍କ ନାମରେ ପଦ )

୧୧୩୧୧. ଜଉ (=ଲାଖ) ଘରେ ରହେ ଯିଏ,
ନିଆଁର ଭୟ ରଖେ ସିଏ ।

୧୧୩୧୨. ଜଉ କଉଡ଼ି ଦିଅ ଗୋ
ବୋହୂ କଉଡ଼ି ଦିଅ
ନାଇଁ ଦେବତ ଚୁଟିଆ ମୂଷା କହିଯାଇଛି
ଚାଉଳ ମୁଠେ ଦିଅ ।

୧୧୩୧୩. ଜଖମ ଖାଇବା/ଲାଗିବା ।

(ଅନିଷ୍ଟ /ଅମଙ୍ଗଳ ହେବା । ଯେପରି କୁହାଯାଏ - ଦୁଷ୍ଟ ସହିତ ବନ୍ଧୁତା ଅମଙ୍ଗଳକାରୀ ଅଟେ । ମଣିଷକୁ ଜଖମ ଲାଗିବ ହିଁ ଲାଗିବ ।)

୧୧୩୧୪. ଜଖମ ଭରିବା ।

(ଦୁଃଖ ଭୁଲିଯିବା । ଯେପରି କହନ୍ତି - ପୁତ୍ରର ମୃତ୍ୟୁ ହେଲେ ଜନନୀର ସେହି ଜଖମ କେବେହେଲେ ଭରେ ନାହିଁ ।)

୧୧୩୧୫. ଜଖମ ପରେ ଜଖମ ଖାଇବା ।

(ଲଗାତାର କଷ୍ଟ ଉଠାଇବା । ଯେମିତି କହନ୍ତି - ଗାନ୍ଧିଜୀ ଜଖମ ପରେ ଜଖମ ଖାଇ ମଧ୍ୟ ଭାରତବର୍ଷକୁ ସ୍ୱାଧୀନ କରିବାର ଚେଷ୍ଟାରୁ ନିବୃତ୍ତ ହୋଇନଥିଲେ ।)

୧୧୩୧୬. ଜଖମରେ ମଲମ ଲଗାଇବା ।

(ସାନ୍ତ୍ୱନା ଦେବା/କଷ୍ଟ ଦୂର କରିବା । ଯେପରି କହନ୍ତି - କ୍ଷମା ଏକ ମହତ ଗୁଣ, କିନ୍ତୁ ଅନ୍ୟକୁ ସନ୍ତାଉଥିବା ବା ଦୁଃଖ ଦେଉଥିବା ଲୋକର ଜଖମରେ ମଲମ ଲଗାଇବା ଉଚିତ୍ ନୁହେଁ ।)

---

* ୬ଷ୍ଠ ଖଣ୍ଡ ଗ୍ରନ୍ଥର ଶେଷ କ୍ରମିକ ନଂ ୧୧୩୦୯ ଉତ୍ତାରୁ ଏହି ଗ୍ରନ୍ଥର କ୍ରମିକ ନଂ ଆରମ୍ଭ ହୋଇଛି ।

୧୧୩୧୭. ଜଗ୍ ମଗ୍ ଜଗ୍‌ମଗ୍ ।

(ହସ-ଖୁସିର ଅବସ୍ଥା । ଯେପରି କହନ୍ତି -ତାଙ୍କ ଗାଁରେ ଜଗ୍‌ମଗ୍-ଜଗ୍‌ମଗ୍ ବେଳେ ଆମ୍ଭ ଗାଁରେ ଦୁଃଖ ହିଁ ଦୁଃଖ ।)

୧୧୩୧୮. ଜଗତ୍‌ଟା କା'ର (= କାହାର)?

ଜଗତ୍ 'ଟାକା'ର (= ଟଙ୍କାର)।

(ଅର୍ଥ ହିଁ ସଂସାରରେ କେବଳ ରାଜ କରେ । ସମ୍ରାଟ୍ ଚନ୍ଦ୍ରଗୁପ୍ତଙ୍କର ଯୋଗଜନ୍ମା ପ୍ରଧାନମନ୍ତ୍ରୀ ଚାଣକ୍ୟ ତାଙ୍କର 'ଅର୍ଥଶାସ୍ତ୍ର'ରେ ସଂସାରରେ ଅର୍ଥ ସମ୍ପର୍କୀୟ ନୀତି ନିୟମ ଆଜକୁ ୨୩୩୦ ବର୍ଷ ପୂର୍ବରୁ ମାନବ ସମାଜର କଲ୍ୟାଣ ପାଇଁ ପ୍ରଣୟନ କରି ଦେଇ ଯାଇଛନ୍ତି ।)

୧୧୩୧୯. ଜଗତରେ ଭଲ କିଏ, ମନକୁ ପାଇଲା ଯିଏ ।

୧୧୩୨୦. ଜଗତ ସାରା ବେଢ଼ିଛି ଜାଲ,

ଛପି ବଞ୍ଚିବୁ କାହିଁ ସେ ଖୋଲ ।

(ଈଶ୍ୱର ସର୍ବତ୍ର ବିଦ୍ୟମାନ । ତାଙ୍କ ଦୃଷ୍ଟିକୁ ଏଡ଼େଇ ଯାଇ ହେବ ନାହିଁ ।)

୧୧୩୨୧. ଜଗତରେ ଥିଲେ ସମ୍ବନ୍ଧ ଯୋଡ଼ ।

(ଯେ ପର୍ଯ୍ୟନ୍ତ ପ୍ରାଣ ଅଛି, ସେ ପର୍ଯ୍ୟନ୍ତ ସଂସାରରେ ନାତା-ରିସ୍ତା (=ସମ୍ବନ୍ଧ) ରହିଥାଏ । ମୃତ୍ୟୁପରେ ତାହା ଆଉ ପୂର୍ବପରି ରୁହେ ନାହିଁ । )

୧୧୩୨୨. ଜଗତର ଛାଞ୍ଚ ଦୁଇଜଣ,

ଜଣେ 'ରାମ' ଆରଜ 'ଦାମ'

ଜଣେ ମୋକ୍ଷ ଦାତା,

ଜଣେ ସୁଧାରେ କାମ ।

(ଯିଏ ଈଶ୍ୱରଭକ୍ତ ତାଙ୍କୁ ମୋକ୍ଷ ପ୍ରାପ୍ତି ହୁଏ । ଯାହା ପାଖରେ ଧନ ଥାଏ ସେ ସବୁ କାମ କରି ପାରେ, ଯିଏ ନିର୍ଦ୍ଧନ ତାର କିଛି କାମ ହୋଇ ପାରେ ନାହିଁ ।)

୧୧୩୨୩. ଜଗତ ଭଲକୁ ଭ୍‌ଲ, ଭେଲକୁ ଭେଲ ।

(ସଂସାରରେ ଭଲ ଲୋକଙ୍କର ଭଲ ହିଁ ହୋଇଥାଏ । ସେହିପରି ଖରାପ ଲୋକଙ୍କର ଖରାପ ହୋଇଥାଏ ।)

୧୧୩୨୪. ଜଗତଯାକରେ ଭଗ(କ)ତି ମିଠା,

ସାହାସ୍ର ମିଠା ଗୀତା ।

କୁଟୁମ୍ବଯାକରେ ଜନନୀ ମିଠା,
ବାନ୍ଧବ ମିଠା ପିତା ।
ଅରୂପଯାକରେ ସ୍ୱରୁପ ମିଠା,
ମଣିଷ ମିଠା ଗୋରା,
ଦେବତାଯାକରେ କାଳିଆ ମିଠା,
ସବୁଠୁଁ ମିଠା କୋରା ।
ପାଣିଯାକରେ ପଇଡ଼ ମିଠା,
ପତର ମିଠା ପାନ,
ସ୍ତିରୀ ଶୋଭାବନ ରାଧିକା ମିଠା,
ପୁରୁଷରେ ଭଗବାନ ।

୧୧୩୨୫. ଜଗତି ଉପରେ ବସିଲେ କୁଆ,
ଗରୁଡ଼ ବୋଲିକି ହୋଇବ କୁହା ?

୧୧୩୨୬. *ଏକାର୍ଥରେ* - ହଜାରେ ଗଧରେ ବାଛିଲେ ଭଲ
ବଜାରେ ନୁହଁନ୍ତି ଘୋଡ଼ାରେ ତୁଲ ।
(ନୀଚ ଉଚ୍ଚ ଆସନରେ ବସିଗଲେଉଚ୍ଚ ହୁଏ ନାହିଁ । ଉଚ୍ଚ ହେବା ଲାଗି ଶକ୍ତି,ସାମର୍ଥ୍ୟ, ସାଧନା ଓ ସଦ୍‌ଗୁଣ ସହିତ ବିଭୁକୃପା ନିହିତ ହେବା ଆବଶ୍ୟକ ।)

୧୧୩୨୭. ଜଗତୀ ଉପରେ ହନୁ,
ଦେଖୁଛି ସାରା ଟାଉନୁ ।
(କାବ୍ୟପୁରୁଷ ଚେତନାର ଜଗତୀ ଉପରେ ଉଭା ହୋଇ ଦେଖୁଛି ।)

୧୧୩୨୮. ଜଗତେ ଦେଖ ଯଜ୍ଞ ଯେତେ,
ତପ ସମାଧି ନଦୀ ଅର୍ଥେ (ତୀର୍ଥସ୍ଥାନ) ।

୧୧୩୨୯. ଜଗତେ ବୋଲନ୍ତି ତୋତେ ବାଇ ଠାକୁରାଣୀ,
ବାଇ ପ୍ରାୟେ ବୁଲୁଥାଉ ହୋଇ ମୋ ଘରଣୀ ।
ଏକଘର କରାଉ ସହସ୍ର ଘର ଭାଙ୍ଗି,
ସହସ୍ର ଘର କରାଉ ଏକଘର ଭାଙ୍ଗି ।
(ବଳରାମ ଦାସଙ୍କ- ଲକ୍ଷ୍ମୀପୁରାଣରେ ଲକ୍ଷ୍ମୀଙ୍କୁ ଭଗବାନଙ୍କର ଉକ୍ତି )

୧୧୩୩୦. ଜଗତେ କେବଳ;
ଜନେ ହସିବେ ଏହି ତହୁଁ ଫଳ ।
(କେତେକ ହାସ୍ୟରସ ଘଟଣା ବର୍ଣ୍ଣିତ ହୋଇଥିବା ଗୀତର ଘୋଷା)

୧୧୩୩୧. ଜଗନ୍ନାଥ ଯେ ଷୋଳ କଳା
ତହିଁରୁ ଏକ ନନ୍ଦବଳା ।

୧୧୩୩୨. ଜଗନ୍ନାଥ ମନ୍ଦିର ଗଲେ,
ସୁଆର ଝାଣ୍ଟ (=ଝାଡ଼ୁ) ଖାଇଲେ ।
(ସୁଆରମାନେ ଜଗନ୍ନାଥଙ୍କ ଦର୍ଶନକୁ ଆସୁଥିବା ଭକ୍ତମାନଙ୍କୁ ଝାଡ଼ୁ ସଦୃଶ ବେତମୁଠା ବାଡ଼ିରେ ଛୁଆଁଇ ଦକ୍ଷିଣା ମାଗନ୍ତି ।)

୧୧୩୩୩. ଜଗନ୍ନାଥଙ୍କର ଆଟିକା ।
(ଜଗନ୍ନାଥଙ୍କ ପାଖରେ ଚିରକାଳ ଭୋଗ ଲାଗିବାପାଇଁ ଭକ୍ତ ଦେବା ଧନ ।)

୧୧୩୩୪. ଜଗନ୍ନାଥଙ୍କ ମହାପ୍ରସାଦ, ନା ଅଛି ଝଗଡ଼ା, ନା ଅଛି ଛୁଆଁ ଛୁତ ।
(ଶ୍ରୀ ଜଗନ୍ନାଥଙ୍କ ମହାପ୍ରସାଦ ଗ୍ରହଣ କଲାବେଳେ କୌଣସି ପ୍ରକାର ଝମେଲା ହୁଏ ନାହିଁ, କାରଣ ସେଠାରେ ଜାତି-ପାନ୍ତିର ବିଚାର ନଥାଏ । ଜାତ-ପାନ୍ତି ଛୁଆଁଛୁତର ବିଚାର ଭାରତବର୍ଷରେ ସବୁଠାରେ ହୋଇଥାଏ । ମାତ୍ର ଜାତି ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏକତ୍ର ବସି ଶ୍ରୀ ଜଗନ୍ନାଥଙ୍କଠାରେ ଲାଗିହୋଇ ଥିବା ଅନ୍ନ, ଡାଲି, ତରକାରୀ ଇତ୍ୟାଦି ଖାଆନ୍ତି ।)

୧୧୩୩୫. ଜଗନ୍ନାଥଙ୍କର ଭାତ, ଜଗତ ପାତେ ହାତ ।
(ଶ୍ରୀ ଜଗନ୍ନାଥଙ୍କର ମହାପ୍ରସାଦ ପାଇବା ପାଇଁ ସମସ୍ତ ହିନ୍ଦୁ ଧର୍ମାବଲମ୍ବୀ, ଜାତି ବର୍ଣ୍ଣ ନିର୍ବିଶେଷରେ ଲାଳାୟିତ ଥାଆନ୍ତି ।)

୧୧୩୩୬. ଜଗନ୍ନାଥଙ୍କର ବଢ଼େଇ
କାହାକୁ ଦିଅନ୍ତି ପାଟ ପୀତାମ୍ବରୀ
(କାହାକୁ ଦିଅନ୍ତି ଖିରୀ ଖିରୀସା)
କାହାକୁ ଦିଅନ୍ତି ଗଢ଼େଇ ।
(ମହାପ୍ରଭୁ ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ଅନୁକମ୍ପାରୁ ଲୋକେ ଧନୀ ଓ ଦରିଦ୍ର ହୁଅନ୍ତି । ସୁଖ/ଦୁଃଖ ତାଙ୍କରି ଦାନ ।)

୧୧୩୩୭. *ଏକାର୍ଥରେ* - ଜଗନ୍ନାଥଙ୍କର ରୀତି
କାହାକୁ ଦିଅନ୍ତି ପଲଙ୍କ ସୁପାତି (= ଉତ୍ତମ ଶେଯ)
କାହାକୁ ଦିଅନ୍ତି ଶାସ୍ତି ।

୧୧୩୩୮. *ଏକାର୍ଥରେ* - ଜଗନ୍ନାଥ ,

କାହାକୁ ଦେଇଛ ଖିରୀ ସରପୁଳି

କେ ଭୋକରେ ମୁଣ୍ଡେ ମାରେ ହାତ ।

୧୧୩୩୯. *ଏକାର୍ଥରେ* -ଜଗା ବଳିଆ,

କାହାଘରେ ଧାନ ମୁଣ୍ଡିଏ ନ ଥାଏ

କାହା ଘରେ ଧାନ ଓଳିଆ ଓଳିଆ ।

(ଜଗନ୍ନାଥ-ବଳଭଦ୍ରଙ୍କର ଭିଆଣ- କାହାଘରେ ଧାନର ମୁଣ୍ଡ ଅଂଶ ବି ଥାଏ ନି; ଅଥଚ ଆଉ କାହାଘରେ ଡୋଲି ଡୋଲି ଧାନ ମହଜୁତ ଥାଏ ।)

୧୧୩୪୦. ଜଗନ୍ନାଥ କାହିଁପାଇଁ

କୂଟବୁଦ୍ଧି କଲେ

ଛାଡ଼ି ମହାଲକ୍ଷ୍ମୀ ଦେହି (=ଦେହ)

କାହିଁକି ଯେ ରହିଲେ

ଲୋ ବନ୍ଧୁ କହିଥାନ୍ତେ ଯେବେ

ମୂଣୋହିଁ(=ମଣୋହି) କୋଠରେ

କର ଧରିଥାନ୍ତି ତେବେ ।

୧୧୩୪୧. ଜଗନ୍ନାଥଙ୍କ ମୁଣ୍ଡେ ମାଳା ଚଢ଼ାଇ

ଗରୁଡ଼ ଖମ୍ବ ପାଖେ ଦୀପ ଜଳାଇ ।

ମନାସିଲେ ନିଜର ମଙ୍ଗଳ କଥା

ପୁତ୍ର ବିହୀନ ମନ ଖାଉଛି ଚିନ୍ତା ।

୧୧୩୪୨. ଜଗନ୍ନାଥେ କାଳିଆ

ଜଗନ୍ନାଥଙ୍କ ଲୋକବାକ କାଇଞ୍ଚମାଳିଆ ।

(ଜଗନ୍ନାଥଙ୍କ ରୂପ ସୁନ୍ଦର ନୁହେଁ, କିନ୍ତୁ ସେ ନିଜ ଭକ୍ତଙ୍କୁ ସୁନ୍ଦର ରୂପରେ, ସୁଖ ସୌଭାଗ୍ୟରେ ରଖିଥାନ୍ତି । )

୧୧୩୪୩. ଜଗନ୍ନାଥ କା ଭାତ୍, ଜଗତ ପସାରେ ହାତ୍ ।

୧୧୩୪୪. ଜଗଲା ଘରେ ଚୋରୀର କଥା

ଜାଗରଣେ ଭୟଂ ନାସ୍ତି

୧୧୩୪୫. ଜଗା ଖେଚଡ଼ି ।

(ଗୁରୁ ଚଣ୍ଡାଳ ଦୋଷ ସଦୃଶ । ଯେପରି ଗାଉଁଲି ବୋଲି ସହିତ ଓଡ଼ିଆ ବାଗ୍‌ଧାରାର ସମିଶ୍ରଣ ହେଲେ ଏହାକୁ 'ଜଗା ଖେଚଡ଼ି' ବୋଲି କୁହାଯାଇଥାଏ ।)

୧୧୩୪୬. ଜଗାଇ ମାରଇ ରାତିଯାକ କେଳି
ଆଗରେ (=ସମସ୍ତଙ୍କ ଆଗରେ) ଲଗାଇ ଆଗ ।
ଦଗାଦେଇ ପୁଣି ଭଗାରି ହସାଇ
ଲଗାଇ କଳଙ୍କ ଦାଗ ।

୧୧୩୪୭. ଜଗି ଥାରେ ଭଗିଆ
ମାରିନେବରେ ଭୋଗିଆ ।

୧୧୩୪୮. ଜଗିଆ ଜଗିଛି
ଭୋଗିଆ ଭୋଗୁଛି ।

୧୧୩୪୯. *ଏକାର୍ଥରେ* - ଜଗିଥିବ ଜଗିଆ ମାରିନେବ ଭଗିଆ ।

( ଜଣେ ଧନସମ୍ପତ୍ତି କମାଏ , କୃପଣ ପରି ସଞ୍ଚି ତାକୁ ଜଗି ରହେ । ସେହି ବଂଶର କିମ୍ବା ଆଉ କେହି ଜଣେ ତାକୁ ଭୋଗକରେ । ମଉଜ ମଜଲିସ୍‌ରେ ଉଡ଼ାଏ )

୧୧୩୫୦. ଜଗୁଆ ହୋଇଛୁ ଧନର କିଆଁ ?
ଜଗୁଆ ନୋହୁଛୁ ମନର କିଆଁ ?

(କେବଳ ଧନର ଜଗୁଆଳି ହେଲେ, ସେ ମଲାପରେ କୋଠ ଧନକୁ ଭୂତମାନେ ଅର୍ଥାତ୍ ବଂଶଧରମାନେ ଖାଆନ୍ତି ଅର୍ଥାତ୍ ନଷ୍ଟ କରି ଦିଅନ୍ତି । ମାତ୍ର ମନର ଜଗୁଆଳି ହେଲେ ମଲା ଅନ୍ତେ ମନ ବଳରେ ସେ ଯୋଗଜନ୍ମା ହୋଇ ଜନମାନସରେ ଚିରଦିନ ବିରାଜମାନ କରୁଥାଏ ।)

୧୧୩୫୧. ଜଙ୍ଗଲି ନେଉଳ ପୋଷା ନ ମାନେ,
ମନ ସର୍ବଦା ତାର କିଆ ବଣେ ।

୧୧୩୫୨. ଜଙ୍ଗଲି ପକ୍ଷୀର ଅଣ୍ଡାଟିଏ ବି ଲାଭ ।

୧୧୩୫୩. ଜଙ୍ଗଲରେ କାଠ ବୋଝ ବାନ୍ଧିବା ।

(ବ୍ୟର୍ଥ କାର୍ଯ୍ୟ କରି ସମୟ ନଷ୍ଟ କରିବା ।)

୧୧୩୫୪. ଜଙ୍ଗଲରେ ମଙ୍ଗଳ, ବସ୍ତିରେ ମହର୍ଗ ।

(ସାଧୁ ସନ୍ୟାସୀ ଜଙ୍ଗଲରେ ରହନ୍ତି । ସେମାନଙ୍କୁ ସେଠାରେ ଖାଇବା ପାଇଁ ପ୍ରଚୁର ଫଳମୂଳ ମିଳିଥାଏ । କିନ୍ତୁ ଗ୍ରାମରେ ବାସ କରୁଥିବା ଅନେକେ ଅଭାବରୁ ଭୋକ ଉପାସରେ କଟାନ୍ତି ।)

୧୧୩୫୫. ଜଙ୍ଗଲରେ ମୟୂର ନାଚିଲେ କିଏ ଦେଖେ ?

(ଯେଉଁଠାରେ କେହି ବୁଝିବା-ସୁଝିବା ଲୋକ ନଥାନ୍ତି ସେଠାରେ ନିଜର ଗୁଣ ପ୍ରଦର୍ଶନ କରିବା ନିରର୍ଥକ ।)

୧୧୩୫୬. ଜଙ୍ଗ୍ ଲାଗିବା ।

(ନିକମା ହୋଇଯିବା/ବେକାମ ହୋଇଯିବା/ କାମ ନ କରିବା । ଯେମିତି କହନ୍ତି - ତାର ଅକଲରେ ଜଙ୍ଗ୍ ଲାଗିଯାଇଛି /ତୁମ ହାତରେ କ'ଣ ଜଙ୍ଗ୍ ଲାଗି ଯାଇଥିଲା ଯେ ସେ ତୁମକୁ ବାଡ଼େଇ ଚାଲିଗଲା ଏବଂ ତୁମେ ଭକୁଆ ହୋଇ ରହିଗଲ ।)

୧୧୩୫୭. ଜଙ୍ଗଲରେ ଝକ୍ ମାରିବା ।

(ସମୟ ନଷ୍ଟ କରିବା /ଜଙ୍ଗଲରେ ବାଟ ବଣା ହୋଇ ବୁଲିବା । ଯେପରି କୁହାଯାଏ - ରଘୁନାଥ ଘରକୁ ଫେରୁଥିବା ବେଳେ ଜଙ୍ଗଲ ରାସ୍ତାରେ ଝକ୍ ମାରୁଛି ।)

୧୧୩୫୮. ଜଙ୍ଗଲରେ ରହିବା / ବାସ କରିବା ।

(କୁବ୍ୟବସ୍ଥା ଦେଖାଯିବା । ଯେପରି କୁହାଯାଏ - ଅମୁକ ରାଜ୍ୟରେ ଏବେ ଏପରି କୁବ୍ୟବସ୍ଥା ଦେଖାଦେଇଛି ଯେ ସେଠାରେ ରହିବା ଜଙ୍ଗଲରେ ବାସକରିବା ସଦୃଶ ।)

୧୧୩୫୯. ଜଙ୍ଗଲରେ ମଙ୍ଗଳ ।

• (ଶୂନଶାନ ସ୍ଥାନରେ ଚହଳ-ପହଳ । ଜନମାନବ ନଥିଲା ସ୍ଥାନ ଅର୍ଥାତ୍ ଜଙ୍ଗଲ ମଧ୍ୟରେ କୋଳାହଳ । ଯେପରି କହନ୍ତି - କେବେ କେବେ ନିର୍ଜନ ଖୋଲା ପଡ଼ିଆରେ ନାଟ ବା ତାମସା ହେଲେ ସେଇ ଶୂନ୍ୟ ଭୂଇଁ ଜଙ୍ଗଲରେ ମଙ୍ଗଳ ସଦୃଶ ପ୍ରତୀୟମାନ ହୁଏ । )

୧୧୩୬୦. ଜଙ୍ଗଲି କାନୁନ ।

(ସମ୍ପୂର୍ଣ୍ଣ ଅବ୍ୟବସ୍ଥା/କୌଣସି ନିୟମ କାନୁନ ନଥିବା । ଯେପରି କହନ୍ତି - ଯେଉଁଠି ଜଙ୍ଗଲି କାନୁନ ଦେଖାଯାଏ, ସେଠାରେ ଅରାଜକତା ବ୍ୟାପିବାକୁ ଡ଼େରି ଲାଗେ ନାହିଁ ।)

୧୧୩୬୧. ଜଙ୍ଘ ବଞ୍ଚାଇବା ।

(ମେହେନତ କାମ ନ କରିବା । କଷ୍ଟକର କାମରୁ ଦୂରେଇ ରହିବା ।)

୧୧୩୬୨. ଜଙ୍ଘ ପତଳା ହେବା ।

(ଶକ୍ତି ହୀନ ହେବା ।)

୧୧୩୬୩. ଜଙ୍ଘ ଦେବା ।

(ମରିବା ପୂର୍ବରୁ କାହାରି ମୁଣ୍ଡକୁ କୋଳରେ ଥୋଇବା ।)

୧୧୩୬୪. ଜଙ୍ଘ ଉଧାର ଦେବା ।

(ନିର୍ଲ୍ଲଜ ହେବା/ ନିର୍ଲ୍ଲଜ କାର୍ଯ୍ୟ କରିବା ।)

୧୧୩୬୫. ଜଙ୍ଘର ବଳ ।
(ଭରସା/ବାହୁବଳ /କାମ ଇଚ୍ଛା ପୂରଣ କରିବା ଶକ୍ତି ବା କ୍ଷମତା ।)

୧୧୩୬୬. ଜଙ୍ଘ ଠୁକିବା ।
(ଲଢ଼ାଇ ପାଇଁ ଆହ୍ୱାନ କରିବା ।)

୧୧୩୬୭. ସ୍ତ୍ରୀ - ଜଙ୍ଘାଙ୍ଗ ଭାଙ୍ଗିନି
ଦାନ୍ତକାଠି କନି (=କଲି)
ବାଆପାଣି କନି ଆହାର
'ତୁମେ ତ ହେଲଗୋ
ଦୂର ପରବାସୀ
ମୋତେ କରିଗଲ କାହାର ?'

ପୁରୁଷ - 'ଭାତ ଦେଇଗନି (= ଦେଇଗଲି)
ଖାଇବୁ ଲୋ ଗୋରୀ
ଲୁଗା ଦେଇଗନି ପିନ୍ଧିବୁ
ମୋ ଠାରୁ ଯେଉଁ ଲୋ
ସୁନ୍ଦର ଭାଇ
ତା' କୁଳରେ କୁମର ବେଇବୁ ।'

ସ୍ତ୍ରୀ - 'ଗୁହାଳ ପିଢ଼ାରେ
ପିତାତରଡ଼ା ଲୋ
ମା'କୁ ବୁଲାଇ ନେଉ
ଦେଉର(= ଦିଅର) କୁଳରେ
କି ପୁଅ ବେଇବି
ଧିକ ତୋ ଜୀବନ ଯାଉ ।'

ପୁରୁଷ - 'ନାଳୁଆରେ ପାଣି
ଚବର ଚବର
ବାହାଲରେ(=ଖାଲ ଜମିରେ) ପାଣି କେତେ !
ନାଲି ଗାମୁଛାରେ
ମାଡ଼ ମାରିବି ଲୋ
ତିନି ଦିନ ପରିଯନ୍ତେ । '

ସ୍ତ୍ରୀ - 'କି ମାଡ଼ ମାରିବୁ
କି ସୁଖ ସାରିବୁ
ପଣତେ ପୁଛିବୁ (=ପୋଛିବୁ) ଲୁହ ।'
ପୁରୁଷ - 'ଯଦି ମୁଁ ବିଦେଶ
ନ ଯିମିଲୋ (=ଯିବିଲୋ) ଗୋରୀ
କୁଠାରେ(=କୋଠାରେ) ଖେଳିବ ପୁଅ !'

୧୧୩୬୮. ଜଞ୍ଜାଳରେ ପଡ଼ିବା/ଫସିବା ।
(ଝଞ୍ଜଟରେ ପଡ଼ିବା । ଯେପରି କୁହାଯାଏ - ଶ୍ରୀଲଙ୍କାକୁ ଶାନ୍ତି ସୈନ୍ୟ ପଠେଇ ତତ୍କାଳିନ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧି ଜଞ୍ଜାଳରେ ଫସି ଯାଇଥିଲେ ।)

୧୧୩୬୯. ଜଟାୟୁ ପକ୍ଷୀର ରଥ ଗିଳିବା ।
(ସୀତା ହରଣକାରୀ ରାବଣର ରଥ ଗିଳିବାକୁ ଯାଇ ଜଟାୟୁ ପକ୍ଷୀ ନିହତ ହୋଇଥିଲା । ସେହିପରି ପରାକ୍ରମୀ ସହିତ ଦୁର୍ବଳର ଶତ୍ରୁତା ଭୟଙ୍କର ହୁଏ ।)

୧୧୩୭୦. ଜଠରାନଳ, ମହାପ୍ରଳୟ ।

୧୧୩୭୧. ଜଡ଼୍ ଉଠାଇବା/କାଟିବା/ଖୋଳିବା ।
(ଏପରି ଭାବରେ ନଷ୍ଟ ହେବା ଯେପରି ବସ୍ତୁର ପୂର୍ବାବସ୍ଥା ଜାଣିବା ମୁସ୍କିଲ । ଅର୍ଥାତ୍ ସମୂଳେ ନଷ୍ଟ କରିବା । ଯେପରି କୁହାଯାଏ - ମୁଁ ତୁମର ଖାନଦାନକୁ ଜଡ଼୍‌ରୁ ଉଠାଇଦେବି ।)

୧୧୩୭୨. ଜଡ଼ (=ଚେର) ଉପାଡ଼ି ଦେବା ।
(ସମୂଳେ ନଷ୍ଟ କରିଦେବା ।)

୧୧୩୭୩. ଜଡ଼(=ଚେର) କାଟେ ତଳେ ତଳେ,
ଉପରେ ଉପରେ ଜଳ ଢ଼ାଳେ ।
(ଚେର କାଟି ଗଛ ଅଗରେ ଜଳ ଢ଼ାଳିବା ନିରର୍ଥକ ।)

୧୧୩୭୪. *ଏକାର୍ଥରେ* - ଉପରେ ଭଲ, ଭିତରେ ଭେଲ ।

୧୧୩୭୫. ଜଡ଼୍ ଜମାଇବା ।
(ଦୁଶ୍ଚରିତ୍ର ଲୋକ ସହିତ ସାଙ୍ଗ୍ ହେବା ଖରାପ । ସତ୍ ଲୋକଠାରେ ମଧ 'ଜଡ଼ଜମାଇ ବସେ' ଯଦି ସେ ଦୁଷ୍ଟ ପ୍ରବୃତ୍ତିର ହୋଇଥାଏ । )

୧୧୩୭୬. ଜଡ଼୍ ଧରିବା ।
(ସ୍ଥାୟୀ ହେବା/ ଜମିଯିବା ।)

୧୧୩୭୭. ଜଡ଼ ଭରତ ପରି ବସିଛି ।
(ଅନଭିଜ୍ଞ,ମୂର୍ଖ, ନିର୍ବାକ୍, ଜଡ଼ ଭାବାପନ୍ନ ନିର୍ବୋଧ ବ୍ୟକ୍ତି । ଭାଗବତରେଲେଖାଅଛି ଯେ, ରାଜା ଭରତ ବାନପ୍ରସ୍ଥ ଅବଲମ୍ବନ କରିବା ସମୟରେ ଗୋଟିଏ ହରିଣ ପୋଷିଥିଲେ । ସେ ହରିଣପ୍ରତି ତାଙ୍କର ଏପରି ମାୟା ଜନ୍ମିଥିଲା ଯେ, ରାଜାଙ୍କ ଦେହରୁ ପ୍ରାଣବାୟୁ ବାହାରିଲା ବେଳେସେ ଭଗବତ୍ ଚିନ୍ତା ନକରି ସେଇ ହରିଣର ଚିନ୍ତାରେ ମଗ୍ନ ଥିଲେ । ତେଣୁ ମୃତ୍ୟୁ ପରେ ସେ ହରିଣଯୋନିରେ ପୁନର୍ଜନ୍ମ ଲାଭ କଲେ; କିନ୍ତୁ ତାଙ୍କ ପୁଣ୍ୟ ପ୍ରଭାବରୁ ତାଙ୍କର ପୂର୍ବଜନ୍ମର ଜ୍ଞାନ ଉଦୟ ହେଲା । ସେ ହରିଣ ଶରୀର ତ୍ୟାଗ କର ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କଲେ । ପୂର୍ବଜନ୍ମର ଅନୁଭବରୁ ସେ ସଂସାର-ବାସନାରୁ ମୁକ୍ତ ରହିବା ପାଇଁ ସର୍ବଦା ଜଡ଼ବତ୍ ରହୁଥିଲେ । ଏଥିପାଇଁ ତାଙ୍କର ନାମ 'ଜଡ଼ ଭରତ'।)

୧୧୩୭୮. ଜଡ଼୍ ମୂଳରୁ ।
(ସମ୍ପୂର୍ଣ୍ଣ ରୂପେ ।)

୧୧୩୭୯. ଜଡ଼ରୁ (=ମୂଳରୁ)ମାଇଲେ ଯାଉ ସରି,
ଦେବଙ୍କ ସଙ୍ଗେ କିମ୍ପା କଳି ?
(ମୂଳରୁ ଦୁଃଖର କାରଣକୁ ବିନଷ୍ଟ କଲେ ଭବିଷ୍ୟତ ଦୁଃଖରୁ ରକ୍ଷା ମିଳେ)

୧୧୩୮୦. *ଏକାର୍ଥରେ* - ମୂଳୁ ମାଇଲେ ଯିବ ସରି,
ଦେବଙ୍କ ସଙ୍ଗେ କିମ୍ପା କଳି । (ଜଗନ୍ନାଥ ଭାଗବତ)

୧୧୩୮୧. ଜଡ଼ାତେଲେ ମେଣ୍ଢା ବାଳ । (ନ୍ୟାୟ)
(ମେଣ୍ଢା ବାଳରେ ଜଡ଼ାତେଲ ଲଗାଇଲେ ଆଉ ଛାଡ଼େ ନାହିଁ । ସେହିପରି ମଣିଷ ମଣିଷ ମଧରେ ଅଭେଦ ପ୍ରୀତି )

୧୧୩୮୨. *ଏକାର୍ଥରେ* - ଜଡ଼ାତେଲ ମେଣ୍ଢାବାଳ,
ମିଳିଗଲେ (ମିଶିଗଲେ) ଆଉ ନାହିଁ ଅମେଳ ।

୧୧୩୮୩. ଜଣକର ଓଷା, ପାଞ୍ଚଜଣଙ୍କର ଆଶା ।

୧୧୩୮୪. ଜଣକୁ ଜଣେ, ମାଇପ ଶୋଇଲା/ଛି ଅଳିଆ/ସନ୍ତରା ବଣେ ।
(ସ୍ୱାମୀଙ୍କ ଦୋଷରୁ ଦୁଃଖ ଭୋଗ କରୁଥିବା ସ୍ତ୍ରୀ )

୧୧୩୮୫. ଜଣ ଜଣକା ଖଣ୍ଡେ ଖଣ୍ଡେ, ଜଣକୁ କାଣ୍ଡେ ।
(ଯଦି ବହୁତ ଲୋକ ଜଣେ ବ୍ୟକ୍ତିକୁ କିଛି କିଛି ଧନ ଦିଅନ୍ତି, ତାହାହେଲେ ତା' ପାଖରେ ପ୍ରଚୁର ଧନ ହୋଇଯାଏ ।)

୧୧୩୮୬. ଜଣ ଜଣକେ ମହାବଳୀ
ଗଛର ପତର ପକାନ୍ତି ଝାଡ଼ି ।
(ଟେକା ଫୋପାଡ଼ି ଫଳ ଝଡ଼ାଇ ନ ପାରି ଗଛରୁ କଞ୍ଚା ପତର ଝଡ଼ାଇବାରେ କୌଣସି କୃତିତ୍ୱ ନ ଥାଏ )

୧୧୩୮୭. ଜଣ ଜଣଙ୍କୁ ନ କର ହୁରି, ଭେଦ କାହାକୁ ।
(ନିଜର ରୋଜଗାର ଆଉ ଭେଦ ସମ୍ପର୍କରେ ଅନ୍ୟ କାହାକୁ କହିବା ଠିକ୍ ନୁହେଁ ।)

୧୧୩୮୮. ଜଣାଗଲା ପ୍ରୀତି ରୀତି ଏକ ତୁମର ।
ମହୀରେ କେ ସହିବ ଛାତି କରି ପଥର ।
ପୁରୁଷ ଭ୍ରମର, ରୀତି ଏ ତୁମ୍ଭର
ହୃଦେ କତୁରୀ ଧାର, ମୁଖେ ଭାଷ ମଧୁର ।

୧୧୩୮୯. ଜଣେ ଜଣେ ପରିମାଣିକ,
ଘରେ ନାହିଁ କୁଟା ଖଣ୍ଡିକ ।
(ଘରେ ସମସ୍ତେ କର୍ତ୍ତୃତ୍ୱ ଜାହିର କଲେ ଘରର ଅବସ୍ଥା ଶୋଚନୀୟ ହୋଇ ପଡ଼େ ।)

୧୧୩୯୦. ଜଣେ ଡାଳେଡାଳେ ଗଲେ
ଆଉ ଜଣେ ପତ୍ରେ ପତ୍ରେ ଯାଏ ।
(ଚତୁରଠାରୁ ଚତରତର ଲୋକ । ସେ ଚଲାକୀରେ ଚଳିବା ଲାଗି ସୂକ୍ଷ୍ମରେ ସୂତ୍ର ବାହାର କରେ । )

୧୧୩୯୧. ଜଣେ ପଶିଲେ ମାଣେ ପଶେ ।
(ମୂଲିଆ ଶ୍ରେଣୀର ଲୋକେ ସମସ୍ତେ ଜଣା ଅଧକେ ରୋଜଗାରକରନ୍ତି । ପରିବାରର ଲୋକସଂଖ୍ୟା ବଢ଼ିଲେ ରୋଜଗାର ବଢ଼େ । ଜଣକ ରୋଜଗାର ଉପରେ ପରିବାର ନିର୍ଭର କରେ ନାହିଁ। ଅର୍ଥାତ୍ ଲୋକସଂଖ୍ୟା ବୃଦ୍ଧିର ଅନୁପାତରେ ଅଧିକ ଖାଦ୍ୟର ବ୍ୟବସ୍ଥା କରିବାକୁ ହୋଇଥାଏ ।)

୧୧୩୯୨. ଜଣେ ପୋଷିଲେ ଯେ
ଘରେ ହାତୀ ପୋଷିଲେ ସେ !
(ଖର୍ଚ୍ଚ ସମ୍ପର୍କରେ କୃପଣର ଆନ୍ତରିକ ଭାବନା । ଘରକୁ କୁଣିଆ ଆସିଲେ ସେ ଦି' ଆଖିରେ ଦେଖିପାରେ ନାହିଁ। କୁଣିଆ ବାବଦରେ ଖର୍ଚ୍ଚକୁ ସେ ବୃଥା ଖର୍ଚ୍ଚ ମନେ କରେ ।)

୧୧୩୯୩. ଜଣେ ମନୁଷ୍ୟ ସମସ୍ତଙ୍କୁ (ସଂସାରଯାକ) ସନ୍ତୋଷ କରି ନ ପାରେ ।

୧୧୩୯୪. ଜଣେ ହାତରେ ଗଣ୍ଠି ପକାଇଲେ
ଆଉ ଜଣେ ଗୋଡ଼ରେ ଗଣ୍ଠି ପକାଏ ।
(ଈର୍ଷାରେ ଜଣେ ଜଣକୁ ବଳି ଯିବାର ଅପଚେଷ୍ଟା ।)

୧୧୩୯୫. ଜଣେ ଲୋକ ନଈକେ ଦି'ଥର ଗାଧୁଏ ନାହିଁ ।

୧୧୩୯୬. ଜନକ ଠୁଁ ସ୍ନେହରେ ଜନନୀ ଅତିବଢ଼ି,
ମା' ପାଖକୁ ପୁଅ ଧାଏଁ, ବାପ ଦେଲେ ତଡ଼ି ।

୧୧୩୯୭. ଜନକ ରାଏତ୍ ଥୁଁ ରାତ ନାହିଁ
ବାପ ମାଥୁଁ ଲୋକ ନାହିଁ । (ପଶ୍ଚିମ ଓଡ଼ିଶା)
(ଜହ୍ନରାତିଠାରୁ ସୁନ୍ଦରତର ରାତି ନାହିଁ, ବାପ ମାଙ୍କଠୁଁ ବଳି ଅଧିକ ସ୍ନେହୀ ଲୋକ ନାହାନ୍ତି )

୧୧୩୯୮. ଜନ (=ଇତର ଲୋକ) ଜୁଆଇଁ, ଭଣଜା
ତିନିହେଁ ନୁହନ୍ତି ଆପଣା ।

୧୧୩୯୯. ଜନ ଥିଲେ ଧନ ନାହିଁ
ଧନ ଥିଲେ ଜନ ନାହିଁ ।
(ଧନ, ଜନ, ଗୋପ, ଲକ୍ଷ୍ମୀ ଗୋଟିଏ ସ୍ଥାନରେ ରହିବା ବିରଳ । କାହାର ବହୁତ ଧନସମ୍ପତ୍ତି ଥିଲେ ବି ପିଲାକବିଲା ନାହାଁନ୍ତି । କିଏ ବହୁକୁଟୁମ୍ବୀ ବାସି ଓଳିକି ଦାନା ନାହିଁ ।)

୧୧୪୦୦. ଜନନୀ କି ପୁଣ୍ୟବାନ
ରତ୍ନଗର୍ଭେ ଏ ସନ୍ତାନ ।

୧୧୪୦୧. ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।
(ମାଆ ବା ମାତୃଭୂମି ସ୍ୱର୍ଗଠାରୁ ଅଧିକ ସମ୍ମାନୀୟ ।)

୧୧୪୦୨. ଜନ ବଳ (=ଜନଶକ୍ତି) ବଡ଼ ବଳ
ଜନ ପାଖେ କି ଧନ ବଳ ।

୧୧୪୦୩. ଜନମକୁ (=କୃଷ୍ଣଜନ୍ମକୁ)ବୁଣିଲେ କରମକୁ ଫଳେ
ଲାଉ ଲଗାଇଲେ ଚଲଣା ଫଳେ ।
(ଭାଦ୍ରବ କୃଷ୍ଣାଷ୍ଟମୀକୁ ବୁଣିଲେ ଧାନ ଭଲ ହୁଏ ନାହିଁ । ପରିବା ହିସାବରେ ଚଲଣା ଲାଉ ଅପେକ୍ଷା ନିକୃଷ୍ଟତର ।)

୧୧୪୦୪. ଜନମ ଗଲା କର୍ମ କରି,
ଆଣ୍ଠୁ ଗଲା ଦଣ୍ଡବତ ମାରି ।

୧୧୪୦୫. ଜନମ ତ କରି ନାହିଁ ପେଟ ହେବ ଘାଣ୍ଟି
ମାରି ଆଣି ଏତେ କଷ୍ଟ ଦେଉଛି କାହିଁକି
କୋଡ଼ିଏ ବରଷ ପୁଅ ବୁଦ୍ଧି ନ ଆସଇ
ଦେବତା ଗୁରୁ ମାନେ ଥିଲେ ନ ଦେଲେ ବତେଇ
ଲୋ ବନ୍ଧୁ ଅଳପ ବୟସ
ହୋଇ ନାହିଁ ଯୁ (=ବଳ) ଟାଣ ଦିହରେ ରକତ ।

୧୧୪୦୬. ଜନମ ଦୁଃଖିନୀ ସୀତା,
ନାହିଁ ମାତା ନାହିଁ ପିତା ।

୧୧୪୦୭. ଜନମ (=ଜନ୍ମ) ବିତେଇବା ।
(ଯାହି ତାହି ଜୀବନ ବିତେଇବା ।)

୧୧୪୦୮. ଜନମ, ମରଣ, ବରଷା
ଏହା ନ ଜାଣେ ପୁରୁଷା

୧୧୪୦୯. *ଏକାର୍ଥରେ* - ଜନମ୍ ମରନ୍ ବରଷା
କହି ନାହିଁ ପାରନ୍ ପୁରୁଷା । (ସମ୍ବଲପୁରୀ)
(କେତେବେଳେ ଠିକ୍ ଜନ୍ମ ହେବ ବା ମୃତ୍ୟୁ ହେବ ବା ମେଘ ବର୍ଷିବ - କେହି ନିଧାର୍ଯ୍ୟ ଭାବେ କହିପାରେ ନାହିଁ ।)

୧୧୪୧୦. ଜନମ (=ଜନ୍ମ) ହାରିବା ।
(ନିରୁଦ୍ଦେଶ୍ୟ ବା ବ୍ୟର୍ଥ ଜୀବନ ବିତେଇବା ।)

୧୧୪୧୧. ଜନର ଶତ୍ରୁ ଧନ, ଧନର ଶତ୍ରୁ ଜନ ।
(ମଣିଷ ଯେପରି ଧନର ଶତ୍ରୁ, ସେହିପର ଧନ ମଧ ମଣିଷର ଶତ୍ରୁ ।)

୧୧୪୧୨. ଜନ୍ମ କଲାବେଳେ ଝାଡ଼ା ହେବା ।
(ଅଧିକ ମେହେନତ କରି ସମସ୍ତ ଆନନ୍ଦ ଓ ସୁଖ ଭୁଲି ଯିବା ।)

୧୧୪୧୩. ଜନ୍ମ ଗଲା ଛୁଆ ଖାଇ, ଆଜି କହନ୍ତି ଡାହାଣୀ ।
(ବାହାରକୁ ଭଲେଇ ହେବା ।)

୧୧୪୧୪. ଜନ୍ମ ଦେଇଛି ବୋଲି କ'ଣ କର୍ମ ଦେଇଛି ?
(ଗୋଟିଏ ମା'ପେଟରୁ ଜନ୍ମ ହେଲେ ବି ଭାଗ୍ୟ ଭିନ୍ନ ଭିନ୍ନ ହୋଇଥାଏ । ପିତାମାତାଙ୍କର ଭାଗ୍ୟ ପୁତ୍ରକନ୍ୟା ନେଇ ନ ପାରନ୍ତି ।)

୧୧୪୧୫. ଜନ୍ମ ମାତ୍ରକେ କହେ ଡାକ,
ପୁଅ ଏଡ଼େଇ ପୁଆତି ରଖ ।
(ଏହା ଏକ 'ଡାକରଷି' ବଚନ - ପୂର୍ବେ ଚିକିତ୍ସା ଅଭାବରୁ ପ୍ରସବ ସମୟରେ ମା' ଓ ସନ୍ତାନ ଉଭୟଙ୍କର ମୃତ୍ୟୁର ଆଶଙ୍କା ରହୁଥିଲା । ତେଣୁ କୁହାଯାଇଛି- ପୁଅ ପଛେ ମରୁ ପୁଆତିକୁ ବଞ୍ଚାଅ ।)

୧୧୪୧୬. ଜନ୍ମ, ମୃତ୍ୟୁ, ବାଣୀ(=ବିଦ୍ୟା), ତିନିକୁ ନ ଜାଣି ।
(ଏହି ତିନିକୁ ମୁନିଋଷିମାନେ ମଧ ଜାଣନ୍ତି ନାହିଁ ।)

୧୧୪୧୭. *ଏକାର୍ଥରେ* - ଜନ୍ମ, ମୃତ୍ୟୁ, ବାଣୀ, ତିନି ନୁହଁଇ ଜାଣି ।

୧୧୪୧୮. ଜନ୍ମ ମୃତ୍ୟୁ ବାହା,
ତିନିଙ୍କୁ ବିଧାତା ସାହା ।

୧୧୪୧୯. *ଏକାର୍ଥରେ* - ଜନ୍ମ, ମୃତ୍ୟୁ, ବିବାହ,
ତିନିକୁ ଜାଣେ ନା ବରାହ (=ବରାହ ମିହିର) ।
(ବରାହ ମିହିରଙ୍କ ଭଳି ପ୍ରସିଦ୍ଧ ଜ୍ୟୋତିଷୀ ମଧ ଜନ୍ମ, ମୃତ୍ୟୁ, ବିବାହ ସମ୍ପର୍କରେ ଅଜ୍ଞ ।)

୧୧୪୨୦. *ସମାର୍ଥରେ* - ଜନ୍ମ, ମୃତ୍ୟୁ, ବିବାହ, ତିନି ବିଧାତା ସହାୟ ।

୧୧୪୨୧. ଜନ୍ମ ଯା'ର ମୃତ୍ୟୁ ତା'ର ।
(ଏ ସଂସାରରେ ଯିଏ ଜନ୍ମଗ୍ରହଣ କରେ, ତା'ର ନିଶ୍ଚିତ ଭାବରେ ମୃତ୍ୟୁ ଘଟିଥାଏ ।)

୧୧୪୨୨. ଜନ୍ମରୁ କମ୍‌ବକ୍ତ, ନାଆଁ ବଖ୍‌ତବର(=ଭଗ୍ୟବାନ) ।
(ନାମାନୁସାରେ ଗୁଣ ନ ହେଲେ ଏପରି କହିଥାଆନ୍ତି ।)

୧୧୪୨୩. *ଏକାର୍ଥରେ* - ଜନ୍ମରୁ ଦୁଃଖୀ, ନାଆଁ ସଦାନନ୍ଦ ।

୧୧୪୨୪. -*ଏଜନ* - ଜନ୍ମରୁ ମାଗନ୍ତା/ମାଗୁଣିଆ, ନାଆଁ ଦାତାରାମ ।

୧୧୪୨୫. ଜନ୍ମରୁ କର୍ମ ଯାର ଢ଼ିମା,
ଚୈତ୍ର ମାସରେ ରାସ ପୂର୍ଣ୍ଣିମା ।

୧୧୪୨୬. *ଏକାର୍ଥରେ* - ମୁରାଦର (=ଅଭିଳାଷ) ନାହିଁ ସୀମା,
ରଥ ହେଲାଣି ଧିମା (= ଢ଼ିମା) ।

୧୧୪୨୭. ଜନ୍ମରୁ ଜ୍ୟେଷ୍ଠ/ଶ୍ରେଷ୍ଠ ।
(ମଣିଷ ଜନ୍ମିଲା ମାତ୍ରେ ଜ୍ୟେଷ୍ଠ କିମ୍ବା ଶ୍ରେଷ୍ଠ ବୋଲି ପ୍ରତିପାଦିତ ହୁଏ ନାହିଁ । ଜୀବନ କାଳ ମଧରେ ସେ ଏହି ଗୁଣ ସମୂହ ଆହରଣ କରିଥାଏ ।)

୧୧୪୨୮. ଜନ୍ମରୁ ଦଡ଼ଲୁଗା ଦେଖିନି,
ସ୍ୱପ୍ନରେ ପୋଷାକ ଫିନଫିନ ।
(ଯଦି ଦରିଦ୍ରକୁ ସାମାନ୍ୟ ଧନ ଆଉ ମୂର୍ଖକୁ ସାମାନ୍ୟ ପ୍ରତିଷ୍ଠା ମିଳିଯାଏ, ତାହାହେଲେ ସେ ଗର୍ବୀ ହୋଇଯାଏ । ସେ ଦାରିଦ୍ର୍ୟ ଭୁଲି ଗର୍ବରେ ଫୁଲି ଉଠେ ।)

୧୧୪୨୯. ଜନ୍ମରୁ ଦେଖିନି ଲୁହା କୁଞ୍ଚି,
କୋଦାଳକୁ ବୋଲେ ଗୁଣରେ ଛୁଞ୍ଚି ।

୧୧୪୩୦. *ଏକାର୍ଥରେ* - ମଣିମୂଲ୍ୟ କାହୁଁ ବୁଝିବ ଶବର,
ମଣି ଫିଙ୍ଗି କରେ ଗୁଞ୍ଜରେ(=କାଇଁଚରେ) ଆଦର ।

୧୧୪୩୧. ଜନ୍ମରୁ ନାହିଁ ଘଟ ପୂଜା,
ଏକାବେଳେ ଦଶ-ଭୁଜା ।

୧୧୪୩୨. ଜନ୍ମରୁ ମାଇପ ନାହିଁ, ପୁଅ ରାଣ ପକାଏ ।

୧୧୪୩୩. *ଏକାର୍ଥରେ* - ମୂଳରୁ ମାଇପ ନାହିଁ, ପୁତ୍ର ଶୋକ ।

୧୧୪୩୪. -*ଏଜନ* - ମୂଳରୁ ମାଇପ ନାହିଁ, ପୁଅ ନାଁ ଗୋପାଳିଆ ।

୧୧୪୩୫. -*ଏଜନ* - ମାଇପ ନାସ୍ତି, ଫୁଲ ଶଯ୍ୟା ।

୧୧୪୩୬. ଜନ୍ମ ହେଉ ଯଥାତଥା, କର୍ମେ ଥାଉ ଭଲା ।

୧୧୪୩୭. ଜନ୍ମ ହେଉ ଯେପରି ସେପରି,
କର୍ମ ହେଉ ମଣିଷଙ୍କ ପରି ।

୧୧୪୩୮. ଜନ୍ମ ହୋଇଥିବ ଯଥା କଥା
କରମ ନୋହିବ ଭଲା ।
ଯଦି କରମ ନୋହିବ ଭଲା ।
ଜୀଇଁ ଥାଉଁ ଥାଉଁ ମଲା ।
(ନୀଚ ବା ଉଚ୍ଚ କୁଳରେ ଜନ୍ମହେଲେ କିଛି ଯାଏ ଆସେ ନାହିଁ । ଅସଲ ହେଲାଭାଗ୍ୟ । ଭାଗ୍ୟ ଭଲ ନଥିଲେ ବହୁ ଦୁଃଖକଷ୍ଟ ଭୋଗ କରିବାକୁ ହୁଏ ।)

୧୧୪୩୯. ଜନ୍ମ ହୋଇନି ମୃତ୍ୟୁ ହେଲା,
ପ୍ରୀତି ନାହିଁ ତାର ବିଚ୍ଛେଦ ହେଲା ।
(ଅବାସ୍ତବ ବିଷୟବସ୍ତୁ ଜନିତ କଥା ।)

୧୧୪୪୦. ଜନାଜା (=କୋକେଇ) ଉଠିବା ।
(ମୃତବ୍ୟକ୍ତିକୁ ପୋଡ଼ିବା ପାଇଁ ବା କବର ଦେବା ପାଇଁ ନେଇଯିବା ।)

୧୧୪୪୧. ଜନାନା ବନେଇବା ।
(କୌଣସି ସ୍ଥାନକୁ ପର୍ଦ୍ଦାବାଲୀ ସ୍ତ୍ରୀଲୋକଙ୍କ ଯିବାଆସିବା ଯୋଗ୍ୟ କରାଇବା ।)

୧୧୪୪୨. ଜନାନୀ ଦୋକାନ ।
(ବେଶ୍ୟାଳୟ ।)

୧୧୪୪୩. ଜନ୍ଦାମନ୍ଦା, ଗୋଲକ ଧନ୍ଦା ।
(ବିଷମ ସମସ୍ୟାରେ ପଡ଼ିବା ଯାହା, ମନ୍ଦା ମନ୍ଦା ଜନ୍ଦାଙ୍କ ହାବୁଡ଼ରେ ପଡ଼ିବା ସେଇଯା ।)

୧୧୪୪୪. ଜନ୍ଦାମନ୍ଦା ଝିଙ୍କାରି ପରି ।
(ମନ୍ଦା ମନ୍ଦା ଜନ୍ଦା ଯେପରି, ପଞ୍ଚା ପଞ୍ଚା ଝିଲ୍ଲୀ-ପତଙ୍ଗ ସେହିପରି ।)

୧୧୪୪୫. ଜନ୍ତୁଏ ଭବକୂପେ ପଡ଼ି,
କୃଷ୍ଣ ଭକତି ଦୂରେ ଏଡ଼ି । (ଜଗନ୍ନାଥ-ଭାଗବତ)

୧୧୪୪୬. ଜନ୍ତୁଙ୍କ ତୁଲେ ରିପୁଭାବ ।
କେବେହେଁ ହୃଦେ ନ କରିବ ।(ଜଗନ୍ନାଥ-ଭାଗବତ)

୧୧୪୪୭. ଜନ୍ତୁନାଂ ମରଣଂ ଭୟଂ ।
(ଜୀବଜନ୍ତୁ ସମସ୍ତେ ମରଣକୁ ଭୟ କରନ୍ତି ।)

୧୧୪୪୮. ଜନ୍ତୁ ଭିତରେ ନେଉଳ,
ମାଛ ଭିତରେ ଶେଉଳ ।
ଲୋକଙ୍କ ଭିତରେ ଯୁବତୀ ସୁନ୍ଦର,
ଠାକୁରଙ୍କ ପାଇଁ ଦେଉଳ ।

୧୧୪୪୯. ଜନ୍ତୁ ସାନ ଖୋଜ ବଡ଼ ।
( ଆକାରରେ ଛୋଟ, ପ୍ରଭାବ ବହୁତ ।)

୧୧୪୫୦. ଜପଇ ଦାଣ୍ଡରେ ତୁଳସୀ ମାଳି,
ଗ୍ରାମେ ଗ୍ରାମେ ପଶି କରଇ କଳି ।

୧୧୪୫୧. ଜପ-ତପ କର କିଆଁ,
ମରି ଜାଣତ ତର କିଆଁ ।

୧୧୪୫୨. ଜପତପ କରେ ଯେ, ଅଳ୍ପାୟୁଷ ହୁଏ ସେ ।

୧୧୪୫୩. ଜପତପ କିଛି ନାହିଁ କପାଳରେ ଯୋଡ଼ା ଫୁଣ୍ଟା
ବିଦ୍ୟାଶୂନ୍ୟ ପୁରୋହିତ ପୁଜାର ବଡ଼ ଘଟା ।

୧୧୪୫୪. ଜପ ନାହିଁ ତପ ନାହିଁ, ଖାର ସରସର ଦେହ।
(ମଣିଷ ଶରୀର ଅତିମାତ୍ରାରେ ଭୋଗ ଓ ଲାଳସା ପ୍ରିୟ ଅର୍ଥାତ୍ ଲବଣାକ୍ତ ହେଲେ ଆଧାତ୍ମିକ ଚେତନା ରୁହେ ନାହିଁ।)

୧୧୪୫୫. ଜପ ନାହିଁ, ତପନାହିଁ ପାଉଁଶ ବୋଳା ଦେହ। (ଭଣ୍ଡ ତପସ୍ୱୀ)

୧୧୪୫୬. ଏକାର୍ଥରେ - ଜପ ସାଙ୍ଗରେ ନାହିଁ ସମ୍ବନ୍ଧ ,
ଜପର ସ୍ଫଟିକ ମାଳ,
ସ୍ଫଟିକରେ ଲାଲ ଜରି କମ।
(ଏହି ପ୍ରବାଦର 'ସ୍ଫଟିକରେ ଲାଲ ଜରି କମ' କୁ ଆଦ୍ୟ ପ୍ରବାଦ ସଂଗ୍ରାହକ Morton ସାହେବ ଇଂରାଜୀରେ ଯେଉଁ ବ୍ୟାଖ୍ୟା କରିଛନ୍ତି, ତାହା ହେଲା - Fine tasselle rosary of crystal beads)

୧୧୪୫୭. *ସମାର୍ଥରେ* - ଖୁଦ ଖାଇବାକୁ ପାଚି ନାହିଁ,
ପଗଡ଼ିରେ ଜରି ଛାଉଣି।

୧୧୪୫୮. *ଏକାର୍ଥରେ* - ଜପ ସାଙ୍ଗରେ ସମ୍ବନ୍ଧ ନାହିଁ,
ପଗଡ଼ିରେ ଜରି ଛାଉଣି।

୧୧୪୫୯. -*ଏଜନ* - ଜପ ସାଙ୍ଗରେ ସମ୍ପର୍କ ନାହିଁ,
କପାଳେ ଯୋଡ଼ା ତିଳକ ଟୋପା।

୧୧୪୬୦. ଜପା, ତପା, ଭୋପା, ଗେପା /ଯାଙ୍କ ଦେହିପାଠ ନୁହେଁଲୋ ବୋପା। (ଯେ ତପସ୍ୟା କରେ, ଯେ ମାଳି ଜପେ,ଯେ ଆସ୍ଵାଳନ କରେ ଏବଂ ଯେ ସର୍ବଦା ପେଟଚିନ୍ତା କରୁଥାଏ, ସେମାନଙ୍କ ଦ୍ୱାରା ପାଠ ହୁଏ ନାହିଁ। )

୧୧୪୬୧. ଜବ ଧାନ (= ଯଅ ଧାନ)
ଆଗ ଭାରିଯାକୁ ଛାଡ଼ପତର
ପଛ ଭାରିଯାକୁ ସାବଧାନ।
(ବୟସର ଅସମତା ହେତୁରୁ ସ୍ୱାମୀ ଦ୍ୱିତୀୟ ସ୍ତ୍ରୀ ଉପରେ ଅଧିକାର ସାବ୍ୟସ୍ତ କରିପାରେ ନାହିଁ। ପଦେ ପଦେ ସତର୍କ ହୋଇ ତା ସହିତ ଚଳେ।)

୧୧୪୬୨. ଜବଡ଼ା (=ମୁହଁ) ଚଳିବା।
(ମୁହଁରୁ ଶବ୍ଦ ନ ବାହାରକରି ବିଡ଼ବିଡ଼େଇବା।)

୧୧୪୬୩. ଜବଡ଼ା (=ମୁହଁ) ପଡ଼ିଯିବା।
(କିଛି କହି ନ ପାରିବା।)

୧୧୪୬୪. ଜବତ୍ କରିବା ।
(ଆଦେଶ ଦ୍ୱାରା କୌଣସି ବସ୍ତୁ ବା ସମ୍ପତ୍ତିକୁ ସରକାରଙ୍କ ଅଧିକାରକୁ ଆଣିବା ବା ହଡ଼ପ କରିବା ।)

୧୧୪୬୫. ଜବରଦସ୍ତ ଠେଙ୍ଗା ମୁଣ୍ଡରେ ପଡ଼ିବା ।
(ସମର୍ଥଲୋକ ସର୍ବଦା ଅନ୍ୟ ଉପରେ ରୁଆବ ଝାଡ଼ିବା ପାଇଁ ତତ୍ପର ଥାଆନ୍ତି ।)

୧୧୪୬୬. ଜବରଦସ୍ତର ଠେଙ୍ଗା ମୁଣ୍ଡରେ ପଡ଼େ ।
(ଜବରଦସ୍ତ ଲୋକଙ୍କର ସବୁକଥା ମାନିବାକୁ ପଡ଼ିଥାଏ ।)

୧୧୪୬୭. ଜବରଦସ୍ତ ମାଡ଼ଦେଇ କାନ୍ଦିବାକୁ ନ ଦେବା ।
(ଯେଉଁ ମଣିଷ ଜବରଦସ୍ତି କରେ ତାର ଅତ୍ୟାଚାର ଚୁପ ଚାପ ସହିବାକୁ ପଡ଼େ ।)

୧୧୪୬୮. ଜବାଟ ଓଟାରି ନେବା ।
(ଏଭଳି କଠୋର ଦଣ୍ଡ ଦେବା ଯେପରିକି କିଛି କହିବାର ଯୋଗ୍ୟ ନ ରୁହେ । ଯେପରି କହନ୍ତି - ବେଶି ଫଡ଼ ଫଡ଼ କଲେ ତୋର ଜବାନ ଖିଅ / ଓଟାରି ନେବି ।)

୧୧୪୬୯. ଜବାନ ଅଟକାଇବା ।
(ଭେଦ କଥା କହିବାରୁ ନିବୃତ୍ତ ହେବା । କହିବାକୁ ନ ଦେବା ।)

୧୧୪୭୦. ଜବାନ ଉପରେ ଚଢ଼ିବା ।
(ମନେ ପଡ଼ିବା ।)

୧୧୪୭୧. ଜବାନ ଉପରେ ବଞ୍ଚିରହିବା ।
(ସର୍ବଦା ମନେ ରହିବା । ମୁହଁରେ ବାରମ୍ବାର କହି ଚାଲିବା ।)

୧୧୪୭୨. ଜବାନ ଓଲଟିବା ।
(କଥା ବଦଳେଇ ଦେବା ।)

୧୧୪୭୩. ଜବାନ କଣ୍ଟା ହେବା /ଶୁଖିବା ।
(ତୃଷାରେ ଜିଭ ପାଟି ଶୁଖିଯିବା ।)

୧୧୪୭୪. ଜବାନ କାଟିବା ।
(ଆଙ୍ଗୁଳିକୁ ଦାନ୍ତରେ ଚାପି ଅବଶେଷ କରିବା ।)

୧୧୪୭୫. ଜବାନକୁ କାଟିବା ।
(ହୃଦୟଭେଦି କଥା କହିବା ।)

୧୧୪୭୬. ଜବାନକୁ ଖରାପ କହିବା ।
(କଟୁଭାଷୀ ହେବା/ଜବାନ ଖରାପ ହେବା ।)

୧୧୪୭୭. ଜବାନ କୁଣ୍ଡେଇହବା ।

୧୧୪୭୮. *ଏକାର୍ଥରେ* - ପାଟି କୁଣ୍ଡେଇହବା/ଖଲଖଲ କରିବା ।
(କଳି କରିବା ପାଇଁ ଇଚ୍ଛା ହେବା । କିଛି କହିବା ପାଇଁ ଉତ୍ସୁକ ହେବା ।)

୧୧୪୭୯. ଜବାନକୁ ତାଲା ଲଗେଇବା ।

୧୧୪୮୦. *ଏକାର୍ଥରେ* - ମୁହଁରେ ତାଲା ଦେବା ।
(କହିବାକୁ ମନା କରିଦେବା ।)

୧୧୪୮୧. ଜବାନକୁ ତୁଣ୍ଡରେ ରଖିବା ।
(ସାବଧାନତା ଓ ଶିଷ୍ଟତା ସହକାରେ କଥା କହିବା, ଖରାପ କଥା ନ କହିବା ।)

୧୧୪୮୨. ଜବାନକୁ ରୋକିବା ।
(ଚୁପ ହୋଇ ରହିବା । କହିବାକୁ ମନା କରିବା ।)

୧୧୪୮୩. ଜବାନକୁ ଲଗାମ ଦେବା ।
(ସଂଯତ ହୋଇ କଥା କହିବା ।)

୧୧୪୮୪. ଜବାନ ଖସରି ଯିବା ।
(ଭୁଲବଶତଃ କୌଣସି ଅନୁଚିତ କଥା କହିଦେବା ।)

୧୧୪୮୫. ଜବାନ ଖୋଲିବା ।
(ଭଲ ମନ୍ଦ କହିବା /ଭେଦ ଖୋଲିଦେବା ।)

୧୧୪୮୬. ଜବାନ ଘୋସରା ହୋଇଯିବା ।
(କହୁଁ କହୁଁ ଥକିଯିବା ।)

୧୧୪୮୭. ଜବାନ ଚାଟିବା ।
(ଅଇଁଠା ଚାଟିବା ।)

୧୧୪୮୮. ଜବାନ ଛୁରି ହେବା ।
(ଛୁଞ୍ଚି ଫୋଡ଼ିଲା ଭଳି ବା ଛୁରି ମାରିଲା ଭଳି କଥା କହିବା ।)

୧୧୪୮୯. ଜବାନ ତାଳୁରେ ଲାଗିବା ।
(କିଛି କହି ନ ପାରିବା/ଚୁପ ହୋଇଯିବା/ କହିବାକୁ କିଛି ନଥିବା ।)

୧୧୪୯୦. ଜବାନ ତେଜ କରିବା ।
(ସୁସ୍ୱାଦୁ ଭୋଜନ ପାଇଁ ଲାଳାୟିତ / କହିବାର ଦୃଢ଼ତା / ଭଲମନ୍ଦ କହିବାକୁ ନ ଭୁଲିବା ।)

୧୧୪୯୧. ଜବାନ ଦବି ଯିବା ।
(ଧୀରେ ଧୀରେ କଥା କହିବା । ବିନମ୍ରତା ସହ କହିବା । ଡ଼ରି ଡ଼ରି କହିବା ।)

୧୧୪୯୨. ଜବାନ ଦିଅ ଏକବାର,
ନଟାଳ ତାକୁ ବାରମ୍ବାର ।
(ମଣିଷକୁ ଆପଣା କଥାରେ ଅଟଳ ରହିବା ଉଚିତ ।)

୧୧୪୯୩. ଜବାନ ଦେବା ।
(କଥା /ବଚନ ଦେବା ।)

୧୧୪୯୪. ଜବାନ ନ ଥକିବା ।
(କ୍ରମାଗତ କହି ଚାଲିବା ।)

୧୧୪୯୫. ଜବାନ ନିଜସ୍ୱ ହେବା ।
(କହିବା, ବିଚାର ବ୍ୟକ୍ତ କରିବାରେ ପୂର୍ଣ୍ଣ ସ୍ୱତନ୍ତ୍ର ହେବା ।)

୧୧୪୯୬. ଜବାନ ନେବା ।
(ବଚନବଦ୍ଧ କରିବା ।)

୧୧୪୯୭. ଜବାନ ବନ୍ଦ କରିଦେବା ।

୧୧୪୯୮. *ଏକାର୍ଥରେ* - ପାଟି ସିଇଁଦେବା /ସିଲେଇ କରିଦେବା ।
(ଚୁପ କରିଦେବା/ କରେଇ ଦେବା ।)

୧୧୪୯୯. ଜବାନ ବନ୍ଦ ରଖିବା ।
(ଚୁପ ରହିବା । ରହସ୍ୟ ଲୁଚେଇବା ।)

୧୧୫୦୦. ଜବାନବନ୍ଦୀ କରିବା ।
(ଇଜହାର, ଅଭିଯୋଗ /ଏତଲା ଲେଖିବା । ଲିପିବଦ୍ଧ ସାକ୍ଷ୍ୟ ।)

୧୧୫୦୧. ଜବାନ ବିଗିଡ଼ିବା ।
(ସ୍ୱାଦୁ ଏଭଳି ଖରାପ ହୋଇଯାଏ ଯେ କୌଣସି ଜିନିଷ ରୁଚେ ନାହିଁ । ଅଶିଷ୍ଟତା ସହିତ କଥା କହିବାର ଅଭ୍ୟାସ ।)

୧୧୫୦୨. ଜବାନ ବୃଥା ହେବା ।
(କଥା / ଆଦେଶ ନ ଦେବା ।)

୧୧୫୦୩. ଜବାନ ମିଠା ମୁଲକ ଉଞ୍ଚା,
ଜବାନ ଟେଢ଼ି ମୁଲକ ବଙ୍କା ।
(ମିଠା କଥାରେ ମଣିଷ ସମସ୍ତଙ୍କୁ ବଶ କରିପାରେ ଏବଂ ରକ୍ଷ କଥାରେ ଲୋକ ତାର ଶତ୍ରୁ ହୋଇଯାନ୍ତି ।)

୧୧୫୦୪. ଜବାନର କତୁରି (=କଇଁଚି) ଚଳେଇବା ।
(ଯେଉଁ କଥା କହିଲେ କଇଁଚି ଚଳେଇଲା ଭଳି ଲାଗେ ।)

୧୧୫୦୫. ଜବାନର ଜଖମ ।
(କହିବା କଥାରୁ ମିଳୁଥିବା ଆଘାତ ।)

୧୧୫୦୬. ଜବାନର ତଳେ ଜବାନ ରଖିବା ।
(କହିଦେଇ ଖସିଯିବା, କଥାରେ ଦୃଢ଼ତା ନଥିବା ।)

୧୧୫୦୭. ଜବାନର ତେଜ ।
(କଟୁ ବକ୍ତା /ବାଚାଳ ।)

୧୧୫୦୮. ଜବାନର ରୋଟୀ ।
(ଖୁସାମଦ୍ କରି ଜୀବନ ବିତେଇବା ।)

୧୧୫୦୯. ଜବାନର ସଫେଇ ।
(ବାକ୍ ପଟୁତା, ପରିଷ୍କାର ଭାବରେ ବ୍ୟାକରଣ ସମ୍ମତ ଭାଷା ତଥା ଉଚ୍ଚାରଣ ।)

୧୧୫୧୦. ଜବାନରେ ନାଚିବା/ବସିବା/ମୁଣ୍ଡେଇବା ।
(ସ୍ମୃତି ପଟରେ ରହିବା । କଣ୍ଠସ୍ଥ ରହିବା । ଜିଭ ଅଗରେ ରହିବା / ନାଚିବା ।)

୧୧୫୧୧. ଜବାନରେ ପଡ଼ିବା ।
(ମନେ ପଡ଼ିବା/ ପ୍ରସିଦ୍ଧ ହେବା / ପ୍ରକଟ ହେବା ।)

୧୧୫୧୨. ଜବାନରେ ପର(= ଡେଣା) ଲାଗିବା ।
(ଦୂର ପର୍ଯ୍ୟନ୍ତ କଥା ତୁଣ୍ଡକୁ ତୁଣ୍ଡ ଲମ୍ବିଯିବା ।)

୧୧୫୧୩. *ଏକାର୍ଥରେ* - ତୁଣ୍ଡ ବାଇଦ ସହସ୍ର କୋଶ ।

୧୧୫୧୪. ଜବାନରେ ମୋହର ଲଗେଇବା ।

୧୧୫୧୫. *ଏକାର୍ଥରେ* - ପାଟିରେ ମୋହର ମାରିବା ।
(କହିବାକୁ ବାରଣ ହେବା । ଚୁପ ରହିବା ।)

୧୧୫୧୬. ଜବାନରେ ଯାଦୁ ।

୧୧୫୧୭. *ଏକାର୍ଥରେ* - କଥାରେ ଯାଦୁ ।
(ମୃଦୁ ଭାଷିତା । ପ୍ରଭାବିତ କରିବା କଥା ।)

୧୧୫୧୮. ଜବାନ/ଜିଭରେ ହାଡ଼ ନ ହେବା ।
(ମୃଦୁଭାଷୀ ହେବା ।)

୧୧୫୧୯. ଜବାନ ସିଲେଇ କରିଦେବା ।
(ମୁହଁ ବନ୍ଦ କରିବା ।)

୧୧୫୨୦. ଜବାନ ହଲେଇବା ।
(ବିରୋଧ କରିବା । ମାଗିବା । ସୁପାରିଶ କରିବା ।)

୧୧୫୨୧. ଜବାନ ହାରିବା ।
(ପ୍ରତିଜ୍ଞାରେ କାଏମ ନ ରହି ପାରିବା । କଥା ମିଥ୍ୟା ପ୍ରମାଣିତ ହେବା ।)

୧୧୫୨୨. ଜବାନ ହିଁ ହାତୀ ଚଢ଼ାଏ,
ଜବାନ ହିଁ ମୁଣ୍ଡ କଟାଏ ।
(ମିଷ୍ଟ ବଚନରୁ ଆଦର ସତ୍କାର ମିଳିଥାଏ ଏବଂ ନିଷ୍ଠୁର ବଚନରୁ ଲୋକେ କଷ୍ଟ ଭୋଗ କରନ୍ତି ।)

୧୧୫୨୩. ଜବାନ ଫୁଡ଼ିବା ।
(ଅସାବଧାନରେ କିଛି କହିଦେବା ।)

୧୧୫୨୪. ଜବାନ ଲଡ଼ଖଡ଼େଇବା ।
(ପରିଷ୍କାର କଥା କହି ନ ପାରିବା । ଭୟରେ ମୁହଁରୁ ଶବ୍ଦ ଠିକ୍ ଭାବରେ ନ ବାହାରିବା ।)

୧୧୫୨୫. ଜବାନ ଲଡ଼େଇବା ।
(ଜବାବ ସୁଆଲ କରିବା ।)

୧୧୫୨୬. ଜବାନି ଜମା ଖରଚ କରିବା ।
(ବନେଇ ଚୁନେଇ କଥା କହିବା । ଖିଆଲିଆ କଥା କହିବା ।)

୧୧୫୨୭. ଜବାବ ଖାନା (=ଖାଇବା) ।
(ଉତ୍ତର ଦେଇ ନ ପାରିବା ।)

୧୧୫୨୮. ଜବାବ ତଲବ କରିବା ।
(କୈଫିୟତ ମାଗିବା ।)

୧୧୫୨୯. ଜବାବ ଦେବା ।
(ହଁ ବା ନାଁ କରିବା । ମନା କରିଦେବା /ଅସମର୍ଥତା ପ୍ରକାଶ କରିବା । ପ୍ରେମିକ ପ୍ରେମିକା ମଧ୍ୟରେ ଶପଥ କରା କରି । କଲ୍‌କବଜା ଖରାପ ହୋଇ ପଡ଼ିବା । ବରଖାସ୍ତ କରିଦେବା ।)

୧୧୫୩୦. ଜବାବ ସୁଆଲ ।
(ହୁଜ୍ଜତ । କେରାକ । କୁହାବୋଲା । ଯୁକ୍ତିତର୍କ ।)

୧୧୫୩୧. ଜବେଇ କରିବା ।
(ଗଳାକାଟି ମାରିବା ।)

୧୧୫୩୨. ଜମା ଗଲାଣି ଭମା (= କୀଟ ଯୋଗେ ଶସ୍ୟ ନଷ୍ଟ ହେବା) ଖାଇ ଚକୁଳି ପଡ଼ିଛି ଠୋକରା (= ନୀରସ) ହୋଇ ।
(ବଡ଼ ଲୋକ ଗରିବ ହେବା, ସୁନ୍ଦରୀର ସ୍ୱାସ୍ଥ୍ୟ ନଷ୍ଟ ହୋଇଯିବା, ବୃଥା ବ୍ୟୟ ଫଳରେ ଧନ ଲୋପ ପାଇବା ।)

୧୧୫୩୩. ଜମା ଜମାୟା ।
(ଉନ୍ନତିଶୀଳ । ମୂଳରୁ ତିଆର । ରୋପଣ ହୋଇଥିବା ।)

୧୧୫୩୪. ଜମାତ(=ସଙ୍ଗଠନ)ର କରାମତ ।
(ସଙ୍ଗଠନରେ ହିଁ ଶକ୍ତି ନିହିତ ଥାଏ ।)

୧୧୫୩୫. ଜମାନକୁ ଛାଣି ଦେଖିବା ।
(ସମୟକୁ ପରୀକ୍ଷା କରି ଦେଖିବା । ବହୁତ ଖୋଜା ଖୋଜି କରିବା ।)

୧୧୫୩୬. ଜମାଲ (=ସୌନ୍ଦର୍ଯ୍ୟ) ପଇଦା ହେବା ।
(ସୌନ୍ଦର୍ଯ୍ୟ ଫୁଟିବା । ସଭା ଉଭାରିବା । ଜମିଦାରୀ ଠାଟ-ବାଟ । ସୁଖ ସମୃଦ୍ଧିର ବୈଭବ ପୂର୍ଣ୍ଣ ଜୀବନ ।)

୧୧୫୩୭. ଜମାନା ଗୁଜରିଯିବା ।
(ବହୁତ ସମୟ ବିତି ଯିବା । ବୈଭବ କାଳ ଚାଲି ଯିବା ।)

୧୧୫୩୮. ଜମାନା ଦେଖିବା ।
(ସମୟର ବହୁତ ଅନୁଭୂତି ପ୍ରାପ୍ତ ହେବା । ଭଲମନ୍ଦ ଦିନ ଦେଖା ହେବା ।)

୧୧୫୩୯. ଜମାନା ବଦଳିଯିବା ।
(ସ୍ଥିତି ବା ଚଳଣିରେ ପରିବର୍ତ୍ତନ ଆଣିବା । ରୀତି ନୀତି ବଦଳିବା । ଭଲରୁ ମନ୍ଦ ଏବଂ ମନ୍ଦରୁ ଭଲ ସମୟ ଆସିବା ।)

୧୧୫୪୦. ଜମାନା ବନେଇବା ।
(ନିଜର ବାତାବରଣ ଏବଂ ନିଜ ସମ୍ପର୍କରେ ଆସୁଥିବା ବ୍ୟକ୍ତିଙ୍କୁ ପ୍ରଭାବିତ କରିବା । ପୁରୁଷାର୍ଥ ହେବା ।)

୧୧୫୪୧. ଜମାନା ଭର ।
(ବହୁତ ବଡ଼ । ବହୁତ ଅଧିକ । ଯେପରି, ଜମାନା ଭର ରୋଜଗାର ।)

୧୧୫୪୨. ଜମାନାର କଡ଼ ଲେଉଟାଇବା ।
(ସମୟର ଫେର-ବଦଳ ହେବା ।)

୧୧୫୪୩. ଜମାନାର କଥା ।
(ସମସ୍ତଙ୍କର କଥା । ବହୁ ପୁରୁଣା କଥା ।)

୧୧୫୪୪. ଜମାନାର ଦୁଃଖ ଦୁର୍ଦ୍ଦଶା ।
(ବଦ୍ କିସମତ୍‌ର ଦିନ । ସଙ୍କଟ କାଳ । ସମୟର ଓଲଟ ପାଲଟ ।)

୧୧୫୪୫. ଜମାନାର ଭୃକୁଟି କୁଞ୍ଚନ ଦେଖିବା/ଚିହ୍ନିବା ।
(ସମୟର ଗତିବିଧିକୁ ଆକଳନ କରିବା ବା ବୁଝିବା ।)

୧୧୫୪୬. *ଏକାର୍ଥରେ* - ଜମାନାର ରଙ୍ଗ ଦେଖିବା /ଚିହ୍ନିବା ।

୧୧୫୪୭. ଜମାନାର ମାଡ଼ ।
(ଦୁର୍ଦ୍ଦଶାର ଦିନ । ସମୟର କୁ ପ୍ରଭାବ । ସମାଜ ଦ୍ୱାରା କରାଯାଇଥିବା ଅତ୍ୟାଚାର ।)

୧୧୫୪୮. ଜମାନାର ସର୍ଦ୍ଦ-ଗରମ ।
(ସମୟର ଓଲଟ ପାଲଟ ଜୀବନ ସୁଖ ଦୁଃଖ ।)

୧୧୫୪୯. ଜମାନାର ସଫର ।
(ଭିନ୍ନ ଭିନ୍ନ ସ୍ଥାନ ଭ୍ରମଣ । ନିକଟ ଓ ଦୂର ଦୂରାନ୍ତର ବିଭିନ୍ନ ଲୋକଙ୍କ ସହିତ ମିଶି ଅନୁଭୂତି ଲାଭ କରିବା ।)

୧୧୫୫୦. ଜମାନାର ହାଓ୍ୱା ।
(ସମୟର ରୀତି-ରିଓ୍ୱାଜ । ପରିସ୍ଥିତି ।)

୧୧୫୫୧. ଜମାନାର ଲହୁ ଧଳା ହୋଇଯିବା ।
(ଆପୋଷରେ ପ୍ରେମ ନ ହେବା । ପରସ୍ପର ମଧ୍ୟରେ ମନୋମାଳିନ୍ୟ ହେବା ।)

୧୧୫୫୨. ଜମାନାରୁ ଉଠିଯିବା ।
(ଚର୍ଚ୍ଚା ବନ୍ଦ ହୋଇଯିବା । ମରିଯିବା ।)

୧୧୫୫୩. ଜମାନା ଲଦି ହେବା ।
(ପ୍ରଭାବ ସମାପ୍ତ ହୋଇ ଯିବା । ଅଭିବୃଦ୍ଧି ବନ୍ଦ ହୋଇଯିବା ।)

୧୧୫୫୪. ଜମିଦାର ଭେଟରାଖାନା (=ସରାଇଖାନା ଅର୍ଥାତ ପାନ୍ଥଶାଳା) ।

୧୧୫୫୫. ଜମିନ ଆସମାନ ଏକ କରିବା ।
(ତୁମୂଳ କାଣ୍ଡ ଘଟେଇବା ।)

୧୧୫୫୬. ଜମିନ ଆସମାନ ଫରକ ।
(ଆକାଶ ପାତାଳ ତଫାତ ଅର୍ଥରେ ।)

୧୧୫୫୭. ଜମିନ ଉପରେ ପାଦ ନ ପଡ଼ିବା/ନ ରଖିବା ।
(ପ୍ରବଳ ଅହଂକାରୀ ହେବା । ବାହାଦୁରୀ ଦେଖେଇ ବୁଲିବା । ଦ୍ୱିଧା, ଦୁଃଶ୍ଚିନ୍ତା ପାଇଁ ଆଗକୁ ପାଦ ନ ବଢ଼େଇବା ।)

୧୧୫୫୮. ଜମିନ ଖୋଳିବା ।
(ଉଦ୍ଦେଶ୍ୟ ପୂରଣ ପାଇଁ କାହାରି ପାଖକୁ ବାରମ୍ବାର ଯିବା ।)

୧୧୫୫୯. ଜମିନ ଗୋଡ଼ ତଳୁ ଖସିଯିବା/ଖୁଣ୍ଟିଯିବା ।
(ଚେତା ବୁଡ଼ିଯିବା । ହୋସ ଉଡ଼ିଯିବା । ବିପଦ ବେଳେ ନିଜ ଲୋକ କାମରେ ନ ଆସିବା ଅଥବା ଧୋକା ଦେବା ।)

୧୧୫୬୦. ଜମିନ ଚାଟିବା/ଚୁମିବା ।
(ପଡ଼ିଯିବା । ଲଢ଼େଇ କୁସ୍ତି କରୁ କରୁ ତଳେ ପଡ଼ିଯିବା । ବାହାଦୁରୀ ଚାଲିଯିବା । ହାରିଯିବା ।)

୧୧୫୬୧. *ଏକାର୍ଥରେ* - ଜମିନ ଦେଖେଇବା ।

୧୧୫୬୨. *-ଏଜନ* - ଜମିନ୍ ଧରିବା ।

୧୧୫୬୩. ଜମିନ ଥରିବା ।
(ଭୂକମ୍ପ ହେବା । ବାତାବରଣ ଗମ୍ଭୀର ହୋଇଯିବା ।)

୧୧୫୬୪. ଜମିନ ବାନ୍ଧିବା ।
(ଭୂସମ୍ପତ୍ତିର ସୀମା ନିର୍ଦ୍ଧାରଣ କରିବା ।)

୧୧୫୬୫. ଜମିନ ମାପିବା ।
(ବିନା ଆବଶ୍ୟକତାରେ ଭ୍ରମଣ କରିବା ବା ବୁଲିବା)

୧୧୫୬୬. ଜମିନର ଖୁନ୍ ପିଇବା ।
(ଲଢ଼େଇ ହେବା । ଦଙ୍ଗା ଫିସାଦ ହେବା । ରକ୍ତାକ୍ତ ଆକ୍ରମଣ ହେବା ।)

୧୧୫୬୭. ଜମିନର ଧୂଳି ଆକାଶକୁ ଉଠିବା ।
(ଝଡ଼ତୋଫାନ ଆସିବା । ଛୋଟ ଲୋକର ବହୁତ ଉନ୍ନତି ହେବା ।)

୧୧୫୬୮. ଜମିନରେ ପଶିଯିବା ।
(ଗାଡ଼ରେ ପଡ଼ିଯିବା /ଲଜ୍ଜାହେତୁ ଅତ୍ୟନ୍ତ ସଙ୍କୋଚରେ ପଡ଼ିବା ।)

୧୧୫୬୯. ଜମିନରେ ପିଠି ନ ଲାଗିବା ।
(ଶାନ୍ତି ନ ମିଳିବା । ଲଢ଼େଇ କୁସ୍ତିରେ ନ ହାରିବା ।)

୧୧୫୭୦. ଜମିନ୍‌ରେ ନାକ ରଗଡ଼ିବା ।
(କାକୁତିମିନତି ହୋଇ କ୍ଷମା ମାଗିବା ।)

୧୧୫୭୧. ଜମିନ ଶକ୍ତ, ଆସମାନ ଦୂର ।
(କଠିଣ ପରିସ୍ଥିତିରେ ପଡ଼ିବା ।)

୧୧୫୭୨. ଜମିନ ଶୁଙ୍ଘିବା ।
(ମୁହଁମାଡ଼ି ପଡ଼ିଯିବା । ପାଦଶବ୍ଦ ବାରି ସନ୍ଧାନ ନେବା ।)

୧୧୫୭୩. ଜମି ବାପର ନୁହେଁ, ଦାପର (=ଶକ୍ତିର) ।

୧୧୫୭୪. ଜର ଅଇଲା ଧାନକୁଟା ବେଳକୁ
ଛାଡ଼ିଗଲା ଭାତଫୁଟା ବେଳକୁ ।

୧୧୫୭୫. ଜର ଆଉ ପର,
ଖାଇବାକୁ ନ ପାଇଲେ ଫର୍‌ର (=ଉଡ଼ିଯିବା) ।

୧୧୫୭୬. ଜର କ'ଣ ବା କରେ,
ବଟୀକୁ ଖାଲି ପୋଡ଼ି ମାରେ ।
(ଜର ଦେହକୁ କଷ୍ଟ ଦିଏ ।)

୧୧୫୭୭. ଜର କଲା ଧାନ କୁଟା ବେଳକୁ
ଛାଡ଼ିଗଲା ଭାତ ଫୁଟାବେଳକୁ ।
(କାମକଲା ବେଳକୁ ରୋଗର ବାହାନା କରେ । ଖାଇଲା ବେଳକୁ ଝାଡ଼ିଝୁଡ଼ି ହୋଇ ବସେ । ଦେହଛଡ଼ା, ମଠେଇ, ଅଳସେଇ ପ୍ରତି ବ୍ୟଙ୍ଗ ।)

୧୧୫୭୮. ଜରକୁ ଡ଼ରେନି, କମ୍ପକୁ ଡ଼ରେ ।
(ମାଡ଼କୁ ମହାଦେବ ଡରନ୍ତି । ଜରର ମାଡ଼ କମ୍ପକୁ ସମସ୍ତଙ୍କର ଡରିବା ସ୍ୱାଭାବିକ ।)

୧୧୫୭୯. ଜରଫରୀ -ତୁରଫରୀ ।
(କଥାରେ ଅସଙ୍ଗତି । ଛୋଟ କଥାକୁ ବଢ଼େଇ କହିବା /ପ୍ରଳାପ ।)

୧୧୫୮୦. ଜର ବାଉଳାରେ ଟାଟିଆ କାମୁଡ଼ିବା ।
(ଜଣକ ଉପରେ ରାଗ କରି ଆଉ ଜଣକୁ ଦଣ୍ଡ ଦେବା । )

୧୧୫୮୧. *ଏକାର୍ଥରେ* - ଭୋକ ବିକଳରେ ଟାଟିଆ କାମୁଡ଼ିବା (ନ୍ୟାୟ)
(କ୍ରୋଧରେ ମଣିଷ କାଣ୍ଡଜ୍ଞାନଶୂନ୍ୟ ହୋଇ ଜଣକ ଉପରେ ରାଗି ଆଉ ଜଣକୁ ଦଣ୍ଡ ଦେବା ।)

୧୧୫୮୨. ଜରରେ ପାଏ ନା ପରକୁ ପାଏ ।

୧୧୫୮୩. *ଏକାର୍ଥରେ* - ଜର ଧରିଛି ନା ପରକୁ ଧରିଛି ।
(ଗୁପ୍ତ ପ୍ରଣୟର ଇଙ୍ଗିତ ।)

୧୧୫୮୪. ଜର ରୋଗୀର ଆମ୍ବିଳରେ ରୁଚି ।
(ଜର ରୋଗୀ ଆମ୍ବିଳ ପାଇଁ ଭିକାରୀ ପରି ହେବା)

୧୧୫୮୫. *ଏକାର୍ଥରେ* - ଜର ରୋଗୀ ଆମ୍ବିଳର ସ୍ୱପ୍ନ ଦେଖେ ।

୧୧୫୮୬. ଜର ରୋଗୀ ସ୍ୱପ୍ନ ଦେଖେ,
ଚୁଡ଼ା ଆଉ ତେନ୍ତୁଳି ଖୋଜେ ।

୧୧୫୮୭. ଜରାସନ୍ଧ ବଧ କରିବା ।
(ଜରାସନ୍ଧ ରାକ୍ଷସକୁ ଭୀମ ଫାଡ଼ି ବଧ କରିଥିଲେ, ତେଣୁ ଏହି ଭଳି ଭାବରେ କାହାକୁ ବଧ କରାଗଲେ ଏହି ପ୍ରବାଦଟି ପ୍ରଯୁଜ୍ୟ ।)

୧୧୫୮୮. ଜରୁଆ ଦେଖେ, ଚାରିଆଡ଼ ଭରିଛି ଟଭାରେ ।

୧୧୫୮୯. ଜରୁଆ ନାଡ(=ନାଡ଼ୀ) କମ୍ପେ ଥର ଥର ।

୧୧୫୯୦. ଜରୁଆ ଭିଟାରେ ତୋଳେ ଘର,
ଯିଏ ଆସେ ତାର ବି ଜର ।

୧୧୫୯୧. *ସମାର୍ଥରେ :* ଜରରେ ମୁଣ୍ଡ ବଥା,
ବିବାଦରେ ତେଢ଼ା କଥା ।

୧୧୫୯୨. ଜରୁରୀ ନହେଲେ କି ଜହର (=ରତ୍ନ) ଚିହ୍ନିବ ।

୧୧୫୯୩. ଜଳ ଅଗ୍ନି ମନ,
ବଶରେ ଯେତେ କ୍ଷଣ ।
(ଏଇ ତିନିକୁ ବଶ ନକରି ପାରିଲେ, ସେମାନେ ଧ୍ୱଂସକାରୀ ହେବେ ।)

୧୧୫୯୪. ଜଳ ଆଉ ତେଲ,
ଢ଼ାଳି ଦେଲେ ଗଲ ।

୧୧୫୯୫. ଜଳ ଆଗାଏ ନା ଶୋଷ ଆଗାଏ ।

୧୧୫୯୬. *ଏକାର୍ଥରେ* - ତୃଷ୍ଣା ଆଗ ଦୌଡ଼େ ନା ଜଳ ଆଗ ଦୌଡ଼େ ।

୧୧୫୯୭. ଜଳ (=ଦୀପ୍ତି) ଉଞ୍ଚା ଜଳ (=ଦୀପ୍ତି) ନିଚା ।
(ଖୋସାମତିଆର ମନ ରଖା କଥା । ଯେଉଁମାନେ ଗଜମୂର୍ଖ ଏବଂ ଆଜ୍ଞା ଆଜ୍ଞା କରି ଜୀବିକା ନିର୍ବାହ କରନ୍ତି, ସେମାନେ ଧନୀ ଲୋକଙ୍କ ପ୍ରତ୍ୟେକ କଥାକୁ ହାଁଜି ହାଁଜି ବୋଲି କହିଥାଆନ୍ତି ।)

୧୧୫୯୮. ଜଳ ଉପରେ ତେଲ ଟୋପା ।
(ମିଶେ ନାହିଁ ଅଥଚ ଶୀଘ୍ର ମାଡ଼ିଯାଏ । ଶୀଘ୍ର ମାଡ଼ିଯିବା କ୍ଷେତ୍ରରେ ପ୍ରବାଦଟି ପ୍ରଯୁଜ୍ୟ ।)

୧୧୫୯୯. ଜଳ କାଟେ, ବତାସ କାଟେ ।
ସାରୁଗଛ ଫୁପେଇ (=ଫୁସ୍ ଫୁସ୍ ଶବ୍ଦ) ଉଠେ ।
(ସାରୁଗଛ ଉପରେ ପାଣି ଓ ପବନ ମାଡ଼ ହେଲେ ସେ ଯେପରି ଫୁସ୍ ଫୁସ୍ ଶବ୍ଦ କରେ, ସେହିପରି ମଣିଷର ହାଡ଼ ଓ ମାଂସ ଉପରେ ଚୋଟ/ଆଘାତ ପଡ଼ିଲେ ସେ ସେହିପରି ଛାଟିପିଟି ହୁଏ ।)

୧୧୬୦୦. ଜଳକୁ କଣ୍ଟଇ ଶତ୍ରୁକୁ ଅଣ୍ଟଇ,
ସାଙ୍ଗକୁ ହୁଅଇ ଜଣେ,
ବାଡ଼ି ହୋଇ ଯେବେ ଶବ ଡାଙ୍ଗଖଣ୍ଡେ,
ତାକୁ ନଛାଡ଼ିବ କ୍ଷଣେ ।

୧୧୬୦୧. ଜଳକୁ କଣ୍ଟେ, ଶତ୍ରୁକୁ ଆଣ୍ଟେ
ସାଙ୍ଗେ ହୋଇଥାଇ ଜଣେ
ହଉ ପଛକେ, ଆମ୍ବ ଡିମିରି
ତାକୁ ନ ଛାଡ଼ିବ କ୍ଷଣେ ।
(ବନ୍ଧୁ ବିପଦରେ ଭରସା । ଯେମିତି ସେମିତି ବନ୍ଧୁଟିଏ ହୋଇଥିଲେ ମଧ ତାକୁ ପାଖେ ପାଖେ ରଖିବ । ଆମ୍ବ, ଡିମିରି ଡାଙ୍ଗ ଖଣ୍ଡିଏ ବି ଅସମୟରେ କାମ ଦିଏ ।)

୧୧୬୦୨. ଜଳକୁ ଜଳ, ଦୁଧକୁ ଦୁଧ ।
(ସ୍ୱଗୁଣ ଦ୍ୱାରା ପ୍ରତ୍ୟେକେ ପ୍ରକାଶିତ ହୁଅନ୍ତି ।)

୧୧୬୦୩. ଜଳ ଖାଇ, ଜଳର ବିଚାର ।

୧୧୬୦୪. *ଏକାର୍ଥରେ* - ପାଣି ପିଇ ଜାତି ପଚାରିବା ।

୧୧୬୦୫. *ସମାର୍ଥରେ* - ଦହି ଖାଇ ଭାଣ୍ଡର ବିଚାର ।
(ଦହିର ଗୁଣ ଯୋଗୁଁ ଦହି ଖିଆଯାଏ, ଦହିରହିବା ଭାଣ୍ଡର ବିଚାର ନିରର୍ଥକ । ତେଣୁ ଗୁଣହିଁ ସର୍ବତ୍ର ଆଦୃତ । ବିନା ଗୁଣରେ ଚାକଚକ୍ୟ ବାକବିତଣ୍ଡାର ପ୍ରୟୋଜନ ନାହିଁ । ଯେପରି କୁହାଯାଏ, 'ମୁଣ୍ଡିତ ଶୀର, ନକ୍ଷତ୍ର ଅନ୍ୱେଷଣ' ଅର୍ଥାତ୍ ଜ୍ୟୋତିଷ ବିଦ୍ୟା ନଜାଣି ମୁଣ୍ଡକୁ ଲଣ୍ଡାକରି ଗ୍ରହ ନକ୍ଷତ୍ରର ଗଣନା କରିବା ହାସ୍ୟକର । ଏହି ମର୍ମରେ ନିମ୍ନଲିଖିତ ପ୍ରବାଦଟି ଉଲ୍ଲେଖନୀୟ -)

୧୧୬୦୬. ଜଳ ଘାଣ୍ଟି ଜୋକର ବଳ କଳିବା ।

୧୧୬୦୭. ଢଳ ଛିଟାରେ ଡରଳିବା ।

୧୧୬୦୮. ଢଳ, ଢଙ୍ଗଲ, ଅନ୍ଧାର ରାତି,
ଅଣ୍ଡିରା ଗୋରୁ, ନୀଚ ଜାତି ।
(ଏମାନଙ୍କୁ କେବେହେଲେ ବିଶ୍ୱାସ କରିବ ନାହିଁ ।)

୧୧୬୦୯. ଢଳ, ଢଙ୍ଗଲ, ଅନ୍ଧାର ରାତି,
ଏଁଡ଼େ ଗୋରୁ, ନେଡ଼େ(=ନିଚ୍ଚ ମୁସଲମାନ) ଜାତି ।

୧୧୬୧୦. ଢଳ ଢଳ ଇନ୍ଦ୍ରର ଜଳ(=ବୃଷ୍ଟି ଜଳ),
ବଳ ବଳ ବାହୁର ବଳ ।
ଫଳ ଫଳ କଦଳୀ ଫଳ ।

୧୧୬୧୧. ଢଳଢଳା କାଠ ଜଳେ ନାହିଁ
ଜଳୁଥିଲେ ଲିଭଇ ନାହିଁ ।
(କୁଇ ଗାଡ଼ର ଦରପୋଡ଼ା କାଠକୁ କେହି ଆଣି ଚୂଲୀରେ ଜାଳେ ନାହିଁ । ଦୁଷ୍ଟ ଲୋକ ଥରେ ମାତି ଉଠିଲେ ସହଜରେ ଶାନ୍ତ ହୁଏ ନାହିଁ ।)

୧୧୬୧୨. ଢଳଢଳା କାଠ ଜଳି ନାହିଁ, ଥରେ ଜଳିଲେ ନିଭଇ ନାହିଁ ।
(ନିର୍ଲଜ ବ୍ୟକ୍ତି ପ୍ରତି କଟାକ୍ଷ ।)

୧୧୬୧୩. ଢଳଢଳା(ପୁରୁଷ), ଢଳଢଳୀ (ସ୍ତ୍ରୀ) ।
(ନିର୍ଲଜ ଓ ଗାଳି ସମ୍ବନ୍ଧୀୟ)

୧୧୬୧୪. ଢଳଢଳା ମାଣିକୀ
ଢଳଢଳ କରି ଅନାଇ ଥାଏ
ନଈ କତି ପାଣିକି ।
(‘ମାଣିକୀ’ ନାମ୍ନୀ ବୋକୀ ଝିଅ ପ୍ରତି ବ୍ୟଙ୍ଗ । ସେ ବିପଦର ଉପଯୁକ୍ତ ପ୍ରତିକାର ନ କରି କାବା ହୋଇ ଚାହିଁ ରହିଥାଏ ।)

୧୧୬୧୫. ଢଳଢଳା ହାଣ୍ଡି ଭାଙ୍ଗେ ନାହିଁ ।
(ନିର୍ଲଜ ବ୍ୟକ୍ତିକୁ ଉପମା)

୧୧୬୧୬. ଢଳ, ଢୁଲାପ, ଜୁଆଚୋରି,
ଏ’ ତିନିଙ୍କି ନେଇ ଡାକ୍ତରୀ ।

୧୧୬୧୭. ଢଳ ଢ଼ାଳ, ଭାତ ପଖାଳ,
ବିରାଡ଼ି ଡ଼ରକୁ ସମ୍ଭାଳ ।

୧୧୬୧୮. ଜଳ ଢ଼ାଳି ଜଳ ବାହାର କରିବା ।

୧୧୬୧୯. *ଏକାର୍ଥରେ* - କଣ୍ଟାରେ/ଦ୍ୱାରା କଣ୍ଟା କାଢ଼ିବା ।

୧୧୬୨୦. ଜଳତ ଜଳ ଇନ୍ଦ୍ର ଜଳ
ବଳତ ବଳ ବୁଦ୍ଧି ବଳ ।
(ବର୍ଷାପାଣି ଫସଲ ଲାଗି ସର୍ବୋତ୍କୃଷ୍ଟ । ବୁଦ୍ଧି ବଳରେ ଅସାଧ ସାଧିତ ହୁଏ ।)

୧୧୬୨୧. ଜଳ ଦାନ ଠାରୁ ଦାନ ନାହିଁ ।

୧୧୬୨୨. ଜଳ ଦେଖିଲେ ମୁତ ମାଡ଼େ,
ସଉତୁଣୀ ଦେଖିଲେ ଈର୍ଷା ବଢ଼େ ।

୧୧୬୨୩. ଜଳଧି ମନ୍ଥନର ବିଷ,
ରୁଦ୍ରହୁଁ ନୁହେଁ ଆନେ ଗ୍ରାସ । (ଜଗନ୍ନାଥ-ଭାଗବତ)

୧୧୬୨୪. ଜଳ ନ ପାଇ କାହିଁ ବଞ୍ଚିବେ ମୀନ,
ଚାତକ ବଞ୍ଚଇ କି ନ ଦେଖି ଘନ । (ଭକ୍ତଦାସ - ମଥୁରାମଙ୍ଗଳ)

୧୧୬୨୫. ଜଳ ନ ପିଇ ରହିବ ତୁମେ,
ନ ମରିଲେ ଦେଖିବୁ ଆମେ ।

୧୧୬୨୬. ଜଳନ୍ତା ଅନଳେ ପକାଇଲେ କାଷ୍ଠ ଘୃତ,
ତେବେ ଯେ ତାହାର ତେଜ ହୁଅଇ ବିଦିତ । (ନୃସିଂହ ପୁରାଣ)

୧୧୬୨୭. ଜଳନ୍ତା ଆଖିରେ ଦେଖିବା ।
(କ୍ରୋଧାନ୍ୱିତ ହୋଇ ଚାହିଁବା ବା ଅନେଇବା ।)

୧୧୬୨୮. ଜଳନ୍ତା ନିଆଁକୁ ଡ଼େଇଁବା ।
(ଜାଣିଶୁଣି ବିପଦକୁ ବରଣ କରିନେବା ।)

୧୧୬୨୯. ଜଳନ୍ତା ନିଆଁ ନିଭେଇବା ।
(ଝଗଡ଼ା ମେଣ୍ଟାଇବା / ବିପତ୍ତି ଟାଳିବା ।)

୧୧୬୩୦. ଜଳନ୍ତା ନିଆଁରେ କୁଟା/ଘିଅ ଦେବା । (ନ୍ୟାୟ ।)
(ଅତ୍ୟଧିକ କଳି ତକରାଳ କରିବା)

୧୧୬୩୧. ଜଳନ୍ତା ନିଆଁରେ କୁଟା ପକାଇବା । (ନ୍ୟାୟ)
( ଉତ୍ତେଜିତ ଲୋକକୁ ଅଧିକ ଉତ୍ତେଜିତ କରିବା । କ୍ରୁଦ୍ଧକୁ ଅଧିକ ଉସ୍କାଇବା । ଏପରି ଲୋକ ହିଂସାକାଣ୍ଡ ନ କଲେ ବି ତାର କାରଣ ହୋଇଥାଏ । ଏହି ନ୍ୟାୟ ଏପରି କ୍ଷେତ୍ରରେ ବ୍ୟବହାର କରାଯାଏ ।)

୧୧୬୩୨. ଜଳନ୍ତା ନିଆଁରେ ତେଲ/ଘିଅ ଢ଼ାଳିବା ।
(କଳି ତକରାଳକୁ ଆହୁରି ଉସ୍‌କେଇବା । ବିବିଧ ସାଂସାରିକ ପ୍ରଲୋଭନରେ ଅଧିକରୁ ଅଧିକ ଜଡ଼ିତ ହେବା ।)

୧୧୬୩୩. ଜଳନ୍ତା ନିଆଁରେ ହାତ ସେକିବା ।
(କାହାରି ଅହିତ, କଷ୍ଟ ବା ଲୋକସାନରୁ ଫାଇଦା ଉଠାଇବା ।)

୧୧୬୩୪. ଜଳ ପବନ ଲାଗି ଦେହ,
ଆଉ ଅଧିକ ଥିଲେ କହ । (ଜଗନ୍ନାଥ-ଭାଗବତ)

୧୧୬୩୫. ଜଳ ପାଖରେ ସ୍ୱପ୍ନ କୁହ
ଭଲ ମନ୍ଦ ବୁଡ଼େଇ ଥୁଅ ।

୧୧୬୩୬. ଜଳ ବହୁଳେ/ଗହଳେ ସୃଷ୍ଟି ନାଶ
ଜଳ ବିହୁନେ ସୃଷ୍ଟି ନାଶ ।
( ବହୁ ବୃଷ୍ଟିରେ ନଈ ବଢ଼ି, ଧୋଇ; ଅନାବୃଷ୍ଟିରେ ମରୁଡ଼ି । ଉଭୟ କୃଷିପ୍ରତି କ୍ଷତିକାରକ । )

୧୧୬୩୭. ଜଳ ବିନା ପୋଲୁହ(= ମାଛଧରା ଯନ୍ତ୍ର ବିଶେଷ)
ଖୋଳ ବିନା ତରୁଆଲ(= ଖଣ୍ଡା)
ଢ଼ାଲ ବିନା ଖେଳୁଆଡ଼(=ଯୋଦ୍ଧା) ।

୧୧୬୩୮. ଜଳ ବିନେ ତରଙ୍ଗ ।
(ଅସମ୍ଭବ ବା ନିରାଧାର କଥା ।)

୧୧୬୩୯. ଜଳର କୁମ୍ଭୀର ଢ଼ିପକୁ ଆସିବା ।
(ଜଳଚର ପ୍ରାଣୀ ସ୍ଥଳକୁ ଆସିଲେ ଯେପରି ଜୀବନ ଧାରଣ କରି ପାରେ ନାହିଁ, ସେହିପରି ଗୋଟିଏ ପରିସ୍ଥିତିରେ ସୁରୁଖୁରୁରେ ଚଳୁଥିବା ବ୍ୟକ୍ତି ଅନ୍ୟ ପରିସ୍ଥିତିକୁ ଯେ କୌଣସି କାରଣ ପାଇଁ ଆସିଲେ ତାର ସର୍ବନାଶ ଘଟେ ।)

୧୧୬୪୦. ଜଳର ଗତି ନିମ୍ନକୁ ।
(ପ୍ରକୃତିର ନିୟମ ।)

୧୧୬୪୧. ଜଳର ତଳ ମାପି ହୁଏ,
ମନର ତଳ ମାପି ନ ହୁଏ ।

୧୧୬୪୨. ଜଳର ଦାନ୍ତ ବାହାରିବା ।
(ଶୀତଦିନେ ଜଳ ଥଣ୍ଡା ହେବା ।)

୧୧୬୪୩. ଜଳର ମାଛକୁ ଜଳହିଁ ଭଲ ।
(ଯିଏ ଯେଉଁଠାରେ ବାସ କରେ, ସେଇ ସ୍ଥାନ ହିଁ ତାକୁ ଭଲ ଲାଗେ ।)

୧୧୬୪୪. ଜଳରେ ଆଲପନା (=ଝୁଣ୍ଟି) /ଜଳରେ ଅଙ୍କ କଷା/ଜଳର ତିଳକ ।
(ଏ ସବୁ ଅବାସ୍ତବ ଓ ଅବାନ୍ତର ।)

୧୧୬୪୫. ଜଳରେ କରି ଘର-ବାଡ଼ି,
କୁମ୍ଭୀର ସାଙ୍ଗରେ ଆଡ଼ି (=ଶତ୍ରୁତା) ।

୧୧୬୪୬. ଜଳରେ କୁମ୍ଭୀର,
ଡ଼ିପରେ ବାଘ ।
(ଉଭୟ ସଙ୍କଟରେ ପଡ଼ିବା ।)

୧୧୬୪୭. ଜଳ/ପାଣିରେ ଘର କରି କୁମ୍ଭୀର ସାଙ୍ଗରେ ବାଦ/କଳି ।
ଏହି ମର୍ମରେ ବଙ୍ଗଦେଶର ଓଡ଼ିଆ ପ୍ରବାଦ ରଚୟିତା 'ଗୋପାଳ ଉଡ଼େ'ଙ୍କ ରଚିତ ପ୍ରବାଦ -

୧୧୬୪୮. ଜଳରେ ସ୍ରୋତ ଥିଲେ ବି କୁକୁର ଲେହେ (=ଚାଟେ) ।

୧୧୬୪୯. ଜଳରେ ଜଳପ୍ରତିଷ୍ଠା, ମଳରେ ମଳପ୍ରତିଷ୍ଠା,
ବ୍ରାହ୍ମଣେ ଖାଆନ୍ତି ଶୂଦ୍ର ଅଇଁଠା,
ଶିବ ଖାଆନ୍ତି ବାଛୁରୀ ନାଳ,
ଶ୍ରୀକୃଷ୍ଣଙ୍କ ମୁଣ୍ଡରେ (କାନ୍ଧେ) ଶିଖଣ୍ଡି ଚୁଳ ।
(ସମାଜର ପ୍ରଚଳିତ ନିୟମ ପ୍ରତି ଲକ୍ଷ୍ୟ; ଜଳାଶୟ ଗଙ୍ଗା ଜଳଦ୍ୱାରା ପ୍ରତିଷ୍ଠା କରାଯାଏ, ବହିଁଦେଶ ଯାଇ ଶୌଚକରିବା ପରେ ମଳ ଲାଗିଥିବା ହାତକୁ ମାଟି ବା ଗୋବରରେ ଶୁଦ୍ଧ କରାଯାଏ, ବ୍ରାହ୍ମଣମାନେ ଶୂଦ୍ରଙ୍କ ଶ୍ରାଦ୍ଧରେ ଉତ୍ସର୍ଗ ହେବା ଚାଉଳ ଖାଆନ୍ତି, ବାଛୁରୀ ପିଇବା ପରେ ଦୁହାଁ ଦୁଧ ମହାଦେବଙ୍କୁ ଭୋଗ ହୁଏ, ଶ୍ରୀକୃଷ୍ଣଙ୍କ ଶିଖାରେ ମୟୂରଚୂଳ ଦିଆଯାଏ । ଏହି ସବୁ ବିଧି)

୧୧୬୫୦. ଜଳରେ ଜଳ ମିଶେଇବା ।
(ନିରର୍ଥକ କାର୍ଯ୍ୟ କରିବା)

୧୧୬୫୧. ଜଳରେ ପଥର ପଚେ ନାହିଁ ।

୧୧୬୫୨. *ଏକାର୍ଥରେ* - ତତଲା ପାଣିରେ ଘର ପୋଡ଼େ ନାହିଁ ।

୧୧୬୫୩. ଜଳରେ ପଶିବ ନାହିଁ କି ପହଁରା ଶିଖିବ ନାହିଁ ।
(ଜଳରେ ନ ପଶିଲେ ପହଁରା ଶିଖା ହୁଏ ନାହିଁ । ବିପଦରେ ନ ପଡ଼ିଲେ ପ୍ରତିକାର ଉପାୟ ଖୋଜା ହୁଏନି ।)

୧୧୬୫୪. ଜଳରେ ବାସ କରି କିମ୍ଭୀର ସଙ୍ଗେ ବାଦ ? (ନ୍ୟାୟ)
(ପାଖ ପଡ଼ୋଶୀ ପ୍ରବଳ ବ୍ୟକ୍ତି ସହିତ ବାଦ କଲେ ସର୍ବନାଶ ଘଟେ । )

୧୧୬୫୫. ଜଳରେ ବାସ କୁମୁଦିନୀ, ଚନ୍ଦ୍ର ଆକାଶରେ ।
(କୁମୁଦିନୀ ପୋଖରୀରେ ଏବଂ ଚନ୍ଦ୍ର ଆକାଶରେ ଥାଆନ୍ତି । କୁମୁଦିନୀ ଚନ୍ଦ୍ରଙ୍କର ଅତିପ୍ରିୟ ହେଲେ ମଧ୍ୟ କେବଳ ଚାନ୍ଦିନୀ ରାତିରେ ହିଁ ପ୍ରସ୍ଫୁଟିତ ହୋଇଥାଏ ।)

୧୧୬୫୬. ଜଳରେ ରେଖା, ଖଳର ପ୍ରୀତି ।
(ପାଣିରେ ଗାର ପରି ଖଳଲୋକର ପ୍ରୀତି କ୍ଷଣକ ପାଇଁ )

୧୧୬୫୭. *ଏକାର୍ଥରେ* - ଜହୁରୀ ସୁନା ଚିହ୍ନେ ।

୧୧୬୫୮. -*ଏକନ* - ସୁନା ଚିହ୍ନେ ବଣିଆ, ଗୁଣ ଚିହ୍ନେ ଗୁଣିଆ ।

୧୧୬୫୯. ଜଳ ସମାଧି ନେବା ।
(ଜଳରେ ବୁଡ଼ି ମରିବା । ଜଳରେ ଭାସି ଯାଇ ମରିବା ।)

୧୧୬୬୦. ଜଳ ସ୍ଥଳ ଏକାଠି ହେବା ।
(ମୂଷଳ ଧାରାରେ ବୃଷ୍ଟି ହେବା ।)

୧୧୬୬୧. ଜଳ ଶୁଖିଗଲେ କି କରିବ ବନ୍ଧ,
ରାତି ପାହିଗଲେ କି କରିବ ଚାନ୍ଦ ।

୧୧୬୬୨. ଜଳା ଘା'ରେ ଲୁଣ ଦେବା ।
(ଅତି କଟୁ ବଚନ କରିବା ।)

୧୧୬୬୩. *ଏକାର୍ଥରେ* - ପୋଡ଼ା ଘା'ରେ ବା କଟା ଘା'ରେ ଲୁଣ ଦେବା ।

୧୧୬୬୪. ଜଳାଞ୍ଜଳୀ ଦେବା ।
(ତର୍ପଣ କରିବା/ସମ୍ପୂର୍ଣ୍ଣ ତ୍ୟାଗ କରିବା ।)

୧୧୬୬୫. ଜଳି-କଟି ।
(କ୍ରୋଧ ବଶତଃ ଭଲମନ୍ଦ ଗାଳି ଗୁଲଜ । ଅପ୍ରିୟ ତୀକ୍ଷ୍ଣ ବ୍ୟଙ୍ଗ ।)

୧୧୬୬୬. ଜଳି ଜଳି ଖାକ/ରାଖ (=ପାଉଁଶ) ।
(କ୍ରୋଧ ବଶତଃ ସଞ୍ଜମ ହରେଇବା । ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବା । ଭସ୍ମ ହୋଇଯିବା ।)

୧୧୬୬୭. ଜଳି ପୋଡ଼ି ମରିବା ।
(ଅତ୍ୟନ୍ତ କ୍ରୋଧାନ୍ୱିତ ହେବା ।)

୧୧୬୬୮. ଜଳି ମରିବା ।
(ଆତ୍ମହତ୍ୟା କରିବା /ନିଆଁରେ ଝାସ ଦେଇ ମରିବା ।)

୧୧୬୬୯. ଜଳିଲା ଦୀପ ତଳ ଅନ୍ଧାର ।

(ଜଳିଲା ଦୀପ ଚାରିଆଡ଼ ଆଲୁଅ କରେ, କିନ୍ତୁ ତା ତଳେ ଅନ୍ଧାର ରହିଯାଏ । ସେହିପରି ବହୁ ବଡ଼ ଲୋକ ପୃଥିବୀରେ ଶିକ୍ଷା, ସଂସ୍କୃତି ବିସ୍ତାର କରିଥାନ୍ତି, କିନ୍ତୁ ନିଜ ଘରର ପରିସ୍ଥିତିକୁ ବଦଳାଇ ପାରନ୍ତି ନାହିଁ । ପଣ୍ଡିତଙ୍କ ପୁଅ ମୂର୍ଖ ବି ହୋଇପାରେ ।)

(ବି.ଦ୍ର. - ଅନେକ ସମୟରେ ଏହି ପ୍ରବାଦଟିକୁ ଆମେମାନେ 'ଦୀପ ତଳ ଅନ୍ଧାର' ବୋଲି କହିଥାଉଁ । ମାତ୍ର ଏହା ଠିକ୍ ନୁହେଁ । କାରଣ ନ ଜଳିଲା ଦୀପ ତଳ ଅନ୍ଧାର ହେବ କିପରି ?)

୧୧୬୭୦. ଜଳୁଥିବ ଦୀପ ଦିହୁଡ଼ି କୁମର
ଘର ହୋଇବ ଆଲୁଅ
ଘରୁ ଯେତେବେଳେ ଦୀପ ନିଭିଯିବ
ହୋଇବ ଅନ୍ଧାରମୟ ।
ତେତେବେଳେ ମାତ ବଚନ ବୋଇଲେ,
ଶୁଣରେ କୁମର ତୁହି
ମିଛ ମାୟାରେ ନ ଭୁଲି କୁମର
ଯାଅଁଯାଅ ଯୋଗୀ ହୋଇ । (ଗୋବିନ୍ଦଚନ୍ଦ୍ର ଗୀତିକା)

୧୧୬୭୧. ଜଳେଇ ଜଳେଇ ମାରିବା ।

(ଖୁବ୍ ସତେଇବା । ଅତ୍ୟଧିକ ବ୍ୟଙ୍ଗ କରି ନିଜ ବା କାହାରି ଜୀବନକୁ ଟୁକୁରା ଟୁକୁରା କରି ଖିନଖରାପ କରି ପକେଇବା ।)

୧୧୬୭୨. ଜଳେ ଦ୍ୱାରିକା ନାଶ ଯିବ ।
ମୋର ନିବାସ ମାତ୍ର ଥିବ । (ଜଗନ୍ନାଥ ଭାଗବତ ।)

୧୧୬୭୩. ଜହର ଓଗାଳିବା ।

(କ୍ରୋଧରେ ଭଲମନ୍ଦ କହିବା । ଅତି ଅପ୍ରିୟ ବ୍ୟଙ୍ଗ କରିବା । ଏପରି କଥା କହିବା ଯାହା ଦ୍ୱାରା ଅନ୍ୟର ହାନୀ ହେବ । ଦ୍ୱେଷପୂର୍ଣ୍ଣ କଥା କହିବା ।)

୧୧୬୭୪. ଜହର କରିବା/କରିଦେବା ।

(ଅଧିକ ଲୁଣଲଙ୍କା ଦେଇ ଖାଦ୍ୟ ପଦାର୍ଥକୁ ଅତିଶୟ କଟୁ, ଅସହ୍ୟ ଓ ଅହିତକର କରିଦେବା ।)

୧୧୬୭୫. ଜହର ଘୁଟି ପିଇବା ।

(ମନ ଭିତରେ ଦୁଃଖକୁ ଦବେଇଦେବା । ଅସହନୀୟ କଥା ଶୁଣି ମଧ କ୍ରୋଧକୁ ଦବେଇ ଦବା । ଅପମାନ ସହ୍ୟ କରିବା । ସ୍ୱୟଂ ଆପଣାର ଅହିତ କରିବା ।)

୧୧୬୭୬. ଜହର ଘୋଳାଇବା ।

(କଷ୍ଟ ସାଧ୍ୟ କରିବା । ସମ୍ବନ୍ଧ ଖରାପ କରିଦେବା । ଯେପରି, ତୁମେ ମୋ ସାଙ୍ଗ କାନରେ କହି ଆମ୍ଭ ଦୁଇଜଣଙ୍କ ମଧରେ 'ଜହର ଘୋଳାଇ' ଦେଲ ।)

୧୧୬୭୭. ଜହର ପୁଡ଼ିଆ ।

(ବହୁତ କଷ୍ଟକାରୀ, ହାନୀକର ଅତ୍ୟନ୍ତ ଉପଦ୍ରବୀ, କଟୁଭାଷୀ । ଯେପରି, ସେ ଲୋକଟି ଗୋଟିଏ 'ଜହର ପୁଡ଼ିଆ' ।)

୧୧୬୭୮. ଜହର ମିଶାଇବା ।

(ଅରୁଚିକର କରିବା । ନିଜ ଆଡ଼କୁ ଭଲମନ୍ଦ କହି ସ୍ଥିତି ଖରାପ କରିବା ।)

୧୧୬୭୯. ଜହରରେ ବୁଡ଼େଇବା ।

(ଧାରୁଆ ଅସ୍ତ୍ରକୁ ବିଷାକ୍ତ କରିବା । କୌଣସି କଥା ବା କାମକୁ ଅପ୍ରିୟ କରିବା ।)

୧୧୬୮୦. ଜହର ସଙ୍ଗତେ ମହୁରା (=ବିଷ) ଗୋଳି,
ପିଇଦେଲେ ସବୁ ଛିଣ୍ଡିବ କଳି ।

୧୧୬୮୧. ଜହାନକୁ ଆସିବା ।

(ଜନ୍ମ ନେବା ।)

୧୧୬୮୨. ଜହାନର (=ପୃଥିବୀର ଲୋକ ମାନଙ୍କର) ଫିକର ହେବା ।

(ଲୋକଲଜ୍ୟାକୁ ପରବାୟ କରିବା । ବହୁ ଲୋକଙ୍କ ପାଇଁ ଚିନ୍ତାଂକରିବା ।)

୧୧୬୮୩. ଜହାନରୁ ଉଠିବା ।

(ଚାଲିଯିବା/ମରିଯିବା ।)

୧୧୬୮୪. ଜହାନରେ ରହିବା ।

(ଜୀବିତ ରହିବା / ଅମର ହେବା ।)

୧୧୬୮୫. ଜହ୍ନିଆ ଜହ୍ନିଆ ଜହ୍ନି ଆଞ୍ଜୁଳି
ନିତି ପକାଏ ତିନି ଆଞ୍ଜୁଳି
ଦୋଳିରେ ଯାଏ ମୁଁ ଦୋଳିରେ ଆସେ
ପାଟପିଢ଼ା ଖଣ୍ଡି ମାଡ଼ିବସେ
ମୋ' ବୋଉ ମୋ' କୋଳରେ ବସେ
ନାତୁଣୀ ବୋହୂ ଭାତ ପରଷେ
ରାଜା ଯାଉଥିଲେ ଦାଣ୍ଡରେ

ତା' ନଶୁଣିଲେ କାନରେ
ହାଣ୍ଡିପୋଛା ଭାତ ଦିଏ
ଆଟିକାପୋଛା ଭାତ ଦିଏ
ବଳିରେ ବଳି, ନକର କଳି
କାଲି ଆଣିଦେବି ସରୁ ଚକୁଳି
ସରୁ ଚକୁଳିର ଉପରେ ମହୁ
ତାକୁ ନେଇଗଲା ରାଜାଙ୍କ ବୋହୂ
ଦଧି ନଉତିରେ ଗଣ୍ଡି ବୁଡୁ
ବାପ ଭାଇଙ୍କର ଆୟୁଷ ବଢୁ ।

୧୧୬୮୬. ଜହ୍ନି ଜହ୍ନି ଆଞ୍ଜୁଳି
ନିତି ପକା ତିନି ଆଞ୍ଜୁଳି
ତୋ ବୋହୂ ମୋ କଡ଼କୁ ବସୁ
ନାତୁଣୀ ବୋହୂ ଭାତ ପରଷୁ
ଦୋଳିରେ ଯାଆ, ଦୋଳିରେ ଆ
ଚକା ପିଢ଼ାଟି ମାଡ଼ି ବସିଥା ।

୧୧୬୮୭. ଜହ୍ନିଫୁଲ ଠୋ ଠା, କାକୁଡ଼ି ଫୁଲ ଠୋ ଠା
ଗୁଣ୍ଡୁଚି ମୂଷା କହିଯାଇଛି ଚାଉଳ ମୁଠେ ଥୋଇଥା ।
(କୁଆଁର ପୁନେଇ ସନ୍ଧ୍ୟାରେ ଝିଅ ବୋହୂମାନଙ୍କର ମାରଣ ଗୀତ )

୧୧୬୮୮. ଜହ୍ନି ଫୁଲର ଆୟୁଷ ପା
ସଞ୍ଜେ ଫୁଟି ସକାଳେ ଯା ।
(ବ୍ୟଙ୍ଗ ଆଶୀର୍ବାଦ -ଜହ୍ନୀଫୁଲ ପରି ସଞ୍ଜରେ ଫୁଟି ସକାଳେ ଝଡ଼ । ଅର୍ଥାତ୍ ଅଳ୍ପାୟୁ ହୁଅ ।)

୧୧୬୮୯. ଜହ୍ନି ମଞ୍ଜି, କିଲୋ ଜହ୍ନୀ ମଞ୍ଜି
ଡାକେ ନାହିଁ କି ହାକେ ନାହିଁ
ବଳେ ପଶୁଥାଏ ପେଲି ଗୁଞ୍ଜି ।
( ବିନା ନିମନ୍ତ୍ରଣରେ ଆସୁଥିବା ବ୍ୟକ୍ତି ପ୍ରତି ଆକ୍ଷେପ । )

୧୧୬୯୦. ଜହ୍ନି ମଞ୍ଜି ପରି ଗୋରା ।
(ଗାଢ଼ କଳା ରଙ୍ଗକୁ ବ୍ୟଙ୍ଗ କରି ଏପରି କୁହାଯାଏ ।)

୧୧୬୯୧. ଜୟ କଲା ଦେଶରେ ଦଣ୍ଡେ ନ ରହି । (ପ୍ରବାଦ)

୧୧୬୯୨. ଜୟ କଲା ସ୍ଥାନେ କେଭେଁ ନ ରହିବ କ୍ଷଣେ,
ଏ କଥା ମୁନିଏ ଲେଖି ଅଛନ୍ତି ପୁରାଣେ । (ନୃସିଂହ ପୁରାଣ)

୧୧୬୯୩. ଜୟ ଜଗବନ୍ଧୁ ହେ ଯଦୁନନ୍ଦନ ।
ଗୋପବାଳା ହୃଦତଟ ଚନ୍ଦନ । (ଭକ୍ତନର ଘୋଷା)

୧୧୬୯୪. ଜୟ ଜୟ ବିପଦଭଞ୍ଜନ ଦାଶରଥି ।
ସାତ ତାଳରୁ ରଖିଲ ଭରତିଆ ପକ୍ଷୀ ।(ଦୀନକୃଷ୍ଣ; ମୃଗୁଣୀ ସ୍ତୁତି)

୧୧୬୯୫. ଜୟ ବେଳେ କ୍ଷୟ ନାହିଁ
ମରଣ ବେଳେ ଔଷଧ ନାହିଁ ।
(ଭାଗ୍ୟର ଏଇ ରୀତି - ଯେ ଉପରକୁ ଉଠେ ସେ ଉଠୁଥାଏ । ମୃତ୍ୟୁ ଆସି ପହଞ୍ଚିଲେ ହୁଏତ ଔଷଧ ମିଳେନାହିଁ କିମ୍ବା ରୋଗୀକୁ କାଟୁ କରେ ନାହିଁ ।)

୧୧୬୯୬. ଜୟ ଯେ ଚଣ୍ଡିକା ମଙ୍ଗଳା ।
ରଖ ମୋ ଏକଇର ବଳା ।(ଜଗନ୍ନାଥ-ଭାଗବତ)

୧୧୬୯୭. ଜୟ ରାଧେ ରାଧେ
ତୋର ଅଧେକୁ ମୋର ଅଧେ ।

୧୧୬୯୮. ଜୟ ରାଧେ ଶ୍ରୀ ରାଧେ ରାଧେ,
ଭଜ ରାଧେ ଶ୍ରୀରାଧେ । (ହିନ୍ଦୀ ଭଜନ)

୧୧୬୯୯. ଜୟ ସୀତାରାମ ହେବା ।
(ମରିଯିବା । ବରାବର ନାହିଁ ନାହିଁ କହିବା ।)

୧୧୭୦୦. ଜଲଦି କାମ ସଇତାନର ।
(କୌଣସି କାମ ତର ତର ହୋଇ କରିବା ଅନୁଚିତ । ଭଲଭାବରେ ବିଚାର ବିମର୍ଶ କରି କାମ କରିବା ଉଚିତ ।)

୧୧୭୦୧. ଜଲଦି କାମ ଶଇତାନର,
ବିଳମ୍ବ କାମ ରହମାନର ।
(ଜଲଦି କଲେ କାମ ବିଗିଡ଼ି ଯାଏ । ଧୀରସ୍ଥିର ହୋଇ କଲେ କାମ ଠିକ୍ ହୋଇଥାଏ ।)

୧୧୭୦୨. ଜ୍ୱଳନ୍ତକୁ ଜଳେଇବା ।
(ଦୁଃଖୀକୁ ଅଧିକ ଦୁଃଖ ଦେବା ।)

୧୧୭୦୩. ଜାଉ ଖାଇବ ନା ମାଛି ହୁରୁଡ଼େଇବ ।
(ଦୁଇଟି କାର୍ଯ୍ୟ ଏକସଙ୍ଗରେ କରିବା ବିରକ୍ତିଜନକ ।)

୧୧୭୦୪. *ଏକାର୍ଥରେ* - ଜାଉ ଖାଇବି, ନାଁ ମାଛି ହୁରୁଡ଼େଇବି ?

୧୧୭୦୫. ଜାଉ ଦହଡ଼/ତହତହ ପାଖେଇ ଖା ।
(ତାହାହେଲେ ହାତ ପୋଡ଼ିଯିବ ନାହିଁ ।)

୧୧୭୦୬. ଜାଉ ନଥିବାରୁ ପେଜ,
କେହି ନଥିବାରୁ ତୋ ମୁହଁ ଚାହୁଁଛି,
କହିଲେ ମାଡୁଛି ଲାଜ ।

୧୧୭୦୭. ଜାଉଁଳି ଜହ୍ନ, ଟୋପି ଚନ୍ଦନ, ମହତା ପାନ । (ବ୍ୟଙ୍ଗ)

୧୧୭୦୮. ଜାଗରଣ ଭୟଂ ନାସ୍ତି ।
(ଜାଗ୍ରତ ଥିଲେ ଭୟ ଲାଗେ ନାହିଁ ।)

୧୧୭୦୯. ଜାଗରଣେ ଲକ୍ଷ୍ମୀଙ୍କ କୃପା,
ନିଦ୍ରାରେ ଲକ୍ଷ୍ମୀ ହୁଅନ୍ତି ବିରୂପା ।

୧୧୭୧୦. ଜାଗର ନୁହେଁ କି ପାଗର ନୁହେଁ
ମାଆ ବୋଇଲା ଏ ଭାଗର ନୁହେଁ ।

୧୧୭୧୧. ଜାଗରେ ମଛନ୍ଦର (=ବୋକା) ଗୋରଖ (=ଗୋରଖନାଥ*) ଆସିଲେ ।
(କାହାରିକୁ ସଚେତନ କରିବା ପାଇଁ ଏପରି କୁହାଯାଏ ।)

* ଗୋରଖନାଥ - ଖ୍ରୀ.୧୬ଶ ଶତାବ୍ଦୀ ବହୁ ପୂର୍ବରୁ 'ନାଥ ଧର୍ମ' ତଥା 'ନାଥ ସମ୍ପ୍ରଦାୟ'ର ଅଭ୍ୟୁତ୍ଥାନ ଘଟିଥିଲା । ଏହି ସଂପ୍ରଦାୟର ପ୍ରଧାନ ଗୁରୁ ହେଉଛନ୍ତି ଗୋରଖନାଥ । ଏହାଙ୍କ ପ୍ରଭାବ ଓଡ଼ିଶାର ପୁରପଲ୍ଲୀର ଲୋକମାନଙ୍କ ଉପରେ ପ୍ରଭୂତ ଭାବରେ ପଡ଼ିଥିଲା । ନାଥ ଯୋଗୀମାନଙ୍କର ଲୋକପ୍ରିୟତା ଗ୍ରାମେଗ୍ରାମେ ଅତିମାତ୍ରାରେ ପ୍ରକଟିତ ହୋଇଥିଲା । ଲାଉତୁମ୍ୱା ସଙ୍ଗୀତ ଯନ୍ତ୍ର ସାହାଯ୍ୟରେ ଗୀତଗାଇ ଦ୍ୱାରେଦ୍ୱାରେ ବୁଲି ଭିକ୍ଷା ମାଗିବାର ପ୍ରଥା ସେମାନଙ୍କ ଦ୍ୱାରା ପ୍ରଚଳିତ ଥିଲା । ଏହି ସମୟରେ ମହାପୁରୁଷ ଯଶୋବନ୍ତ ଦାସଙ୍କ ରଚିତ 'ଗୋବିନ୍ଦ ଚନ୍ଦ୍ର' ବା 'ଟିକା ଗୋବିନ୍ଦ ଚନ୍ଦ୍ର' ନାଥଯୋଗୀମାନଙ୍କର ପ୍ରିୟ ସଙ୍ଗୀତ ଥିଲା । ଏହାର ପ୍ରଥମ ପଦଟି ହେଲା -

'ଭଜୁକିନା ରାମ ନାମରେ ଗୋବିନ୍ଦ
ଭଜୁକିନା ରାମ ରାମ ।
ଭଜି ନପାରିଲେ କୁଳଚନ୍ଦ୍ରମାରେ
ବାନ୍ଧିନେବ କାଳ ଯମ ।'

୧୧୭୧୨. ଜାଗ୍ରତରେ ପାଏ, ଶୋଇଲେ ହରାଏ ।
(ସାବଧାନ ରହିଲେ ଲାଭ ହୁଏ, ଅସାବଧାନ ରହିଲେ କ୍ଷତି ହୁଏ ।)

୧୧୭୧୩. ଜାଗା ଜାଣି ବସିବ,
ଜମି ଜାଣି ଚଷିବ ।

୧୧୭୧୪. ଜାଗିଲା ଘରକୁ ଭୂତ ପଶେ ନାହିଁ ।
(ଘରଲୋକେ ସତର୍କ ଥିଲେ ବାହାରର ଲୋକ୍ ପଶି କିଛି ଅନିଷ୍ଟ କରି ପାରନ୍ତି ନାହିଁ । )

୧୧୭୧୫. ଜାଗେ ଯେ, ପାଏ ସେ ।
(ସଚେତ ଏବଂ ସାବଧାନ ବ୍ୟକ୍ତି ହିଁ ସଂସାରରୁ ଲାଭ ବା ଫାଇଦା ଉଠାଏ ।)

୧୧୭୧୬. ଜାଚି କଲ୍ୟାଣ, ମାଗି ଓଳିକି । (ହାସ୍ୟାସ୍ପଦ କଥା)

୧୧୭୧୭. ଜା-ଜାଉଁଳି ଆପଣା ଉଲି
ନଣନ୍ଦ ଚେଡ଼ି ପର
ଶାଶୁ ବୁଢ଼ୀ ମଲାପରେ
ହେବି ସ୍ୱତନ୍ତର(=ସ୍ୱତନ୍ତ୍ର) ।

୧୧୭୧୮. ଜାଠ କହେ ଜାଠୁଣୀଲୋ,
ଯେଉଁ ଗାଁରେ ରହିବ,
ଓଧ ବିଲେଇ ନେଲା କହିଲେ ବି
ହାଁଜି ହାଁଜି କହିବ ।
(ସମାଜରେ ଚଳିବା ପାଇଁ ଅନ୍ୟର ବେଠିକ କଥାରେ ବି ହାଁଜି ହାଁଜି କରିବାକୁ ପଡ଼ିଥାଏ ।)

୧୧୭୧୯. ଜାଠରେ ଜାଠ, ତୋ ମୁଣ୍ଡରେ ଖଟ ।
ତେଲିରେ ତେଲି, ତୋ ମୁଣ୍ଡରେ ଖଲି ।
(ଯିଏ ସୁନ୍ଦର ଅସୁନ୍ଦର କିମ୍ବା ପ୍ରିୟ ଅପ୍ରିୟ କଥା ବିଚାର ନ କରି ବାଛେ କଥା କୁହେ, ସେପରି ଲୋକକୁ ଏହା କୁହାଯାଇ ଥାଏ ।)

୧୧୭୨୦. ଜାଡ଼ ଜାଡ଼ ଜାଡ଼, ବୁଢ଼ାର ଭାଙ୍ଗେ ଘାଡ଼(=ବେକ) ।
ଜୁଆଣର ଭାଙ୍ଗେ ଠେଙ୍ଗ(=ଗୋଡ଼), ଛୁଆକୁ କରେ ବେଙ୍ଗ ।

୧୧୭୨୧. ଜାଡ଼ ଦିନେ ବୋଉର ଜାଡ଼-କଣ୍ଢା, ଗରମ ଦିନେ ଘିମିରି ।

୧୧୭୨୨. ଜାଡ଼ୀ କଥା ଜାଡ଼ୀ ମା' ଜାଣେ ।

୧୧୭୨୩. *ଏକାର୍ଥରେ* - କାଲ ଠାର କାଲ ମା' ଜାଣେ ।
(ମା' ପିଲାକୁ ବଢ଼େଇଚି, ତାର ଭାବଭଙ୍ଗୀ ଜାଣେ । ସେହିପରି ଯେ ଯାହା ସଙ୍ଗେ ଚଳିଆସିଛି, ତାର ଅସ୍ଫୁଟ ମନକଥା ସେ ବୁଝିପାରେ । )

୧୧୭୨୪. ଜାଣନ୍ତି ନାହିଁ ଇତିଶ୍ରୀ, କରନ୍ତି ଆସି ସରଦାରି

୧୧୭୨୫. ଜାଣି ଘୋଡ଼ାର ଶିଙ୍ଗ ନାହିଁ
ଶିଙ୍ଗ ଥିଲେ ଘୋଡ଼ା ରଖନ୍ତା ନାହିଁ ।
(ଅତି ଉଚ୍ଛୃଙ୍ଖଳ ଲୋକ ହାତରେ ଭଗବାନ୍ କ୍ଷମତା ଦିଅନ୍ତି ନାହିଁ । କ୍ଷମତା ପାଇଲେ ସେ ମହା ଅନର୍ଥ ସୃଷ୍ଟି କରନ୍ତା ।),(ଦୁର୍ବଳ ଦୁର୍ବୃର୍ତ୍ତ ବ୍ୟକ୍ତି ପ୍ରତି ଆକ୍ଷେପୋକ୍ତି ।)

୧୧୭୨୬. *ଏକାର୍ଥରେ* - ଜାଣି ଘୋଡ଼ାର ଶିଙ୍ଗ ନାହିଁ,
ଶିଙ୍ଗ ଥିଲେ, ମହୀ ରଖନ୍ତା ନାହିଁ ।

୧୧୭୨୭. ଜାଣିଛୁ କି କେତେ ରଙ୍ଗର ଥାଟ (=ଢାଞ୍ଚା) ।
ଘାଟକୁ ଅଘାଟ ଅଘାଟକୁ ଘାଟ ।

୧୧୭୨୮. ଜାଣି ନ ପାରନ୍ତି ବଅସ ଧାପେ,
ଏବେ ମରୁଅଛି ଗୁରୁ ଶାଇପେ (=ଅଭିଶାପରେ) ।

୧୧୭୨୯. ଜାଣି ନହୁଏ ନିଶାଚର ମାୟା ।
(ମାୟାବୀ ଓ ଲମ୍ପଟ ଲୋକର ଯୋଜନା ଜାଣିବା ଅତ୍ୟନ୍ତ ଦୂରୂହ ।)

୧୧୭୩୦. ଜାଣି ପଚାରେ ଧମ (= ଉତ୍ତମ ବ୍ୟକ୍ତି)
ନ ଜାଣି ନ ପଚାରେ ଅଧମ ।
(ଜାଣିଥିଲେ ସୁଦ୍ଧା ଉତ୍ତମ ବ୍ୟକ୍ତି ଅନ୍ୟର ହାନିଲାଭ ପଚାରି ବୁଝେ । ମନ ନେବାର ଓ ବନ୍ଧୁତା ବଢ଼େଇବାର ଏହା ଏକ କୌଶଳ ।)

୧୧୭୩୧. ଜାଣିବ ଆଖୁର ମିଠାକୁ,
ଚୋବାଇବ ଯେବେ ନିମ୍ବ ପତ୍ରକୁ ।
(ଯେଉଁ ଲୋକ ଦୁଃଖ ସହିପାରେ, ତାକୁ ସୁଖର ସ୍ୱାଦୁ ମିଳିଥାଏ ।)

୧୧୭୩୨. ଜାଣି ଶୁଣି ନିଆଁ/କୂଅରେ ଡ଼େଇଁବା ।
(ଜାଣିଶୁଣି ବିପଦରେ ପଡ଼ିବା । ଜାଣିଶୁଣି ଅନ୍ୟାୟ କରି ତାର କୁଫଳ ପାଇବା । ଜାଣତରେ ପ୍ରାଣ ସଙ୍କଟରେ ପକାଇବା ।)

୧୧୭୩୩. ଜାଣିଲେ ବି ଭୟ, ନ ଜାଣିଲେ ବି ନୁହଁ ।

୧୧୭୩୪. ଜାଣେନି, ପାରେନି, ନାହିଁନି ଘରେ,
ଏ ତିନି ଓଳରେ ଦେବତା ହାରେ ।

୧୧୭୩୫. ଜାଣେନି ଶୁଣେନି ବାମୁଣ(=ବ୍ରାହ୍ମଣ) ।
ଚଣା କ୍ଷେତରେ ବୁଣେ ଆମନ(=ଧାନ ବିଶେଷ) ।

୧୧୭୩୬. ଜାଣେନି ଶୁଣେନି ଭଲେ,
ନିଜ ମାଇପକୁ ଶାଶୁ ବୋଲେ ।

୧୧୭୩୭. ଜାତକ ନାହାକ ଯଦି କହନ୍ତେ ସତ
ତେବେ କାହିଁକି ମାଗନ୍ତେ ଭିଖ ?

୧୧୭୩୮. ଜାତକ ସମସ୍ତେ ଦେଖନ୍ତି,
କର୍ମଫଳ କେହି ଦେଖନ୍ତି ନି ।

(କେହି ଜାଣନ୍ତି ନାହିଁ ଯେ ଭବିଷ୍ୟତରେ କାହାର କ'ଣ ହେବ । ତଥାପି ଜାତକ ଦ୍ୱାରା ନୁହେଁ ନିଜର କର୍ମଫଳ ଦ୍ୱାରା ଭବିଷ୍ୟତ ନିର୍ଦ୍ଧାରିତ ହୋଇଥାଏ ।)

୧୧୭୩୯. ଜାତି ଆଗରେ ହାତୀ ଚାଲିପାରେ ନାହିଁ ।

(ଜାତିଆଣ ଗୋଷ୍ଠୀ କଥା କେହି ପ୍ରତ୍ୟାଖ୍ୟାନ କଲେ ଏକଘରକିଆ ହେବାକୁ ପଡ଼େ । ସୀମିତ କ୍ଷେତ୍ରରେ ଗୋଷ୍ଠୀର କ୍ଷମତା ପ୍ରଚୁର । ଜାତିବିରୋଧୀ କାର୍ଯ୍ୟ କଲେ ମଣିଷ ବିଶ୍ୱାସଘାତକ ଭାବେ ପରିଗଣିତ ହୁଏ । ଜାତିର କୋପଦୃଷ୍ଟିରେ ପଡ଼ି ମରେ । ବ୍ୟକ୍ତିବିଶେଷ ହାତୀପରି ବଳବାନ୍ ହେଲେ ମଧ୍ୟ ଜାତି ଆଗରେ ହାର ମାନିବାକୁ ପଡ଼େ ।)

୧୧୭୪୦. ଜାତିଆ କାଉ ଛୁଆ,
ବସାରେ ରାବେ ରା'-ରା' ।

୧୧୭୪୧. ଜାତିଆ ଝିଅ, ଗାତରେ ମରେ/ଗଣ୍ଡିଲିରେ ମରେ /ଘର କଣରେ ମରେ ।

୧୧୭୪୨. ଜାତିଆ ବିଲେଇ ମୂଷା ମାରେ ।

୧୧୭୪୩. ଜାତି ଇଚ୍ଛାରେ ପଙ୍ଗତ,
ବିହନ (=ଧାନ ବିହନ) ଇଚ୍ଛାରେ ଭାତ ।

୧୧୭୪୪. ଜାତିକି ଜାତି ଖାଏ ।

୧୧୭୪୫. ଜାତିକୁ ଜାତି କାଟେ
ପାଣିକୁ ପାଣି କାଟେ ।

(ଜାତିଆଣ ଭାବକୁ ଜାତି ପ୍ରଶୟ ଦିଏ ନାହିଁ । ଥଣ୍ଡା ଚିକିତ୍ସାରେ ସର୍ଦ୍ଦି ଭଲ ହୁଏ ।)

୧୧୭୪୬. ଜାତିକୁ ଜାତି ଟାଣେ, ଚୋରକୁ ଚୋର ଟାଣେ,
ଅଗ୍ନିକୁ ଅଗ୍ନି ଟାଣେ, ଗୋଦର ସାତ ପୁରୁଷକୁ ଟାଣେ ।

୧୧୭୪୭. ଜାତି କେଉଁଠି ?
ନାଁ ଟଙ୍କା ବାକ୍ସରେ !

(ସମାଜନେତାଙ୍କୁ ଟଙ୍କା ଦେଲେ ସେ କୌଣସି ଅଜାତିଆକୁ ଜାତି କରାଇ ପାରନ୍ତି

କିମ୍ବା ଅଜାତିଆ ଜରିମାନା ଦେଇ ଜାତିରେ ପଶେ । ଟଙ୍କା ବଳରେ ଜାତିଆଣ ପଣର ଓଲଟପାଲଟ ହେବାକୁ ବିଦ୍ରୁପ କରାଯାଇଛି ।)

୧୧୭୪୮. ଜାତି ଖୋଜିଲେ ଗତି ନାହିଁ,
ଗତି ଖୋଜିଲେ ଜାତି ନାହିଁ ।

୧୧୭୪୯. ଜାତି ଗଲା, ପେଟ ପୁରିଲା ନାହିଁ ।
(ଅକାର୍ଯ୍ୟ କରି ମଧ ଉଦ୍ଦେଶ୍ୟ ସିଦ୍ଧ ନ ହେବା ।)

୧୧୭୫୦. *ଏକାର୍ଥରେ* - ବାରଜାତି ତେର ଗୋଲା, ବୈଷ୍ଣବ ହେଲେ ସବୁଗଲା ।

୧୧୭୫୧. ଜାତି ଗଲେ ଥରେ, ଆଉ କି ଫେରେ !

(ପୂର୍ବକାଳରେ ଥରେ ଯାହାର ଜାତି ଗଲା, ସେ ଆଉ ପୁନର୍ବାର ନିଜ ଜାତିକୁ ଫେରି ଆସି ପାରେନାହିଁ । ଉଦାହରଣ ସ୍ୱରୂପ - କଳାପାହାଡ଼ ମୁସଲମାନ ଧର୍ମ ଗ୍ରହଣ କରିଥିଲା । ମାତ୍ର ଅନୁତାପ କରି ହିନ୍ଦୁ ହେବାକୁ ମନସ୍ଥ କରି ପୁରୀ ମୁକ୍ତି ମଣ୍ଡପ ସଭାର ପଣ୍ଡିତମାନଙ୍କୁ ପ୍ରାର୍ଥନା କଲା । ମାତ୍ର ପଣ୍ଡିତମାନେ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ । ଫଳରେ କଳାପାହାଡ଼ ମୁସଲମାନ ସୈନ୍ୟଙ୍କ ମଦତରେ ମନ୍ଦିର ମାଳିନୀ ଉତ୍କଳକୁ ଧ୍ୱଂସ କରି ଜଗନ୍ନାଥଙ୍କୁ ନେଇଯାଇ ପୋଡ଼ି ଦେଇଥିଲା । ତଥାପି ସେ ହିନ୍ଦୁ ଧର୍ମକୁ ଫେରି ପାରିନଥିଲା । ମାତ୍ର ଆଜି କାଲିକା କଥା ନିଆରା । ପ୍ରତିଦିନ ବହୁ ଖ୍ରୀଷ୍ଟିୟାନ୍-ହିନ୍ଦୁ ମାନଙ୍କୁ ପୁଣି ହିନ୍ଦୁଧର୍ମକୁ ଫେରାଇ ଅଣାଯାଉଛି ।)

୧୧୭୫୨. ଜାତି ଗଲେ ବୈଷ୍ଣବ ।

(ବୈଷ୍ଣବ ଧର୍ମରେ ଜାତି ପତି ଧରାଯାଏ ନାହିଁ । ଯେ କୌଣସି ଜାତିର ଲୋକ ବୈଷ୍ଣବ ଧର୍ମ ଗ୍ରହଣ କରିପାରେ । ପ୍ରଭୁ ଶ୍ରୀ ଚୈତନ୍ୟ ଏହି ଧର୍ମ ପ୍ରବର୍ତ୍ତନ କରିଥିଲେ ।)

୧୧୭୫୩. ଜାତି ଗୁଆଳାର କାଞ୍ଜି ଭକ୍ଷଣ ।
(ନାକୁ ମାତ୍ର ଗଉଡ଼, କାଞ୍ଜି ଖାଏ ।)

୧୧୭୫୪. ଜାତି ଗୁଡ଼ିଆ
ବାରମାସରେ ତେର କୁଡ଼ିଆ ।
(ଗୁଡ଼ିଆ ମେଳା, ମେଳଣ, ହାଟରେ ଅସ୍ଥାୟୀ କୁଡ଼ିଆ କରି କୋରା, ଉଖୁଡ଼ା, ଖଇ, ଖୁଡୁମା ଆଦି ବିକି ନିଜର ଗୁଜରାଣ ମେଣ୍ଟାନ୍ତି ।)

୧୧୭୫୫. ଜାତି ଜାତିକୁ ଉଠାଏ,
ହାତୀ ହାତୀକୁ ଉଠାଏ ।

୧୧୭୫୬. ଜାତି ନେଲେ ମାଣିକ ଭେଣ୍ଡି (=ଭେଜାଲ) ।
(ମୂଲ୍ୟବାନ୍ ଧନ ବିନିମୟରେ ମଧ ଜାତି ହରାଇବା କ୍ଷତିକାରକ ।)

୧୧୭୫୭. ଜାତି ଫାନ୍ତି କେହି ନ ପୁଛନ୍ତି,
ପୋଷାକ ନାଇ ସୈନିକ ସାଜନ୍ତି ।
(ସୈନିକମାନଙ୍କର ଜାତି ପଚରାଯାଏ ନାହିଁ । ପ୍ରତ୍ୟେକ ଜାତିର ଲୋକ ସୈନିକ ପୋଷାକ ପିନ୍ଧି ସୈନିକ ହେଲେ ହେଲା ।)

୧୧୭୫୮. ଜାତି ଫାନ୍ତି କେହି ନ ଖୋଳେ,
ହରିଙ୍କୁ ଭଜିଲେ ହରି ମିଳେ ।
(ପ୍ରତ୍ୟେକ ଜାତିର ଲୋକ ହରିଙ୍କୁ ଭଜି ପାରିବେ । ଉଚ୍ଚ ବା ନୀଚ ଜାତିର ଲୋକ ଭକ୍ତିପୂତ ଚିତ୍ତରେ ଆରାଧନା କଲେ ହରି ତା' ଉପରେ କୃପା କରି ଥାଆନ୍ତି ।)

୧୧୭୫୯. ଜାତି ବେଉସା ନରର ଭୂଷା (=ଭୂଷଣ),
ଆଉ ସବୁ ଯାକ ଫସର ଫସା ।

୧୧୭୬୦. ଜାତି ଭଣ୍ଡେଇ କରଣ ।

୧୧୭୬୧. ଜାତି ଭିକାରୀ, ଭେକରେ କି କାମ ।

୧୧୭୬୨. *ଏକାର୍ଥରେ* - ଜାତି ବୈଷ୍ଣବ, ଭେକରେ କି କାମ ।

୧୧୭୬୩. ଜାତି ଭେଦ ବେଦରେ ନାହିଁ ।

୧୧୭୬୪. ଜାତି ମହାକାଳ କୋଚିଲା ପିତା ।
(ପୁରୁଷକୁ ସ୍ତ୍ରୀର ଗାଳି । ଦେଖା ସୁନ୍ଦର, ଗୁଣହୀନ, ପ୍ରୀତିହୀନ ପୁରୁଷ ପ୍ରତି)

୧୧୭୬୫. *ଏକାର୍ଥରେ* - ଦେଖା ସୁନ୍ଦର କଖାରୁ ଫୁଲ ।

୧୧୭୬୬. ଜାତି ମାଇକିନା କି କାଳୀ
ନଈ ପାଣିକି ଗୋଳି ?

୧୧୭୬୭. *ଏକାର୍ଥରେ*- କୁଳକନ୍ୟା କାଳିଆ, ତୀର୍ଥ ପାଣି ଗୋଳିଆ ।
(ନିଜ କୁଳର ହେଲେ, କଳା କନ୍ୟାର ଦୋଷ ଧର୍ତ୍ତବ୍ୟ ନୁହେଁ । ନଈବଢ଼ି ପାଣି ଗୋଳିଆ ହେଲେ ମଧ ପାନୀୟ ।)

୧୧୭୬୮. ଜାତି ମୋ ଅଟେ କିରାତ
ଶବର ଜାତିକୁ ଚେତ
ପିତାର ସତ୍ୟ, ବିଭାକଲେତ
ଥାଇ ତୋ ମାତା କରିଥିଲେତ
ଏକାବେଳେ ହେଲା ଭୋଜିଭାତ ଲୋ' ପତିବ୍ରତ ।

ବନେ ଶୁଭେ କାର ବାଣୀ,
ମୁହିଁ ଅଟେ ଶବରଣୀ
ନବ ଯୌବନୀ, ଚାନ୍ଦବଦନୀ,
ମନ୍ଦ ହାସିନୀ
ମୁଁ ଅଭାଗିନୀ, ଅକଳଙ୍କିନୀ,
ଜାତି ପଦ୍ମିନୀ
ମୁଁ ତ ବନସ୍ତେ ପଞ୍ଚକଲ୍ୟାଣୀରେ ନାଗଫେଣି ।
ଡାକେ ଶବରା ବିନୀୟୀ
ଆସ ମୋର ପ୍ରାଣ ସହି
ଗୁମାନ ନୋହି, ରୁଷ କିମ୍ପାଇଁ
ଆସ ଲୋ ଧାଇଁ
ତୋତେ ନଦେଖି ଉଛନ୍ନ ମୁହିଁ ଲୋ' ପ୍ରାଣସହି ।

୧୧୭୬୯. ଜାତି ଯାଏ ପେଟ ପୂରେ ନାହିଁ ।

୧୧୭୭୦. ଜାତି ଯିବ ପେଟ ପୂରିବ ନାହିଁ ।

୧୧୭୭୧. ଜାତିର ବଇରି ଜାତି,
କାଠ ର ବଇରି କାଠ ।
(ସ୍ୱଜାତି ପର ହିଂସ୍ରକ ଅର୍ଥରେ, ଯେପରି କୁରାଢ଼ୀ ପ୍ରଭୃତିରେ ବେଣ୍ଟ ଲଗାଇବା ପାଇଁ ଅନ୍ୟ କାଠକୁ କଟା ଯାଇଥାଏ ।)

୧୧୭୭୨. ଜାତିର ବଟା (=କଳଙ୍କ) ଲଗାଇବା ।
(ଏଭଳି କାମ କରିବା ଯେଉଁଥିରେ ସମସ୍ତ ଜ୍ଞାତି କୁଟୁମ୍ବ ବଦନାମ ହୁଅନ୍ତି ।)

୧୧୭୭୩. ଜାତିରେ ନାହାକ, ମଳିକ, ମହାଳିକ
ଏମାନେ ହେଲେ ଜାତିର କଳଙ୍କ ।

୧୧୭୭୪. ଜାତିରେ ବେହେରା (=ପାଲିଙ୍କି ବାହକ) କାନ୍ଧରେ ଚଢ଼େ ।

୧୧୭୭୫. ଜାତି ସ୍ୱଭାବେ ମୁରୁଗୀ-ବାଇ,
ଏ ରୋଗର ଔଷଧ ନାହିଁ ।
(ଜନ୍ମରୁ ସ୍ୱଭାବଗତ ରୋଗକୁ ଭଲ କରିବାର ଔଷଧ ନାହିଁ । )

୧୧୭୭୬. ଜାତି ହରାଇଲେ କଟିବା ।
(ପୂର୍ବକାଳରେ ଜାତି ହରାଇଲେ ସମାଜରୁ ବାଛନ୍ଦ ହେବାର ପ୍ରଥା ଥିଲା । )

୧୧୭୭୭. ଜାତି ହରେଇ(ଲେ) ବୈଷ୍ଣବ ।

୧୧୭୭୮. ଜାତୀୟ ସାହିତ୍ୟ ଜାତୀୟ ଉନ୍ନତିର ପରିମାପକ । (ମଧୁସୂଦନ)

୧୧୭୭୯. ଜା-ଦାଉଳୀ ଆପଣାର ନଣଦ ମାଇ ପର
ଶାଶୁ ମାଇ ଗଲାପରେ ହବ ସ୍ୱତନ୍ତର ।

୧୧୭୮୦. ଜାଦୁ ଏପରି ଯାହା ମୁଣ୍ଡରେ ଚଢ଼ି କହେ ।
(ଗଭୀର ପ୍ରଭାବ ପକେଇବା ଏଭଳି ସଫଳ ଉପାୟ ଯେ, ବିରୋଧୀକୁ ବି ହାର ମନେଇ ଦିଏ । ଏହା ନିମ୍ନଲିଖିତ ପ୍ରବାଦରେ ବ୍ୟଞ୍ଜିତ ହୋଇଛି-)

୧୧୭୮୧. ଜାଦୁ(=ମ୍ୟାଜିକ), ଯିଏ ମୁଣ୍ଡରେ ଚଢ଼ି ବୋଲ କରେ ।
(ଯାହା ମଙ୍ଗଳକର ତାହା ସଫଳ ହୁଏ । ଏହା ବିରୋଧ କରୁଥିବା ବ୍ୟକ୍ତିଙ୍କୁ ମଧ ମାନିବାକୁ ପଡ଼ିଥାଏ।)

୧୧୭୮୨. *ସମାର୍ଥରେ* - ଉଲ୍ଲାସ କର୍କଶର ପରଦା ଖୋଲେ,
ଜାଦୁ ସିଏ, ଯେ ମୁଣ୍ଡରେ ଚଢ଼ି ବୋଲେ ।

୧୧୭୮୩. ଜାଦୁ ଚଢ଼ିବା/ଚାଲିବା ।
(ପ୍ରଭାବ ପଡ଼ିବା । ଯେପରି, ଯେଉଁଠି ବନ୍ଧୁକ ଚାଲେ ସେଠାରେ କୁହୁକ ଚଳେ ନାହିଁ ।)

୧୧୭୮୪. ଜାନ୍ ଅଛି ତ ଜାହାନ (=ସଂସାର) ଅଛି ।
(ବଞ୍ଚିଥିଲେ ବହୁତ କିଛି କରି ହୁଏ । ପ୍ରାଣରକ୍ଷା ସର୍ବୋପରି ।)

୧୧୭୮୫. ଜାନ୍‌କୁ କଦର କରିବା ।
(ଆଦର ମିଳିବା / ଜୀବନ ସାର୍ଥକ ହେବା ।)

୧୧୭୮୬. ଜାନ୍ ଖପେଇବା (=ଖଟେଇବା) ।
(ବହୁତ ଶ୍ରମ କରିବା । ଜୀବନ ଯିବା ପାଇଁ ପରବାଏ ନ କରିବା । କଷ୍ଟ ଉଠେଇବା । ବହୁତ ଚେଷ୍ଟା କରିବା ।)

୧୧୭୮୭. ଜାନ୍ ଖାଇବା ।
(ହଇରାଣ ବା ତଙ୍ଗ କରିବା ।)

୧୧୭୮୮. ଜାନ୍ ନା ପହଚାନ(=ପରିଚୟ),
ବଡ଼ ଅପା/ନାନୀ ପ୍ରଣାମ ।
(ପରିଚୟ ନ ଥାଇ କାହାରି ସହିତ ସମ୍ବନ୍ଧ ଯୋଡ଼ି ଆଳାପ କରିବା ।)

୧୧୭୮୯. ଜାନ୍(=ଜୀବନ) ପଛରେ ପଡ଼ିବା ।
(କୌଣସି ଲୋକର ଜନ୍ମରୁ ଶତ୍ରୁ ପଛରେ ପଡ଼ିବା । ଆଜନ୍ମ ଶତ୍ରୁ ।)

୧୧୭୯୦. ଜାନ୍(=ଜୀବନ) ବଞ୍ଚିଲେ ଲକ୍ଷେ ।
(କୌଣସି ପ୍ରକାରେ ଜୀବନ ରକ୍ଷାହେଲେ ତାହାହିଁ ଯଥେଷ୍ଟ ।)

୧୧୭୯୧. ଜାନ୍‌ର ବାଜି ହାରିବା ।
(ସାହସିକ କାମ କରିବା ପାଇଁ ପ୍ରାଣ ବଳି ଦେବା ।)

୧୧୭୯୨. ଜାନ୍ ଯାଉ ମହତ ଥାଉ
ମହତ ଗଲେ ନ ମିଳେ ଆଉ ।
(ଜୀବନରେ ସବୁ ମିଳେ, କିନ୍ତୁ ମାନ ମର୍ଯ୍ୟାଦା ନଷ୍ଟ ହେଲେ ଆଉ ମିଳେ ନାହିଁ ।)

୧୧୭୯୩. ଜାନ୍ ଯାଉ, ମାନ୍ ଥାଉ ।
(ଜୀବନ ପଣ କରି ନିଜର ସମ୍ମାନ ରକ୍ଷା କରିବା ।)

୧୧୭୯୪. ଜାନ୍(=ଜୀବନ) ଯାଉ, ମାଲ(=ଟଙ୍କା ପଇସା) ନ ଯାଉ ।

୧୧୭୯୫. *ଏକାର୍ଥରେ* - ଚମଡ଼ି(=ଚମଡ଼ା) ଯାଉ ଦାମଡ଼ି(=ପଇସା) ନ ଯାଉ ।
(କୃପଣ ପ୍ରତି ପ୍ରଯୁଜ୍ୟ ।)

୧୧୭୯୬. ଜାନ୍ ଲଢ଼େଇବା ।
(ମନ ପ୍ରାଣ ଦେଇ ପ୍ରଯତ୍ନ କରିବା/ବହୁ କଷ୍ଟ କରିବା /ପ୍ରାଣକୁ ପରବାଏ ନ କରିବା ।)

୧୧୭୯୭. ଜାନୁଆର ମଧରେ କାକ,
ମଣିଷ ମଧରେ ବାରିକ ।
(କୁଆ ଆଉ ଭଣ୍ଡାରି ଅତ୍ୟନ୍ତ ଧୂର୍ତ୍ତ ଅଟନ୍ତି ।)

୧୧୭୯୮. ଜାନୁଆର ହେବା ।
(ଅବିବେକୀ ଓ ଅଶିଷ୍ଟ ଅସଭ୍ୟ ହେବା । ଘୋର ପରିଶ୍ରମୀ ହେବା । ନିର୍ଘାତ ମୂର୍ଖ ହେବା ।)

୧୧୭୯୯. ଜାନୁ, ଭାନୁ କୃଷାନୁ (=ଅଗ୍ନି) ଶୀତରୁ ପରିତ୍ରାଣ ।
(ଛାତିରେ ଆଣ୍ଠୁ ଲଗେଇ ବସିଲେ, ଖରାରେ ବସିଲେ, ନିଆଁ ପୋହିଁଲେ ଶୀତରୁ ରକ୍ଷା ମିଳେ ।)

୧୧୮୦୦. ଜାବର କଟା । (=ଚର୍ବିତ ଚର୍ବଣ କରିବା)

୧୧୮୦୧. ଜାମକୁଣ୍ଡା ଯାଗ, ସାହବନ୍ଦର ଭୋଗ, ଲକ୍ଷ୍ମଣନାଥ ଛାଗ ।
(ଶାରଦୀୟ ଦୁର୍ଗାପୂଜାରେ ଜାମକୁଣ୍ଡାଗଡ଼ର ଯାଗଯଜ୍ଞ, ସାହାବନ୍ଦର ଗଡ଼ର ଭୋଗ ଓ ଲକ୍ଷ୍ମଣନାଥ ଗଡ଼ର ଛାଗବଳି ଦିନେ ପ୍ରସିଦ୍ଧି ଲାଭ କରିଥିଲା ବୋଲି ଏହି ପ୍ରବାଦରୁ ସୂଚିତ ହୁଏ ।)

(ବାଲିଆପାଳ ଥାନାର ଜାମକୁଣ୍ଡା ଗଡ଼ର ଭୂୟାଁବଂଶ ପ୍ରସିଦ୍ଧ ଜମିଦାର ଥିଲେ । ଏହି ବଂଶର କେହି ଜଣେ ଜମିଦାର ସୁବର୍ଣ୍ଣରେଖାର ପୂର୍ବତୀରରେ ଅବସ୍ଥିତ କୁମ୍ଭୀରଗଡ଼ିରେ ଥିବା ବିଶାଳ ଭୂଷଣ୍ଡେଶ୍ୱର ଶିବଲିଙ୍ଗ ସୁରକ୍ଷା କରିଥିବା ଜନଶ୍ରୁତିରୁ ଜଣାଯାଏ । ଶିବ ପୁରାଣରେ ବର୍ଣ୍ଣିତ ଅଛି, ତ୍ରେତା ଯୁଗରେ ରାବଣ କୈଳାସ ପର୍ବତରୁ ଶିବଙ୍କୁ ବହନ କରି ଆଣୁଥିବା ଅବସ୍ଥାରେ ସତ୍ୟଭଙ୍ଗ କରି ନଦୀତୀରସ୍ଥ ହେନ୍ତାଳ ବନ ମଧ୍ୟରେ ଉପବେଶନ କରନ୍ତେ ଭୂଷଣ୍ଡେଶ୍ୱରଙ୍କୁ ସେ ଆଉ ଲଙ୍କାକୁ ନେଇ ପାରି ନଥିଲା । ଏହି ଶିବଲିଙ୍ଗ ଅଧୁନା ଜନସାଧାରଣଙ୍କ ଉଦ୍‌ଯୋଗରେ ସେଠାରେ ପୂଜା ପାଇ ଆସୁଅଛନ୍ତି । ଭୂୟାଁ ବଂଶର ପୂର୍ବପୁରୁଷମାନେ ପ୍ରଥମେ ଅବଧାନୀ କାମ କରୁଥିଲେ । ତଦ୍‌ପରେ ସେମାନେ ଜମିଦାର ହେଲେ । ଏହି ଜାମକୁଣ୍ଡାର ଭୂୟାଁ ଜମିଦାରଙ୍କ ବଂଶଧରମାନେ ବାଣିଜ୍ୟତରୀ ଲୁଣ୍ଠନ କରି ଧନଶାଳୀ ହୋଇଥିବାର କଥିତ ଅଛି ।)

୧୧୮୦୨. ଜାମାତା ଦଶମ ଗ୍ରହଃ ।

୧୧୮୦୩. *ସଂସ୍କୃତରେ ସମ୍ପୂର୍ଣ୍ଣ ପଦ -*
ସଦା ବକ୍ରଃ ସଦା କ୍ରୂରଃ ସଦାମାନ ଧନାପହଃ
କନ୍ୟାରାଶିସ୍ଥିତୋ ନିତ୍ୟଂ ଜାମାତା ଦଶମୋଗ୍ରହଃ ।

୧୧୮୦୪. ଜାମାତା, ଭଣଜା, ଜନ ନୁହେଁ ଆପଣାର ।
ଜାନୁ, ଭାନୁ, କୃଶାନୁ (=ଅଗ୍ନି) ପରିତ୍ରାଣ ଶୀତର

୧୧୮୦୫. ଜାମିନ୍ ହୁଅନି ବାପର,
ଭଲ ଯେବେ ଚାହଁ ନିଜର ।
(ନିଜର ଯଦି ମଙ୍ଗଳ ଚାହଁ, ଆପଣାର ହେଲେ ମଧ୍ୟ କାହାରି ଜାମିନ ହେବା ଉଚିତ ନୁହେଁ ।)

୧୧୮୦୬. ଜାମିନ୍ ହୋଇଛି ଦବା ପାଇଁ
ଗଛରେ ଚଢ଼ିଛି ମରିବା ପାଇଁ ।
(ଜାମିନ୍ ହେଲେ ବେଳେ ବେଳେ ଯେମିତି ବନ୍ଧନରେ ପଡ଼ିବାକୁ ହୁଏ । ସେମିତି ଗଛରୁ ପଡ଼ି ଚଢ଼ାଳୀ ମରିବା ମଧ୍ୟ ବିରଳ ଘଟଣା ନୁହେଁ ।)

୧୧୮୦୭. *ଏକାର୍ଥରେ* - ହୁଅନି ଅମିନ, ଜାମିନ, ମଧ୍ୟସ୍ଥି
କହିଯାଇଛନ୍ତି ଋଷି ଅଗସ୍ତି ।।

୧୧୮୦୮. ଜାମୁ ଜଡ଼ାଙ୍ଗ କପା କାଠି, ଯାକୁ ନ କରିବ ଦାନ୍ତ କାଠି,
ଯେବେ କରିବ ବଳେ, ତେବେ ପକେଇ ତଳେ ।
(ଦାନ୍ତକାଠି ନିର୍ବାଚନ ସମ୍ବନ୍ଧରେ ଡାକଋଷି ବଚନ ।)

୧୧୮୦୯. ଜାମୁ ଜଜାଙ୍ଗ କପାଝାଟି, ଯାକୁ ନକର ଦାନ୍ତକାଠି
ଅପାମାରଙ୍ଗର ଅପାର ଗୁଣ,
ତହିଁରୁ ଘଷିବ ମୂଳେ
କୁମ୍ଭାଟୁଆ ଅଟେ ରାଜବଲ୍ଲଭ
ତହିଁରୁ ଘଷିବ ଫାଳେ,
ଚୁତପତ୍ରେ ଭବେ ଲକ୍ଷ୍ମୀ
ଯେବେ ପଡ଼ିଥିବ ତଳେ ।

୧୧୮୧୦. ଜାର-ଜାର ଅଶ୍ରୁ ବୁହାଇବା ।
(ଛାତି ପିଟି କାନ୍ଦିବା ।)

୧୧୮୧୧. ଜାରିଙ୍ଗର ଜାଇ, ଜଗତରେ ନାହିଁ ।
('ଜାରିଙ୍ଗ' ବୋଲି ଗୋଟିଏ ସ୍ଥାନର ଜାଇମୁଗ ଏଡ଼େ ମଧୁର ଯେ ପୃଥିବୀରେ ସେପରି ଉତ୍ପାଦନ ହୁଏନାହିଁ ବୋଲି କୁହାଯାଏ । )

୧୧୮୧୨. ଜାଳରେ ହୁଏ ନା କାଳରେ ହୁଏ ?
(ଚୂଲୀ ଉପରେ ଯେତେ ସମୟ ପାତ୍ର ରଖିଲେ ବି ବିନା ଜାଳରେ ରନ୍ଧା ହୋଇ ପାରେ ନାହିଁ । ପରିଶ୍ରମ କରି କାର୍ଯ୍ୟ କଲେ ସିଦ୍ଧିପ୍ରାପ୍ତ ହୁଏ । ଶୂନ୍ୟରୁ ସିଦ୍ଧିପ୍ରାପ୍ତ ହେବ ବୋଲି ଅପେକ୍ଷା କରି ବସିଲେ, ସିଦ୍ଧି ଆସେ ନାହିଁ । )

୧୧୮୧୩. ଜାହାଜ ପଛରେ ଲଙ୍ଗର ।

୧୧୮୧୪. ଜାହାଜ ପାଖରେ କେଉଟର ଡ଼ିଙ୍ଗୀ ।

୧୧୮୧୫. *ଏକାର୍ଥରେ* - ଆକାଶ ପାତାଳ ଫରକ ।

୧୧୮୧୬. ଜାହାଜ ବୁଡ଼େଇ, ଡ଼ଙ୍ଗା ଚଢ଼ା,
ଜିଲ୍‌ଫା (=ରାଗିଣୀ ବିଶେଷ) ଫୋପାଡ଼ି, ତାଳ ବଢ଼ା ।

୧୧୮୧୭. ଜାହାଜ ମାସ୍ତୁଲର ଭାର, କେଉଟର ଡ଼ିଙ୍ଗୀକି ସହିବ ।

୧୧୮୧୮. ଜାହାଜର କୁଆ, ଚଢ଼େଇ ହୋଇଯିବା ।
(ଏପରି ନିରାଶ୍ରିତ ଯେ, ଯାହାର କେବଳ ଏକମାତ୍ର ଆଶ୍ରୟ ଥାଏ । ଯେପରି- ଜାହାଜର ପକ୍ଷୀ ଉଡ଼ି ଉଡ଼ି ପୁଣି ଜାହାଜକୁ ପୁଣି ଫେରି ଆସେ, ସେହିପରି ମୋର ମନ ଈଶ୍ୱରଙ୍କ ବ୍ୟତୀତ ଅନ୍ୟତ୍ର କେଉଁଠି ସୁଖ ପାଏ ନାହିଁ ।)

୧୧୮୧୯. ଜାହାଜୀ ଗୁଆକୁ ଲୋ ଏ ଗୁଜୁରାତି
ବୋହୂଙ୍କ ପାନଖିଆ ବଡ଼ ଅନୀତି ।

ମହତା ପାନକୁ ଲୋ ଏ କଲି ଚୂନ
ବୋହୂଙ୍କ ପାନଖିଆ କଲା ଉଚ୍ଛନ୍ନ ।
ବୋହୂଙ୍କ ଚୁଁମରା* ଇଂଗ୍ରେଜୀ ନେଲା
ରୂପେଲୀ ପିକଦାନୀ ବଟୁଆ ଦେଲା ।
କଳା ଲୋ ଧଳା ଲୁଗା ଦେହକୁ ମୋଟା ।
ବାଛି ପିନ୍ଧିଲେ ବୋହୂ ବଙ୍ଗାଳୀ ଫେଟା ।
ବଙ୍ଗାଳୀ ଫେଟାକୁ ଲୋ ଏ ପାନଖିଆ
ଏକାଳ ବୋହୂଙ୍କୁ ଲୋ ମାନିଲା ଏହା ।
ଶାଶୂ ନଣନ୍ଦ ବୋହୂ ମାନିଲେ ନାହିଁ
କାନରେ ମଲ୍ଲୀଫୁଲ ଖୋଷନ୍ତି ନେଇ ।
ନାକେ ଦକ୍ଷିଣଦଣ୍ଡୀ ହାତରେ ବାଜୁ
ବୋହୂଙ୍କୁ ନ ପାରିଲେ ସାହେବ ବାବୁ ।
କାନରେ ଦୁଲ୍ ପୁଣି ହାତରେ ପୋଥି
ରଙ୍ଗେ ଲେଖିଲେ ଧରି କଲମ କାଠି ।

***ଚୁଁମରା** - *ପୂର୍ବେ ବୋହୂମାନେ ଶାଶୁ ବା ନଣନ୍ଦ ସାଙ୍ଗରେ କଥାବାର୍ତ୍ତା କରିବାର ଅଧିକାର ନଥିଲା ସେମାନେ 'ଚୁଁ ମାରି' ସମସ୍ତ କଥା ଠାରି ପ୍ରକାଶ କରୁଥିଲେ ।*

୧୧୮୨୦. ଜାହାଜୀ ଗୁଆ ସଙ୍ଗତେ ହରିଡ଼ା,
ଅଖା ହେବ ବନାରସୀ କପଡ଼ା ।
ଯୂଇ ପୁଷ୍ପ ସଙ୍ଗେ ମାଧବୀ ଫୁଲ,
ସମ କଲେ କି ହେବ ସମତୁଲ ।

୧୧୮୨୧. ଜାହାନ (=ପୃଥିବୀ) ଖୋଜିବା ।
(ସାରା ପୃଥିବୀ ଅର୍ଥାତ୍ ସବୁ ଯାଗାରେ ଖୋଜିବା ।)

୧୧୮୨୨. ଜାହାନମକୁ ଯିବା ।
(ନଷ୍ଟଭ୍ରଷ୍ଟ ହେବା)

୧୧୮୨୩. ଜାହାନମ୍‌ର ଘାଟରେ ପହଞ୍ଚାଇବା ।
(ପ୍ରାଣରେ ମାରିଦେବା ।)

୧୧୮୨୪. ଜାହାନମ୍ ନିଆଁରେ ଜଳିବା ।
(ଘୋର କଷ୍ଟ ହେବା । ମର୍ମାନ୍ତକ ପୀଡ଼ା ଭୋଗିବା ।)

୧୧୮୨୫. ଜାହାନମ୍ ନିଆଁରେ ଫିଙ୍ଗିଦେବା ।
(ମର୍ମାନ୍ତକ କଷ୍ଟ ଦେବା ।)

୧୧୮୨୬. ଜାଲ୍ ମଲିଆ (=ବାଚାଳ) କାଏଁ କୁଟୁମ୍(=ପରିବାର) ପୁଷେ (=ପୋଷେ) କଲା ମେଘେ କାଏଁ ପାଏନ୍ ବରଷେ । (ପଶ୍ଚିମ ଓଡ଼ିଶା)
(ଯେ ଗୁଡ଼ାଏ ବାହାଦୁରିଆ କଥା ବଖାଣେ ସେ ନିଜ କୁଟୁମ୍ବ ପୋଷିବାକୁ ଅକ୍ଷମ । ତୋଫାନ୍ ସହ ଗର୍ଜି ଆସୁଥିବା ମେଘ ବର୍ଷେ ନାହିଁ । )

୧୧୮୨୭. *ସମାର୍ଥରେ* - ଗରଜିଲା ମେଘ ବରଷେ ନାହିଁ
ଭୁକିଲା କୁକୁର କାମୁଡ଼େ ନାହିଁ ।

୧୧୮୨୮. ଜିଗର ଟୁକୁରା ଟୁକୁରା ହେବା ।
(ଦୁଃଖିତ ହେବା-ଶୋକ ବିହ୍ୱଳ ହେବା ।)

୧୧୮୨୯. ଜିଗରର (=କଲିଜା /ହୃଦୟ ) ଖୁନ୍ (କଲିଜାର ଦରଦ) ।

୧୧୮୩୦. ଜିଗରର ଖୁନ ପିଇବା ।
(କଷ୍ଟ ଭୋଗିବା, ମାରି ପକାଇବା ।)

୧୧୮୩୧. ଜିଗରୀ ଦୋସ୍ତ ।
(ଅଭିନ୍ନ ମିତ୍ର ।)

୧୧୮୩୨. ଜିଣିବା ହାରିବା ବୀରର ଧର୍ମ ।

୧୧୮୩୩. ଜିଣିବି ହାରିବି, ଜୁଆ ଖେଳିବି ।
(ଜୁଆ ଖେଳ ନିଶା, ମଦ ନିଶା, ମାଇକିନିଆ ନିଶା, ଶିକାର ନିଶାଠାରୁ ଅଧିକ । ଏପରିକି ମହାଭାରତରେ ଯୁଧିଷ୍ଠିରଙ୍କ ଭଳି ଧର୍ମରାଜ ମଧ ଜୁଆଖେଳ ନିଶାରେ ପଡ଼ି କେବଳ ଯେ ରାଜ୍ୟ ତା'ନୁହେଁ, ନିଜର ଧର୍ମପତ୍ନୀଙ୍କୁ ମଧ ହରେଇଥିଲେ ।)

୧୧୮୩୪. ଜିଣିଲା ଦେଶେ ଦଣ୍ଡେ ନ ରହି ।
(ପରାଜିତ ଦେଶରେ ପ୍ରତିଶୋଧଲିପ୍ସା ପ୍ରଜ୍ୱଳିତ ହେଉଥାଏ । ପଦେ ପଦେ ଜୀବନ ପ୍ରତି ଶଙ୍କା ଥାଏ । ତେଣୁ ସେ ଦେଶରେ ମୁହୂର୍ତ୍ତେ ରହିବା ଉଚିତ୍ ନୁହେଁ ।)

୧୧୮୩୫. ଜିତିଲେ ବି ଘରର ଭାତ, ହାରିଲେ ବି ଘରର ଭାତ ।
(ନିଜ ଘରର ଚଳଣି ସହିତ ହାରିବା ଜିତିବାର କୌଣସି ସମ୍ପର୍କ ନ ଥାଏ ।)

୧୧୮୩୬. ଜିନିଷ ହଜିଲେ କାଞ୍ଜିପାଣି ହାଣ୍ଡିକି ଅପତିଆରା ।
(ଜିନିଷ ହଜିଲେ ନାନା ଲୋକଙ୍କ ଉପରେ ସନ୍ଦେହ ହୁଏ । ଅତି ନିଜର ହୋଇ ଚଳୁଥିବା ଲୋକଙ୍କ ଉପରେ ବି ଅବିଶ୍ୱାସ ଆସେ ।)

୧୧୮୩୭. ଜିନ୍ଦେଗୀ ଗମେଇବା ।

(ଜୀବନକୁ ବ୍ୟର୍ଥ କାମରେ ଏବଂ ସୁଖ ସ୍ୱାଚ୍ଛନ୍ଦ୍ୟରେ ବିନଷ୍ଟ କରିବା ।)

୧୧୮୩୮. ଜିନ୍ଦେଗୀର ମୋଡ଼ ।

(ଏପରି ସ୍ଥିତି ବା କାର୍ଯ୍ୟ ଯାହାପାଇଁ ଜୀବନରେ ପରିବର୍ତ୍ତନ ଆସେ । ଅସାମ୍ୟ ବା ଅସାମଞ୍ଜସ୍ୟ ସ୍ଥିତି । ଜୀବନର କୌଣସି ମୂହୂର୍ତ୍ତ ।)

୧୧୮୩୯. ଜିନ୍ଦେଗୀର ସନ୍ଧ୍ୟା ।

(ଜର୍ଜର ବୃଦ୍ଧାବସ୍ଥା ।)

୧୧୮୪୦. ଜିଭ କଇଁଚି ପରି ଚାଲିବା ।

(ବଦ୍ କଥା କହିବା । ଅତିରିକ୍ତ କଥା କହିବା ।)

୧୧୮୪୧. ଜିଭ କଟିଯିବା/କାଟି ଦେବା ।

(ଅନୁଚିତ ବା ଅଶିଷ୍ଟ କଥା କହି ପସ୍ତେଇବା । ଯେପରି ଅନୁଚିତ କଥା କହି ତ ସାରିଛ, ଏବେ ଜିଭ କାଟି ଦିଅ ଆଉ ଯେପରି ଭୁଲ ନ ହୁଏ ।)

୧୧୮୪୨. ଜିଭ କାମୁଡ଼ି ପକାଇବା ।

(କୌଣସି ଅପ୍ରୀତିକର ବା ଅବାଞ୍ଛନୀୟ କଥା କହିବାକୁ ଯାଇ ନିଜକୁ ରୋକିନେବା ।)

୧୧୮୪୩. ଜିଭ କୁଣ୍ଡେଇବା ।

(କହିବାକୁ ଇଚ୍ଛା ହେବା/ବହୁତ ଖୁସାମତି କରିବା ।)

୧୧୮୪୪. ଜିଭ ଖସରି ଯିବା ।

(ଅପ୍ରିୟ କଥା ଅଜାଣତରେ ପାଟିରୁ ବାହାରିଯିବା । ଇଂରାଜୀରେ ଯାହାକୁ Slip of tongue କୁହାଯାଏ ।)

୧୧୮୪୫. ଜିଭ ଖୋଲି ।

(ସ୍ପଷ୍ଟ /ସଂକୋଚ ଛାଡ଼ି /ବେଧଡ଼କ ଅର୍ଥାତ୍ ନିର୍ଭୟରେ । ଏହା 'ମୁହଁ ଖୋଲିବା' ଭଳି ବ୍ୟବହୃତ ।)

୧୧୮୪୬. ଜିଭ ଖୋଲିବା ।

(କହିବାକୁ ଆରମ୍ଭ କରିବା/ମାଗିବା । ଏହା 'ମୁହଁ ଖୋଲିବା' ଭଳି ବ୍ୟବହୃତ ।)

୧୧୮୪୭. ଜିଭ ଚିକ୍କଣ ହେବା ।

(ମୃଦୁ ଭାଷୀ ହେବା/ ଚିକଣ କଥା କହିବା ।)

୧୧୮୪୮. ଜିଭ ତଳେ ଜିଭ ।

(ଦୁଇଟା କଥା କହିବା /ଦୁଇଟି ଅର୍ଥରେ କଥା କହିବା ।)

୧୧୮୪୯. ଜିଭ ଦାନ୍ତର ସମ୍ବନ୍ଧ ।
(ଏହି ମର୍ମରେ ବଙ୍ଗଦେଶରେ ଓଡ଼ିଆ ପ୍ରବାଦ ରଚୟିତା 'ଗୋପାଳ ଉଡ଼େ'ଙ୍କ ଦ୍ୱାରା ପ୍ରଣୀତ ପ୍ରବାଦଟି ହେଲା-

୧୧୮୫୦. ଶଂ ଅଶଂ ଯେପରି
ଦନ୍ତ ଜିହ୍ୱା ସେପରି ।
( ଜିହ୍ୱା ଜାଣେ ବେଦନା ଦନ୍ତ ଜାଣେନା ।)

୧୧୮୫୧. ଜିଭ ପୋଡ଼ିଲା ଆପଣା ଦୋଷେ,
କ'ଣ କରିବ ହରିହର ଦାସେ ।

୧୧୮୫୨. *ଏକାର୍ଥରେ* - ଆପଣା ହସ୍ତେ ଜିହ୍ୱା ଛେଦୀ,
କେ ଅଛି ତା'ର ପ୍ରତିବାଦୀ ।

୧୧୮୫୩. ଜିଭ ମୂଳେ କାଳ ଥାଇ,
ପ୍ରାଣୀ ତାହା ନ ଜାଣଇ । (ଜଗନ୍ନାଥ ଭାଗବତ)

୧୧୮୫୪. ଜିଭରେ ତାଲା ପକେଇବା ।
(କିଛି ନ କହି ଚୁପ୍ ଚାପ୍ ରହିବା ।)

୧୧୮୫୫. *ଏକାର୍ଥରେ* - ଜିଭରେଲଗାମ ଦେବା ।

୧୧୮୫୬. -*ଏଜନ*- ଜବାନରେ ଲଗାମ ଦେବା ।

୧୧୮୫୭. ଜିଭ ବଶରେ ରହିବା ।
(କହିବାରେ ସାବଧାନତା ଅବଲମ୍ବନ କରିବା । କାହା ପାଖରୁ କିଛି ନ ମାଗିବା ।)

୧୧୮୫୮. ଜିଭ ଲଡ଼ଖଡ଼େଇବା ।
(ଅସ୍ପଷ୍ଟ ଶବ୍ଦ କହିବା । ସତ୍ୟ ବା ମିଥ୍ୟା କହିବାକୁ ଥଙ୍ଗ ଥଙ୍ଗ ହେବା ।)

୧୧୮୫୯. ଜିଭ ସମ୍ଭାଳିବା ।
(ଶୁଣିଥିବା ଭେଦ କଥା କାହାକୁ ନ କହିବା । କଥା ପେଟରେ ରଖିବା ଅର୍ଥରେ ।)

୧୧୮୬୦. ଜିଭ ହଲେଇବା ।
(ଚିଡ଼େଇବା ।)

୧୧୮୬୧. ଜିଭ ଲଡ଼ ବଡ଼ ନାହିଁ ସତୀ
ଇନ୍ଦ୍ରି ଲଡ଼ ବଡ଼ ନାହିଁ ଯତି ।
(ଯେଉଁ ସ୍ତ୍ରୀର ଜିହ୍ୱା ଲାଳସା ଅଧିକ, କଥା କହିବାକୁ ପାଟି ଟାଉ ଟାଉ ହେଉଥାଏ,

ସେ ସ୍ତ୍ରୀ ସତୀ ହୋଇ ନ ପାରେ । ଯେ ଇନ୍ଦ୍ରିୟକୁ ଦମନ କରି ନାହିଁ, ସେ ଯତି ହୋଇପାରେ ନାହିଁ ।)

୧୧୮୬୨. ଜିଭ ଲୁଡ଼ୁବୁଡ଼ୁ ଛାଡ଼ିବି ନାହିଁ, ରାତିହଗା ଖଣ୍ଡି ଛାଡ଼ିବି ନାହିଁ ।
(ସ୍ୱାସ୍ଥ୍ୟ ପାଇଁ ଖାଦ୍ୟରେ ସଂଯମ ଆଚରଣ ଏକାନ୍ତ ଆବଶ୍ୟକ । ଅତ୍ୟଧିକ ଖାଦ୍ୟଲାଳସା ରୋଗର କାରଣ ।)

୧୧୮୬୩. ଜିସ୍ମ (=ଶରୀର) ବିକିବା ।
(ଟଙ୍କା ନେଇ ମୈଥୁନ ବା ସମ୍ଭୋଗ କରିବା ବା କରାଇବା ।)

୧୧୮୬୪. ଜିହ୍ୱାକୁ ପ୍ରଶ୍ରୟ ଦିଅ ନାହିଁ, ଜିହ୍ୱା କହେ ଆହୁରି ଖାଇ ।
(ମନୁଷ୍ୟର ପାଞ୍ଚଗୋଟି ଜ୍ଞାନେନ୍ଦ୍ରିୟ ମଧ୍ୟରୁ ଜିହ୍ୱା ଅନ୍ୟତମ । ଏହା ଖାଦ୍ୟ ଲାଳସାର ବଶବର୍ତ୍ତୀ । ଏହାକୁ ଦମନ ନ କରି ପ୍ରଶ୍ରୟ ଦେଲେ ମନୁଷ୍ୟକୁ ଅସହ୍ୟ ଦୁଃଖକଷ୍ଟ ଭୋଗ କରିବାକୁ ପଡ଼ିଥାଏ । ଏପରିକି ମରଣ ଯନ୍ତ୍ରଣାରେ ମଧ ପଡ଼ିପାରେ ।)

୧୧୮୬୫. ଜିହ୍ୱାରେ (=ଜିଭରେ) ସରସ୍ୱତୀ ।
(ବିଦ୍ୱାନ ହେବା ।)

୧୧୮୬୬. ଜିଲିପି ର ପେଞ୍ଚ ।

୧୧୮୬୭. *ଏକାର୍ଥରେ* - ଜିଲିପିର ଫେର ।
(ମାରପେଞ୍ଚ ନୀତି ଅବଲମ୍ବନ କରୁଥିବା ବ୍ୟକ୍ତି ପ୍ରତି ପ୍ରଯୁଜ୍ୟ ।)

୧୧୮୬୮. ଜୀଅନ୍ତା ମାଛରେ ପୋକ ପଡ଼ିବା ।
(ଚନ୍ଦ୍ରରେ କଳଙ୍କ ଭଳି ଉତ୍ତମ ଲୋକର ମଧ କିଛି ନା କିଛି ଦୋଷ ଦୁର୍ବଳତା ରହିଥାଏ । ଏହି ଅର୍ଥରେ ପ୍ରବାଦଟି ପ୍ରୟୋଗ ହୁଏ ।)

୧୧୮୬୯. ଜୀଅନ୍ତେ ଅଇଁଠା ଖାଇବି, ମଲେ କାନ୍ଧରେ ଯିବି ।

୧୧୮୭୦. ଜୀଅନ୍ତେ ନ ଦେଲୁ ତୁଣ୍ଡେ
ମଲେ ଦେବୁ ବେଣା ମୁଣ୍ଡେ ।
(ବୃଦ୍ଧର ଅଭିମାନ - ବଞ୍ଚିଥିଲାବେଳେ ଖାଇବାକୁ ଦେଲୁ ନାହିଁ । ମଲେ ମଶାଣିରେ ଦେଇ ଆସିବୁ । ବେଳିକିଆ ଦେବୁ ସତ, କିନ୍ତୁ ସେ ମୋର ଭୋଗରେ ଆସିବ ନାହିଁ । ଅପୂଜିତ ପ୍ରତିଭାଶାଳୀ ବ୍ୟକ୍ତିର ଉତ୍ତରାଧିକାରୀଙ୍କ ପାଖେ ସେଇ ଅଭିମାନ - ଶୁଖି ଶୁଖି ମଲି - ମଲପରେ ଶୋକସଭାରେ ଗୁଣକୀର୍ତ୍ତନ ହେବ । କିନ୍ତୁ ଏହା ମୋର କି ଉପକାରରେ ଲାଗିବ ?)

୧୧୮୭୧. ଜିଅନ୍ତେ ନଦେଲେ ତୁଡ଼ି (=ତୁଡ଼ିମାଛ)
ମଲେ ଦେବ ବେଣାଗଛ ମୋଡ଼ି ।

୧୧୮୭୨. ଜୀଅନ୍ତେ ନ ଦେଲେ ତାଳି, ମଲେ ଦେବ ଅଶ୍ରାବ୍ୟ ଗାଳି ।

୧୧୮୭୩. ଜୀଅନ୍ତେ ନ ଦେଲେ ଭାତ ଦୁନାଟା, ମଲେ ଦେବ କୀର୍ତ୍ତନପାଲାଟା ।

୧୧୮୭୪. ଜୀଇଁ ଥିବା ଯାଏଁ
କାଶିଆ କପିଳାର ଭେଟ ନାହିଁ ।

୧୧୮୭୫. ଜୀଇଁଥିଲେ ପରେ କଥାବାର୍ତ୍ତା ।

୧୧୮୭୬. ଜୀ କୁ (=ମନକୁ) ଜୀ (=ମନ) ବୁଝିବା ।
(ଅନ୍ୟର ଦୁଃଖ କଷ୍ଟ ବୁଝିବା । ଅନ୍ୟକୁ କଷ୍ଟ ନ ଦେବା ।)

୧୧୮୭୭. ଜୀ କୁ ଜେବରେ (=ପକେଟରେ) ରଖିବା ।
(ଯଥା ସ୍ଥିତିରେ ସନ୍ତୁଷ୍ଟ ରହିବା । ମନର ଲାଳସାକୁ ଦବେଇବା ।)

୧୧୮୭୮. ଜୀ କୁ ବିକିବା (= ମନକୁ ବିକିବା ) ।
(ସର୍ବସ୍ୱ ବରବାଦ କରିଦେବା ।)

୧୧୮୭୯. ଜୀ ଚୋରାଇବା ।
(କାମ କରିବା ପାଇଁ ଦୋ ଦୋ ପାଞ୍ଚ ହେବା /କୌଣସି କାମ ବା କଥାରୁ ବଞ୍ଚିବା ପାଇଁ ବାହାନା ଖୋଜିବା ।)

୧୧୮୮୦. ଜୀ ଛୋଟ କରିବା ।
(ହତୋତ୍ସାହ ହେବା / ମନ ଉଦାସ ହେବା । ଖର୍ଚ୍ଚ ପାଇଁ ସଂକୋଚ ହେବା ।)

୧୧୮୮୧. ଜୀ (=ମନ) ଜାନ (=ପ୍ରାଣ) ଏକ କରିବା ।
(ପୂର୍ଣ୍ଣଶକ୍ତି ବିନିଯୋଗ କରିବା/ବହୁତ କଷ୍ଟ କରିବା ।)

୧୧୮୮୨. ଜୀ ଜୀରେ ରହିବା(=ମନକୁ ମନରେ ରଖିବା) ।
(ମନୋରଥ ପୂର୍ଣ୍ଣ ହୋଇ ନ ପାରିବା /ମନର କଥା କହି ନ ପାରିବା ।)

୧୧୮୮୩. ଜୀର୍ଣ୍ଣେ କ୍ଷ୍ୱରେ ଗୁଡ଼ ପିପ୍‌ପଳୀ । (ବୈଦ୍ୟ କଳ୍ପଦ୍ରୁମ)

୧୧୮୮୪. ଜୀର୍ଣ୍ଣେ ମନୁଷ୍ୟ ଅଜୀର୍ଣ୍ଣେ ଗୋରୁ ।
(ଖାଦ୍ୟ ଜୀର୍ଣ୍ଣ ହେଉଥିଲେ ମନୁଷ୍ୟର, ଆକଣ୍ଠ ଭୋଜନ କଲେ ଗୋରୁଙ୍କର ସ୍ୱାସ୍ଥ୍ୟ ଭଲ ରହେ ।)

୧୧୮୮୫. ଜୀତା ଜାଗତା ।
(ପ୍ରତ୍ୟକ୍ଷ ସାକ୍ଷାତ ।)

୧୧୮୮୬. ଜୀତେ - ଜୀ ।

(ଜୀବିତାବସ୍ଥା । ଜୀବନ କାଳ ।)

୧୧୮୮୭. ଜୀତେ - ମରତେ ।

(ଅତ୍ୟନ୍ତ କଷ୍ଟ ସହି ସହି କଠିନ କାମଟି ପୂରା କରିବା )

୧୧୮୮୮. ଜୀ ତୋଡ଼ନା (=ଭାଙ୍ଗିବା) ।

(ସମ୍ବନ୍ଧ ବିଚ୍ଛେଦ କରିଦେବା । ସାହସ ତ୍ୟାଗ କରିବା/ମନର ଦୃଢ଼ତା ରଖି ନ ପାରିବା । କମ୍ ଉତ୍ସାହିତ ହେବା । ଯେପରି, ସାହସର ସହିତ କାମ କର, ଜୀବନରେ ତୁମକୁ ବହୁତ କିଛି କରିବାକୁ ହେବ ; 'ଜୀ ତୋଡ଼ନା' ଦରକାର ନାହିଁ ।)

୧୧୮୮୯. ଜୀ ଦୁଖାନା (=କଷ୍ଟଦେବା) ।

(ମାନସିକ କଷ୍ଟ ଦେବା /ମନକୁ କଷ୍ଟ ଦେବା)

୧୧୮୯୦. ଜୀ ଦୌଡ଼ିବା ।

(ଆକୃଷ୍ଟ ହେବା/ ଇଚ୍ଛା ହେବା । ଯେପରି ଛୋଟ ପିଲାମାନଙ୍କୁ ବଜାରକୁ ନେଇଗଲେ ପ୍ରତ୍ୟେକ ଲୋଭନୀୟ ପଦାର୍ଥ ପ୍ରତି ତା'ର ଜୀ (=ମନ) ଦୌଡ଼େ । ଏକାଗ୍ରତା ନ ଆସିବା । ପ୍ରକାର ପ୍ରକାର କଥାକୁ ଭାବିବା ବିଚାରିବା .- ଯେପରି ଯେଉଁଠି ଦଶ ପ୍ରକାର କଥା ହୁଏ ସେଠାରେ ଜୀ ଏପାଖ ସେପାଖ ଦୌଡ଼ିବ ହିଁ ଦୌଡ଼ିବ ।)

୧୧୮୯୧. ଜୀ(=ଛାତି) ଧକ୍ ଧକ୍ କରିବା ।

(ଛାତି ଧଡ଼କିବା ବା ଧଡ଼ଧଡ଼ କରିବା ।)

୧୧୮୯୨. ଜୀନା (=ବଞ୍ଚିବା) ହାରାମ ହେବା ।

(ଜୀବନ ବ୍ୟର୍ଥ ହେବା । ଜୀବନ ଦୁଃଖମୟ ହେବା ।)

୧୧୮୯୩. ଜୀନ୍ଦେଗୀକୁ ନଚେଇବା ।

(ନିଜମର୍ଜିରେ ଜୀବନ ବିତେଇବା । ମରଣକୁ ପରବାଏ ନ କରିବା ।)

୧୧୮୯୪. ଜୀବ ଅଛି, ଜୀବଥିବା ଯାଏ ଲୋଭ ଅଛି ।

୧୧୮୯୫. 'ଜୀବ' କହିଲେ ଲୋକ ନାହିଁ ।

(ଛିଙ୍କ ପଡ଼ିଲେ 'ଜୀବ' କହେ ଏପରି ସୁହୃଦ୍ ନାହିଁ ।)

୧୧୮୯୬. ଜୀବ ଗଲାବେଳେ ମାଟି ମୁଠା ମୁଠା କରୁଛି ।

୧୧୮୯୭. ଜୀବ ଜାତ କରିବାକୁ ଜନ୍ମିଛନ୍ତି ସ୍ତ୍ରୀରୀ ।

ବୁଝିଲେ ତାଙ୍କ ପରି କେ ନାହିଁ ଉପକାରୀ ।(ଜଗନ୍ନାଥ ଭାଗବତ)

୧୧୮୯୮. ଜୀବ ଥିଲାବେଳେ ମୁହିଁ ବଳିଆ
ଜୀବ ଗଲାବେଳେ ସାହା କାଳିଆ ।
(ଦେହରେ ବଳ ଥିବାବେଳେ ମଣିଷ ଇନ୍ଦ୍ର ଚନ୍ଦ୍ର ମାନେ ନାହିଁ । ପ୍ରାଣ ଗଲାବେଳେ ଈଶ୍ୱର ମନେ ପଡ଼ନ୍ତି । ସେ ବିକଳଭାବେ ଡାକେ ।)

୧୧୮୯୯. ଜୀବ ଦେଇଛନ୍ତି ଯିଏ, ଆହାର ଦେବେ ସିଏ ।
(ଈଶ୍ୱର ଜୀବ ଜଗତକୁ ସୃଷ୍ଟି କରିଛନ୍ତି ଏବଂ ସେମାନଙ୍କର ଜୀବନରକ୍ଷା ପାଇଁ ଆହାରର ମଧ ବ୍ୟବସ୍ଥା କରିଛନ୍ତି । ଏପରିକି ଅଜଗର ସାପ ଗତିହୀନ ହେଲେ ମଧ ତା' ମୁହଁ ପାଖକୁ ଅଧାର ଆପେ ଆପେ ଆସିଥାଏ )

୧୧୯୦୦. *ଏକାର୍ଥରେ* - ଜିଭ ପାଟି ଦେଇଛି ଯିଏ, ଆହାର ଦେବ ସିଏ ।

୧୧୯୦୧. ଜୀବନ ଅଛି
ଜୀବ ଥିବା ଯାଏ ଲୋଭ ଅଛି ।
(ଶେଷ ନିଃଶ୍ୱାସ ଯିବା ଯାଏ ମଣିଷର ଲୋଭ ଥାଏ ।)

୧୧୯୦୨. ଜୀବନ ଅଛି ଦେହ ମଧ୍ୟେ ।
ନିର୍ଲ୍ଲେପ ପରମ ଆନନ୍ଦେ । (ଜଗନ୍ନାଥ ଭାଗବତ)

୧୧୯୦୩. ଜୀବନ ଅପେକ୍ଷା ଜୀବିକା ପ୍ରିୟ ।
(ଜୀବିକା ଜୀବନ ଠାରୁ ପ୍ରିୟତର ଅଟେ ।)

୧୧୯୦୪. ଜୀବନ ଅନ୍ଧକାର ପୂର୍ଣ୍ଣ ହେବା ।
(ନିରାଶଜନକ ସ୍ଥିତି ଆସିବା ।)

୧୧୯୦୫. ଜୀବନକୁ କାହାର ଲୋଭ ନାହିଁ ?

୧୧୯୦୬. *ଏକାର୍ଥରେ* - ମରିବାକୁ ଦବାକୁ କେହି ଚାହାଁନ୍ତି ନାହିଁ ।

୧୧୯୦୭. ଜୀବନ ଘେନି ପଳାୟନ ।

୧୧୯୦୮. *ଏକାର୍ଥରେ* - ହିମ୍ମତ ହାରି ପଳେଇବା ।
-*ଏକନ*- ପ୍ରାଣ ବଞ୍ଚେଇ ପଳାୟନ ।

୧୧୯୦୯. ଜୀବନ ଥିଲେ ସବୁ ଅଛି ।
(ବଞ୍ଚି ରହିଥିଲେ ଧନ-ମାନ, ପୁତ୍ର-କନ୍ୟା ସବୁ ମିଳିବ ।)

୧୧୯୧୦. ଜୀବନ ଭାର ହେବା ।
(ଜୀବନରେ କୌଣସି ଆକର୍ଷଣ ନ ରହିବା । ଜୀବନ କଷ୍ଟମୟ ହେବା ।)

୧୧୯୧୧. ଜୀବନ ଯିବା ପରିଯନ୍ତେ,
ସ୍ତ୍ରୀରିଙ୍କି ନ ଯିବ ପରତେ । (ଦୀନକୃଷ୍ଣ : ରସବିନୋଦ)

୧୧୯୧୨. ଜୀବନ ଯୌବନ ଧନ ପଦ୍ମପତ୍ର ନୀର । (ମଧୁସୂଦନ - କବିତାବଳୀ)

୧୧୯୧୩. ଜୀବନ ଯୌବନ ଧନ,
ନ ରହଇ ଚିର ଦିନ ।

୧୧୯୧୪. ଜୀବନ ରହିଲେ ପ୍ରୀତି ରହେ ।

୧୧୯୧୫. ଜୀବନରେ ରଖି ଶତ୍ରୁକୁ ସାଧିବ, ଜମିକୁ ସାଧିବ କମଣରେ;
ମାଇପକୁ ସାଧିବ ପଲଙ୍କରେ;
ଅଭ୍ୟାସବଶରେ ବିଦ୍ୟାକୁ ସାଧିବ, ବିଷକୁ ସାଧିବ ମାରଣରେ ।

୧୧୯୧୬. ଜୀବନ୍ତେ ଏକୁ ଆର ସଖା ।
ମରଣେ ପରଲୋକେ ଦେଖା । (ଜଗନ୍ନାଥ ଭାଗବତ)

୧୧୯୧୭. ଜୀବଯାକରେ ନିରପେକ୍ଷ ଅଟନ୍ତି
ବ୍ରାହ୍ମଣ, ବାଘ, ବିରାଡ଼ି
ହାଡ଼ରୁ ମାଉଁସ ରେକେଟି ଖାଆନ୍ତି
କରଣ, କୁକୁର, ହାଡ଼ି ।

୧୧୯୧୮. ଜୀବ ଯିବାବେଳେ ମାଟି ମୁଠା ମୁଠା କରୁଛି ।
(ଶେଷ ପର୍ଯ୍ୟନ୍ତ ମଣିଷ ପୃଥିବୀର ମାୟାମମତା ଛାଡ଼ିପାରେ ନାହିଁ । )

୧୧୯୧୯. ଜୀବ ଯିବ ବାହାରି,
କେହି ନୁହେଁ କାହାରି । (ଜଗନ୍ନାଥ ଭାଗବତ)

୧୧୯୨୦. ଜୀବର ଦେହେ ବନ୍ଧ ପାଶ,
କେବେହେଁ ନାହିଁ ସୁଖ ଲେଶ । (ଜଗନ୍ନାଥ ଭାଗବତ)

୧୧୯୨୧. ଜୀବର ବନ୍ଧ ମୋକ୍ଷ ବେନି ।
ତୁ ନାଥ କରୁ ମାୟା ଘେନି । (ଜଗନ୍ନାଥ ଭାଗବତ)

୧୧୯୨୨. ଜୀବର ଭଲ ମନ୍ଦ ବାଣୀ ।
ମରଣ କାଳେ ତାହା ଜାଣି । (ଜଗନ୍ନାଥ ଭାଗବତ)

୧୧୯୨୩. ଜୀବରେ ଯାର ଦୟା ନାହିଁ
ଉଦ୍ଧବ ଚଣ୍ଡାଳଟି ସେହି । (ଜଗନ୍ନାଥ-ଭାଗବତ)

୧୧୯୨୪. ଜୀବରେ ହତ୍ୟା ମାଉଁସରେ କାରଣ ନାହିଁ ।
(ଅଳ୍ପ ଲାଭ ନିମନ୍ତେ ଗୁରୁତର ଅପରାଧ କରିବା )

୧୧୯୨୫. ଜୀବେ ଦୟା ନାମେ ଭକ୍ତି ।
(ବୈଷ୍ଣବ ଧର୍ମର ସାରମର୍ମ । ଈଶ୍ୱର ବିଶ୍ୱାସୀ ଲୋକର ଲକ୍ଷଣ ।)

୧୧୯୨୬. ଜୀ (=ଚିତ୍ତ) ଭଟକିବା ।
(ଚିତ୍ତ ଏକାଗ୍ର ନହେବା । କାହାରିକୁ ଦେଖିବା ବା ଦେଖା କରିବାର ଇଚ୍ଛା ହେବା ।)

୧୧୯୨୭. ଜୀ ର ଜଳନ ।
(ମନର ଦୁଃଖ ବା କଷ୍ଟ ।)

୧୧୯୨୮. ଜୀ ର (=ମନର) ବୋଝ ହାଲୁକା ହୋଇଯିବା ।
(ଚିନ୍ତା ଆଶଙ୍କା ଦୂର ହେବା ।)

୧୧୯୨୯. ଜୀରା ଫୁଟିଲେ ବାସ୍ନା ଆସିବା ।
(ଗୁପ୍ତ କଥା ଜଣାପଡ଼ିବା ।)

୧୧୯୩୦. ଜୀରାରୁ ଶିରା କାଢ଼ିବା ।
( ଖିନ୍ ଭିନ୍ କରି ବିଚାର କରିବା ।)

୧୧୯୩୧. ଜୀ ରେ(=ମନରେ) ତରଙ୍ଗ ଉଠିବା ।
(ଚିନ୍ତା ଉଦ୍ରେକ ହେବା । ମନରେ ନୂତନ ଭାବନା ଜାଗ୍ରତ ହେବା ।)

୧୧୯୩୨. ଜୀ ଲଗେଇ ଶ୍ୱାସ-ପ୍ରଶ୍ୱାସ ନେବା ।
(ସାର୍ଥକ ଜୀବନ ସ୍ୱସ୍ତିରେ ବିତେଇବା ।)

୧୧୯୩୩. ଜୁଆଇଁ ଅଇଲେ କମେଇ କରି ବସିବାକୁ ଦିଅ ପିଢ଼ା
ଜଳଖିଆ ଦିଅ ହେ ବାଢ଼ି ସରୁ ଧାନର ଚୁଡ଼ା ।

୧୧୯୩୪. ଜୁଆଇଁ/ଜୋଇଁଙ୍କ ନାକରେ କଳା,
ତାକୁ/ତୁମେ ଗୋଡ଼େଇ ଗୋଡ଼େଇ ଚଳା /ରାଇଜ ଛାଡ଼ି ପଳା ।
(ପରିହାସ କରିବା)

୧୧୯୩୫. *ଏକାର୍ଥରେ :* ତୋ ଭଉଣୀ ଆଖିରେ କଳା,
ମୋତେ ଭେଣେଇ ଭେଣେଇ ଚଳା ।

୧୧୯୩୬. ଜୁଆଇଁ ରକ୍ଷେ, ଆପଣାର ମୋକ୍ଷେ (=କ୍ଷତି) ।

୧୧୯୩୭. ଜୁଆଇଁ ଯମର ଭାଇ ।
(ଜୁଆଇଁ ଶ୍ୱଶୁର ଘର ଲୋକଙ୍କୁ କଷ୍ଟ ଦିଏ, ତେଣୁ ତାକୁ ଯମର ଭାଇ ବୋଲି କହନ୍ତି ।)

୧୧୯୩୮. ଜୁଆଇଁର ପାଇଁ ପିଠା ବନିଲା
ଜୁଆଇଁର ଭାଇ ଆସି ଖାଇଲା ।

୧୧୯୩୯. ଜୁଆଡ଼ି ନିଜେ ଲଗେଇଥିବା ବାଜିକୁ ଠିକ୍ ବୋଲି ଭାବେ ।
(ସ୍ୱାର୍ଥପର ବ୍ୟକ୍ତି କେବଳ ନିଜରହିଁ ସ୍ୱାର୍ଥ ସିଦ୍ଧି ଚାହେଁ ।)

୧୧୯୪୦. ଜୁଆ, ନାରୀ, ଚୋରୀ
ନାଶେ ପୁରୁଷର ଶିରୀ ।
(ଅକାର୍ଯ୍ୟ କଲେ ବା ଚରିତ୍ର ହରାଇଲେ ପୁରୁଷର କଳଙ୍କିତ ହୋଇ ହତଶ୍ରୀ ହୁଏ ।)

୧୧୯୪୧. ଜୁଆଳିକୁ କାନ୍ଧରୁ ଓହ୍ଲାଇଦେବା ।
(ପରାଧୀନତାରୁ ମୁକ୍ତ ହେବା । କୌଣସି ଅଦରକାରୀ ଦାୟିତ୍ୱରୁ ମୁକ୍ତି ପାଇବା ।)

୧୧୯୪୨. ଜୁଆ,ଶକଟା (= ପଶାଖେଳ), ପାରାରଙ୍ଗ
ପଶା, ନ୍ୟାୟବଳ (=ସତରଞ୍ଜ ଖେଳ), ବେଶ୍ୟାସଙ୍ଗ
ଏ ଷଡ଼ରସରେ ଯେଉଁ ପୁଅ ଥାଏ
ଭୋକେ ମରି ଟାକରା(=ମୁଣ୍ଡରେ ବିଧା) ଖାଏ ।

୧୧୯୪୩. ଜୁଆଣ ଦେଖ୍ କଲି ଘଇତା ସେ ହଗେ ରକ୍ତ ।

୧୧୯୪୪. ଜୁଇ/ଜୋଇ ଗାତ/ଗାଡ଼କୁ ପେଲିଦେବା ।
(ଅନ୍ୟ ଲୋକକୁ ବିପଦ ମୁଖରେ ପେଲି ଦେବା )

୧୧୯୪୫. ଜୁଇ ଗାତକୁ ପେଲିଦେବା ।
(ଘୋର ବିପଦ ମୁଖକୁ ଠେଲିଦେବା ।)

୧୧୯୪୬. ଜୁଠା (=ଅଇଁଠା) ହାତରେ କୁତ୍ତାକୁ ବି ନ ମାରିବା ।
(ଅତ୍ୟଧିକ କଞ୍ଜୁସ ହେବା ।)

୧୧୯୪୭. ଜୁମା ଜୁମା ଆଠଦିନ ।
(ବହୁତ କମ୍ ଦିନ ବିତିବା ବା ବିତେଇବା । ଜୀବନ ଅଳ୍ପଦିନ ପାଇଁ ।)

୧୧୯୪୮. ଜୁଳଜୁଳିଆ ଗାଣ୍ଡିରେ ଆଲ
ବରବାବୁ ତୁମେ ଗୀତଟେ ବୋଲ
ତାହା ଯଦି କରି ନପାର
ଭଉଣୀ ଆଣି ହାଜର କର
ତା'ବି ଯେବେ କରି ନପାର
ମୋ ଭଉଣୀର ଗୋଡ଼ ଧର ।

୧୧୯୪୯. ଜୁଲମର ଫଳ କେବେ ଫଳେନି
କାଗଜ ଡ଼ଙ୍ଗା କେବେ ଚାଲେନି ।
(କାଗଜ ଡ଼ଙ୍ଗା ଜଳରେ ପଡ଼ିବାର ଅଳ୍ପକ୍ଷଣ ପରେ ଯେପରି ନଷ୍ଟ ହୋଇଯାଏ ସେହିପରି ଅତ୍ୟାଚାରର ଫଳ ମଧ ଅଚିରେ ଅକାମୀ ହୋଇଯାଏ ।)

୧୧୯୫୦. ଜେନ୍‌ତା(=ଯେପରି) ଗୁରୁକେ ସେନ୍‌ତା(=ସେପରି) ଚେଲା
ହଏଡ଼ା(=ହରିଡ଼ା) ମାଗ୍‌ଲେ ବେହେଡ଼ା(=ବାହାଡ଼ା) ଦେଲା । (ପଶ୍ଚିମ ଓଡ଼ିଶା)
(ଯେମିତି ଗୁରୁକୁ ସେମିତି ଶିଷ୍ୟ । ଗୁରୁ ଜିନିଷଟିଏ ମାଗିଲେ ଶିଷ୍ୟ ଅନ୍ୟ ଏକ ଜିନିଷ ଦିଏ ।)

୧୧୯୫୧. ଜେନ୍ ରାଣ୍ଡୀର୍ ସେ ଦୁଖ୍
ଘଇତା କରା କାଏଁ (=କି)ସୁଖ୍ ? (ପଶ୍ଚିମ ଓଡ଼ିଶା)
(ଗୋଟିଏ ଜଟିଳ ସମସ୍ୟାରୁ ଉଦ୍ଧାର ପାଇବା ପାଇଁ ଚେଷ୍ଟା କରି ପୁଣି ସେଥିରେ ପଡ଼ିବା । )

୧୧୯୫୨. ଜେନା, ଖାଏ କାଞ୍ଜିପାଣି, ହଗଇ ଛେନା ।

୧୧୯୫୩. ଜୋଇଁ ଆଦର କରିବା, ବା ଜୋଇଁ ପରି ଆଦର କରିବା ।
(ସବଳ ଦୁର୍ବଳ ଉପରେ ପ୍ରଭାବ ବିସ୍ତାର କଲେ ତାହା ଦୁର୍ବଳକୁ କୌଣସି ସଙ୍କଟର ସମ୍ମୁଖୀନ କରାଇ ପାରେ ନାହିଁ ।)

୧୧୯୫୪. ଜୋଇଁ ଆସନ୍ତି କମେଇ (=ରୋଜଗାର କରି),
ଛତି (= ଛତା) ଧର ନୁଆଇଁ ।

୧୧୯୫୫. ଜୋଇଁ ଆସିଲେ କମେଇ (=ରୋଜଗାର) କରି,
ବସିବାକୁ ଦିଅ ପିଢ଼ା
ବାଢ଼ିଦିଅ ଜଳଖିଆ,
ସରୁ ଧାନର ଚୁଡ଼ା ।

୧୧୯୫୬. ଜୋଇଁକି ଦେଖିଲି ବାଟରେ
ଲାଜ ଉପୁଜିଲା ହାଟରେ ।
(କ୍ରିୟା ସଙ୍ଗେ ସଙ୍ଗେ ପ୍ରତିକ୍ରିୟା ନ ଉପୁଜିବା ପ୍ରତି ବ୍ୟଙ୍ଗ । ଲାଜର କାରଣ ଦୂର ହେବାର ବହୁ ସମୟ ପରେ ଲାଜମାଡ଼ିବା ହାସ୍ୟକର ।)

୧୧୯୫୭. ଜୋଇଁଙ୍କ କୁଞ୍ଚର ବଡ଼ ଫେର,
ଦି' କଉଡ଼ି ସୂତାର ଫେର ।

୧୧୯୫୮. ଜୋଇଁଙ୍କ ପାଇଁ ମରେ ହଂସ,
ଗୋଷ୍ଠୀ ସାରା ଖାଆନ୍ତି ମାଂସ ।

୧୧୯୫୯. ଜୋଇଁଙ୍କ ମରଦ ପଣିଆ,
ଝିଅ ଖୋଷାରୁ ପଡ଼େ ଜଣା ।

୧୧୯୬୦. ଜୋଇଙ୍କର ଭାଇ ମେଖ (= କୀଳା) ଶ୍ରେଷ୍ଠ ।

୧୧୯୬୧. ଜୋଇଁଙ୍କୁ ଯାଚିଲେ ପଣସ ନ ଖାଆନ୍ତି,
ଅଇଁଠା କୁଡ଼ରୁ ବୋଡି (= ମୁଗ, ବିରିର ଚୋପା) ଗୋଟେଇ ଖାଆନ୍ତି ।
(ଲାଜକୁଳା ଜୁଆଇଁଙ୍କୁ ବ୍ୟଙ୍ଗ କରାଯାଇଛି ।)

୧୧୯୬୨. ଜୋଇଁ ଡାକରା ଭାରି ମଜା
ଛ'ତିଅଣକୁ ନ ଭଜା ।
(ଜୋଇଁଙ୍କୁ ଭଲମନ୍ଦରେ ଡକାଗଲେ ତାଙ୍କ ସମ୍ମାନରେ ଛ'ପ୍ରକାର ତରକାରୀ ନ'ପ୍ରକାର ଭଜା କରାହୁଏ ।)

୧୧୯୬୩. ଜୋଇଁ ନେଲେ ଯେ, ବାଘ/ଯମ ନେଲେ ସେ ।
(ଥରେ ବିବାହିତା କନ୍ୟା ଶାଶୂଘରକୁ ଗଲେ ବାପଘରକୁ ନ ଫେରିବା ପ୍ରତି କଟାକ୍ଷ । କ୍ଷତ୍ରିୟ କୁଳରେ ଏହା ପ୍ରଚଳିତ । ଅନ୍ୟ କୁଳରେ ଯିବା ଆସିବା ପ୍ରତି ସେତେ କଟକଣା ନ ଥାଏ)

୧୧୯୬୪. ଜୋଇଁ ପୁଅ ଅଇଲେ ଘରେ,
ଭାତ ନାହିଁ ହାଣ୍ଡିରେ ।
(ଜୋଇଁ ପୁଅକୁ ପରିହାସ ।)

୧୧୯୬୫. ଜୋଇଁ ବାଙ୍କ କି ନଈ ବାଙ୍କ ।

୧୧୯୬୬. ଜୋଇଁ ହାରାମଖୋର, ଆଉ ବିରାଡ଼ି ହାରାମଖୋର ।

୧୧୯୬୭. ଜୋକ ପରି ଲାଗି ରହିବା ।
(ସାଙ୍ଗରେ ଅନବରତ ଲାଗି ରହିବା । ରକ୍ତ ଚୋଷିବା ।)

୧୧୯୬୮. ଜୋକ ମୁହଁରେ ଲୁଣ । (ନ୍ୟାୟ)
(ମୁହଁରେ ଲୁଣ ଦେଲେ ଦେହରେ ଲାଗିଥିବା ଜୋକ ଛାଡ଼ିଯାଏ । ସେହିପରି ଶୋଷକ ବା ଶତ୍ରୁର ମୁହଁ ବନ୍ଦ କରିବାଲାଗି ବ୍ୟବସ୍ଥା ଗ୍ରହଣ କରାଯାଇପାରେ । )

୧୧୯୬୯. ଜୋତା ଉପରେ ଭାତ ବାଢ଼ିବା ।
(ଅତ୍ୟନ୍ତ ଘୃଣା ସହିତ କାହାକୁ କିଛି ଦେବା । ହତାଦର କରିବା ।)

୧୧୯୭୦. ଜୋତା ଖିଆ ମଣିଷ ।
(ଯିଏ ମାଡ଼ ନ ଖାଇଲେ କାମ କରେ ନାହିଁ ।)

୧୧୯୭୧. ଜୋତା ଘୋଷରି ଯିବା ।
(ଅତ୍ୟଧିକ ଯିବା ଆସିବା କରିବା । ଚାଲୁ ଚାଲୁ ଥକିଯିବା । ଯେପରି ଚାକିରୀ ପାଇଁ ଦୌଡ଼ି ଦୌଡ଼ି ଜୋତା ଘୋଷରି ଗଲାଣି ।)

୧୧୯୭୨. ଜୋତା ଚାଟିବା ।
(ଖୋସାମତ କରିବା ।)

୧୧୯୭୩. ଜୋତା ତଳେ ।
(ପରାଧୀନ ରହିବା ।)

୧୧୯୭୪. ଜୋତା ତଳେ ପଡ଼ିରହିବା ।
(ଅପମାନିତ ଜୀବନ ବିତେଇବା । ଅନାଦୃତ ହୋଇବି ଆଶ୍ରିତ ହୋଇ ରହିବା ।)

୧୧୯୭୫. ଜୋତା ଦବେଇ ଭାଗିବା ।
(ଚୁପଚାପ ପଳେଇଯିବା ।)

୧୧୯୭୬. ଜୋତା ପଡ଼ିବା ।
(ଜୋତାରେ ମାଡ଼ ଖାଇବା । ମୁହଁତୋଡ଼ ଜବାବ ମିଳିବା । ଲୋକସାନ ହେବା । କୌଣସି ଭଲ କାମରୁ ଖରାପ ଫଳ ମିଳିବା । ବହୁତ ଅପମାନିତ ହେବା ।)

୧୧୯୭୭. ଜୋତା ପଡ଼ିଯିବା ।
(କୁରାଢ଼ି ବା କଟୁରୀର ଦାଢ଼ କାଠ, ପଥର ବା ଲୁହାରେ ବାଜି ଦନ୍ତରା ହୋଇଯିବା ।)

୧୧୯୭୮. ଜୋର (=ଧନ) ଗଲେ ଶେଥା ପଡ଼େ,
ଜୋର (=ଧନ) ଆସିଲେ ତେଜ ବଢ଼େ ।
(ଯାହା ପାଖରେ ଧନ ନାହିଁ, ସିଏ ଶୁଖିଯାଏ, ଧନ ଥିଲେ ତାର ତେଜ ବଢ଼ିଯାଏ ।)

୧୧୯୭୯. ଜୋର(=ଧନ), ଜନାନା(=ସ୍ତ୍ରୀ) ଜମିନ(=ଜମି),
ଝଗଡ଼ାର ମୂଳ କାରଣ ।
(ଟଙ୍କା ପଇସା, ସ୍ତ୍ରୀ ଏବଂ ଜମିଜମା ଏହି ତିନିଙ୍କ ପାଇଁ ଝଗଡ଼ାଝାଟି ହୋଇଥାଏ ।)

୧୧୯୮୦. ଜୋର ଜବରଦସ୍ତି ଚଳେଇବା ।
(ଅଧିକାର ସାବ୍ୟସ୍ତ କରିବା ।)

୧୧୯୮୧. ଜୋର (=ଧନ) ଜାହିଲ (=ନଷ୍ଟ )କରିବା ।
ଜିଇଁ ଥାଉଁ ଥାଉଁ ମରିବା ।
(ନିଜର ଧନ ସମ୍ପତ୍ତି ନଷ୍ଟ କରୁଥିବା ବ୍ୟକ୍ତି ଜୀବିତାବସ୍ଥାରେ ମୃତ ପ୍ରାୟ ହୋଇଯାଏ ।)

୧୧୯୮୨. ଜୋର(=ଧନ), ଜୋରୁ(=ସ୍ତ୍ରୀ) ଜମିନ ଜୋରର(=ବଳବାନ)
ନୁହଁନ୍ତି ଆଉ କାହାର ।
(ଧନ, ସ୍ତ୍ରୀ ଓ ଜମି-ଜମା ବଳବାନ ମଣିଷର କରଗତ ହୋଇଥାଏ । ନିର୍ବଳ ପାଖରେ ଏମାନେ ରୁହନ୍ତି ନାହିଁ ।)

୧୧୯୮୩. ଜୋର(=ଧନ)ର ଜୋର (=ଶକ୍ତି) ପୂରା,
ଆଉ ସବୁ ଅଧୁରା ।
(ଧନରେ ଅଧିକ ଶକ୍ତି ନିହିତ । ତେଣୁ ତା ବଳରେ ବହୁତ କାର୍ଯ୍ୟ ସାଧିତ ହୁଏ ।)

୧୧୯୮୪. ଜୋର(=ଧନ) ଥିଲେ ଘର,
ନଥିଲେ ଖଣ୍ଡହର(=ଭଙ୍ଗାଘର) ।
(ଯାହା ପାଖରେ ଧନ ନାହିଁ, ସେ ସୁଖପୂର୍ଣ୍ଣ ଜୀବନ ଭୋଗକରି ପାରେ ନାହିଁ ।)

୧୧୯୮୫. ଜୋର(=ଧନ) ଥିଲେ ନର(=ମଣିଷ),
ନଥିଲେ ବେକାର ।
(ଯାହା ପାଖରେ ଧନ ଥାଏ, ତାକୁ ସମସ୍ତେ ଆଦର କରନ୍ତି । ଯାହା ପାଖରେ ଧନ ନାହିଁ, ତାକୁ 'ବେକାରିଆ' କହନ୍ତି ଏବଂ କେହି ପଚାରନ୍ତି ନାହିଁ ।)

୧୧୯୮୬. ଜୋର ଯାର ମୁଲକ ତାର ।
(ଦୈହିକ ଶକ୍ତିରେ ଜଣେ ରାଜା ଅନ୍ୟ ରାଜାଙ୍କ ରାଜ୍ୟ ଅଧିକାର କରୁଥିଲା । ଗଣତନ୍ତ୍ରରେ ଏ ନୀତି ଅଚଳ । ମାତ୍ର ଗୁଣ୍ଡାଗିରି କରି ଲୋକଙ୍କୁ ଜବରଦସ୍ତ ଶାସନ କରିବା ଗଣତନ୍ତ୍ରର ଡାଙ୍କୁଣି ଭିତରେ ଚାଲିଛି ।)

୧୧୯୮୭. ଜୋରୁ(= ଭାର୍ଯ୍ୟା) , ଗୋରୁ; ଆପେ ଜଗିଲେ ଭଲ ।

୧୧୯୮୮. ଜୋରୁ, ଗୋରୁ, ଧାନ
ଏ ତିନି ନଜର ଗୁଜୁରାଣ ।
(ନିଜ ସ୍ତ୍ରୀ, ଗାଈ ବଳଦ ଧାନ କ୍ଷେତ ଉପରେ ସର୍ବଦା ନଜର ରଖିବ ।)

୧୧୯୮୯. ଜୋରୁ (=ପତ୍ନୀ) ଚିକିଣିଆ,
ମିଆଁ (=ପତି) ଖଣ୍ଡିଆ ।
(ପତ୍ନୀ ସୁନ୍ଦର ଅଟେ, ମାତ୍ର ପତି ନିର୍ଦ୍ଧନ ଓ କୁରୂପ । ପତି ପତ୍ନୀଙ୍କ ମଧରେ ଏଭଳି ବୈଷମ୍ୟ ଦେଖାଦେଲେ ଏହା କୁହାଯାଇଥାଏ ।)

୧୧୯୯୦. ଜୋରୁ ଜନ୍ତା ।
(ଗୃହସ୍ଥିର ଚରଖା । ସ୍ତ୍ରୀର ଫାନ୍ଦ ।)

୧୧୯୯୧. ଜୋରୁ ନା ଜନ୍ତା,
ଆଲ୍ଲା ମିଆଁ ସହ ନାତା(=ସମ୍ବନ୍ଧ) ।
(ଅବିବାହିତ ଜୀବନ ଯାପନ କରିବା ।)

୧୧୯୯୨. ଜୋରୁ (=ସ୍ତ୍ରୀ) ଲୋଡ଼େ ଧନ,
ମା' ଚାହେ ସୁସ୍ଥ ନନ୍ଦନ ।
(ମା' ପୁଅର ସ୍ୱାସ୍ଥ୍ୟ ଚାହୁଁଥିଲା ବେଳେ, ପୁଅର ପତ୍ନୀ ତା'ଠାରୁ ଧନ ଲୋଡ଼େ ।)

୧୧୯୯୩. ଜ୍ୟେଷ୍ଠ ଭରସାରେ ପେଟ ।
(କେହି ଧନହୀନ ହେଲେ, ତା'ର ଓ ତା'ର ପତ୍ନୀର ଭରଣ ପୋଷଣ ତା'ର ବଡ଼ଭାଇ କରୁଥିଲେ ଏଭଳି କୁହାଯାଏ ।)

୧୧୯୯୪. ଜ୍ୟେଷ୍ଠ ମାସେ ଆମ୍ବ ପଣସ
ଆଷାଢ଼ ମାସେ ଇଲିଶି
ଭାଦ୍ରବ ମାସେ ତାଳ ସଜ
ପୂଜାରେ କୁଟୁମ୍ବ ପାଳିସି
ମାର୍ଗଶୀରେ ଶାଳ ଦୋଶାଲା
ପୌଷେ ଗୋଡ଼ର ନାଗରୀ
ଫଗୁଣ ମାସେ ଦୋଳର ତତ୍ତ୍ୱ
ପିଚକାରୀ ଆଉ ପଗଡ଼ି ।

୧୧୯୯୫. ଜ୍ୟୋତି ଘଟିବା ।
(ପ୍ରତିଷ୍ଠାରେ ଉଣାହେବା ।)

୧୧୯୯୬.   ଜ୍ୟୋତିଷ କହେ ଗ୍ରହ ଅବଳ,
ବୈଦ୍ୟ କହେ ରୋଗ ପ୍ରବଳ,
ଗୁଣିଆଁ କହେ ନସାଣି (=ଭୟପାଇବା)
ପଙ୍ଗିଆ (=ଅଯଥା ଗପିବା) କହେ ମଶାଣି ।

୧୧୯୯୭.   ଜ୍ୟୋତିଷ ବୋଲେ ଗ୍ରହର ପୀଡ଼ା
ବଇଦ ବତାଏ ରୋଗର ପୀଡ଼ା ।
(ରୋଗୀ ଜ୍ୟୋତିଷ ପାଖକୁ ଗଲେ ଗ୍ରହ ପୀଡ଼ା ବୋଲି କହେ, କିନ୍ତୁ ବୈଦ୍ୟ ପାଖକୁ ଗଲେ ବେମାର ହୋଇଛି ବୋଲି କୁହେ ।)

୧୧୯୯୮.   ଜ୍ୱର ପରେ ଜରା ।
(ବରାବର ଜର ହେଲେ ଯୌବନାବସ୍ଥାରେ ମଣିଷ ବୃଦ୍ଧ ହୋଇଯାଏ ।)

୧୧୯୯୯.   ଜ୍ୱଳନ୍ତକୁ ଜଳେଇବା ।
(ଦୁଃଖୀକୁ ଅଧିକ ଦୁଃଖ ଦେବା ।)

୧୨୦୦୦.   ଜ୍ୱାଇଁ କେବେ ପୁଅ ହୁଏ ନାହିଁ,
ବୋହୂ କେବେ ଝିଅ ହୁଏ ନାହିଁ ।

୧୨୦୦୧.   ଜ୍ୱାଳା ଦେବାକୁ ନାହିଁ ଠାଁଇ,
ଜ୍ୱାଳା ଦିଏ ସଉତୁଣୀର ଭାଇ ।

୧୨୦୦୨.   ଜ୍ୱାଳାମୁଖୀର ମୁହଁରେ ଠିଆ ହେବା ।
(ବିକଟ ଏବଂ ସଙ୍କଟପୂର୍ଣ୍ଣ ସ୍ଥିତିରେ ପଡ଼ିବା ।)



# -କିନ୍ଦିରି ଗୀତ-

୧୨୦୦୩. ଜୁହାର କମଲା ଜୁହାର ବିମଲା,
ଜୁହାର ମାଁ ଠାକୁରାଣୀ,
ହାତେ ବୀନା ପୋଥିଧରି ସରସତି,
ପଦଦିଆ ଗନି ଗନି
ମାଲକାନଗରି ମାତା ମାଉଲି
ତୋର ପାଦକେ ଆସର କଲି । (୧)

ଗାଁ ଦେବି ମାତା ନିଶାନୀ ମୁଣ୍ଡାଗୋ,
ତୁଲସି ଚଉଁରା ଘର
ଦେବୀ ଦେବତାର ଗୀତ ଗାଇବିଯେ,
ସବୁତିରେ ସାହାକର
ଦେବତା ଗୁଡ଼ିନେ ବିଚିଲି ଲିଆ
ଗନି ଗନି ପଦ ଦିଆ । (୨)

ଆମ କୋରାପୁଟ ଡଙ୍ଗର ପାହାର,
ବୁଲି ଦେକୁ କେତେ ଝୋଲା ଝୀଙ୍କର
ଦେବୀ ଦେବତା ଆସନ
ଜଗନ୍ନାଥ ମାଫୁ ବିଚି ହୋଇ ଥାଚେ, ସବୁତି ତାର ଭିଆନ
ମଜୁରୁ ବୁଲିଆ ସବୁ ଜାନୁଚେ,
ନଜାଣିଲା ପରି ଆଚେ । (୩)

ତୁମା ଦେବତାର ନାମ କେ ଗନି ପାର୍‌ସି
ଆଚଦ୍ କେତେ ନାମଧାରୀ
ମିନାଝୋଲା, ମାଛକୁଣ୍ଡ, ଗୁପ୍ତେଶର,
ଝାଡ଼େଶ୍ୱରଦେବଗିରି

ଭଣ୍ଡାର ଘରଣୀ ଡଙ୍ଗରଦେଇ
ଭଲ ପଦ ଦିଆ କଇ । (୪)

(ନବରଙ୍ଗପୁର, କୋଟପାଡ଼, ବରିଗୁମ୍ମା, ଜୟପୁର, ବୈପାରୀଗୁଡ଼ା, ନନ୍ଦପୁର, ଲମତାପୁଟ, ସିମିଳିଗୁଡ଼ା, ପଟାଙ୍ଗୀ ଓ କୋରାପୁଟ ଅଞ୍ଚଳରେ (କିନ୍ଦିରି ଗୀତ) ଚଳେ । ଏହି ଗୀତଗୁଡ଼ିକର ଭାଷା ଦେଶିଆ ଭାଷା । ତେଣୁ ସବୁ ଆଦିବାସୀ ଓ ଅଣଆଦିବାସୀ ଏ ଗୀତକୁ ବୁଝିପାରନ୍ତି । ବହୁ ପୂର୍ବକାଳରୁ ରାଜରାଜୁଡ଼ା ଅମଳରୁ ଏହି ଗୀତ ପ୍ରଚଳିତ ହୋଇଆସୁଛି । )

## -ମଙ୍ଗଳା ସ୍ତୁତି-

୧୨୦୦୪. ଜୟତୁ ଦୁର୍ଗା ମାଗୋ ଜୟତୁ ଇନ୍ଦ୍ରାୟଣୀ
ଜୟତୁ ଦୁର୍ଗା ମାଗୋ ଜୟତୁ ବ୍ରହ୍ମାୟଣୀ ।
ଜୟତୁ ଦୁର୍ଗା ମାଗୋ ଜୟତୁ ସିଂହବାହିନୀ
ଜୟତୁ ଦୁର୍ଗା ମାଗୋ ମଂଷାସୁର ମର୍ଦ୍ଦିନୀ ।
ଜୟତୁ ଦୁର୍ଗା ମାଗୋ ନାମ ତୋ ବରୁଣାଇଂ
ଜୟତୁ ଦୁର୍ଗା ମାଗୋ ନାମ ତୋ କରୁଣାଇଂ ।
ଜୟତୁ ଦୁର୍ଗା ମାଗୋ ନାମ ତୋ ହାଡ଼ବାଈ
ଜୟତୁ ଦୁର୍ଗା ମାଗୋ ନାମ ତୋ ବଇଦେହୀ ।
ଜୟତୁ ଦୁର୍ଗା ମାଗୋ ନାମ ତୋ ବିମଳାଇ ।
ଜୟତୁ ଦୁର୍ଗା ମାଗୋ ଜୟତୁ ବରାହୀ ।
ଜୟତୁ ଦୁର୍ଗା ମାଗୋ ଦକ୍ଷିଣ କାଳିକା
ଜୟତୁ ଦୁର୍ଗା ମାଗୋ ବଂଝ ଯେ ମାଳିକା ।
ଜୟତୁ ଦୁର୍ଗା ମାଗୋ ସିଦ୍ଧ ଅଙ୍ଗ ଗୋଟି
ଜନ୍ମ ହୋଇଲୁ ମାଗୋ ଦୁର୍ଗାର ଲଲାଟ ପାଟୀ ।
ଜୟତୁ ମଙ୍ଗଳା ମାଗୋ ଜୟତୁ ଭଦ୍ରକାଳୀ
ଜୟତୁ ମଙ୍ଗଳା ମାଗୋ ହର ଯେ ଗଉରୀ ।
ଏମନ୍ତେ ଶଏ ଅଷ୍ଟୋତ୍ତର ନାମ ଯେ ତୋହର
ଠାବେ ଠାବେ ରହିଲୁ ମାଗୋ ପାଇଣ ପୂଜାବର ।

୧୨୦୦୫. ଜୟତୁ ଜୟତୁ ଜଗତମାତ
ଜାନକୀ ଦେବୀ ଋଷି ଘରେ ଜାତ
ପାର୍ବତୀ ରୂପେ ଶଙ୍କର ଘରଣୀ
ଯାଗରୁ ଜାତ ନାମ ଯାଜ୍ଞସେନି
ଦ୍ରୁପଦ ଝିଅ ବୋଲାଉ ଗୋ
ଦୁଃଶାସନ ହସ୍ତେ କେଶ ମେଲାଉ ।
ରଙ୍ଗ ଜାମୁଡାଳି ରଙ୍ଗଣି ମାଳ
ରଙ୍ଗ ସିନ୍ଦୂର ତୋ ଶୋହେ କପାଳ
ରଙ୍ଗ ଶଙ୍ଖବାହି ହସ୍ତକୁ ଶୋଭା
ରଙ୍ଗ ପତନୀ କଟୀ ମଧେ ଆଭା
ରଙ୍ଗ ଖପର ତୋ କରେ ଅଭୟା ।
ଅଷ୍ଟ ଦିନରେ ତୋ ପଡ଼ଇ ବ୍ରତ
ମଙ୍ଗଳା ବୋଲି ପୂଜନ୍ତି ଜଗତ
ଆତଙ୍କ କାଳେ ତୁହି ରକ୍ଷା କରୁ
ସଙ୍କଟ ପଡ଼ିଲେ ପ୍ରାଣୀଙ୍କୁ ଉଦ୍ଧାରୁ
ଜୟ ଜୟ ଅଭୟା ମାଗୋ ଭଗବତୀ
ଯେ ସେବା କରଇ ତୋ ଫେଡୁ ତୁ ଦୁର୍ଗତି

୧୨୦୦୬. ମାଗୋ ଜୟ ଜୟ ଭଗବତୀ
ଜପନ୍ତି ତୋ ନାମ କମଳାପତି
ଜ୍ଞାନ ଅନଳରୁ ହୋଇଲୁ ଜାତ
ଦନୁଜ ନାଶି ରଖିଲୁ ଜଗତ ।
ଜଗତ ମାତା ଜଗତେ ବିଦିତା
ଜଗତ ଜନନୀ ନାମ ବିଖ୍ୟାତା ।
ଜଗତଯାକରେ ତୁହି କରତା
ଜଗତବାସୀଙ୍କୁ ରଖ ଆଦିମାତା ।

୧୨୦୦୭. ଜାଗୋ ମାଈ କାଳିକା ଜଗାଓ ମାଈ କାଳିକା
ହସ୍ତେ ଶୋହେ ଖଣ୍ଡାଖପର ଗଳେ ମୁଣ୍ଡମାଳିକା
କଲିକତାରେ ଗଙ୍ଗାତୀରେ ନାମ ବୋଲାଓ କାଲୀ
ବଳିପୂଜା ସବରୋଜ ପାଓ ପୂଜା କରେ ବଙ୍ଗାଳୀ
ବାଣପୁରେ ଭଗବତୀ ବିରାଜେ ବାଙ୍କିରେ ଚର୍ଚ୍ଚିକା
ସମ୍ବଲପୁରେ ସମଲାଇ ଆଦିମ ପୁରେ ଭୋକା
ଝଙ୍କଡ଼େ ଶାରଳା ନାମ ଯାଜପୁରେ ବିରଜାଇ
ପ୍ରାଚୀ କିନାରେ କାକଟପୁରେ ମଙ୍ଗଳା ମହାମାଈ
ଜଗନ୍ନାଥଜୀକେ ଧାମ ପରେ ବିଖ୍ୟାତ ବିମଳା
ନାମ ଭଜୋ ଜନକ ପୂଜୋ କବ ନାହିଁ କର ହେଳା ।

## -ସ୍ତୁତି ପଦମାଳ-

୧୨୦୦୮. ଜଗନ୍ନାଥ ଜଗତକରତା, ଜଗମୋହନ
ଗିରିଧାରୀ ଗୋବର୍ଦ୍ଧନ ଗୋପୀଙ୍କର ଜୀବନ ।

୧୨୦୦୯. ଜଗନ୍ନାଥଯେ ଦାରୁବ୍ରହ୍ମ ସ୍ୱରୂପଧାରୀ
ହୃଦୟେ ଛୋଟ ବାହୁମୋଟ ଭାଟ ନୟନକାରୀ ।

୧୨୦୧୦. ଜଗନ୍ନାଥ ସ୍ୱାମୀ ଯେ ନୀଳଗିରି ବାସୀ
ଶ୍ୟାମସୁନ୍ଦର ବିମ୍ବାଧର ମନ୍ଦମଧୁର ହାସି ।

୧୨୦୧୧. ଜୟତୁ ପତିତ ପାବନ ବଳୀଦ୍ୱାରେବାମନ
କେଶବ କଂସାରି ରାମ କୃଷ୍ଣ ମଧୁସୂଦନ ।

## -କାନ୍ଦଣା-

୧୨୦୧୨. ଜନମ କରମ ରହୁଛି ଛାଡ଼ି
ସରଗର ତରା ଯୋଡ଼ିକି ଯୋଡ଼ି ।
ସରଗର ତରା କେ ଗଣିପାରେ ।
ପିତାମାତା ଛାଡ଼ି କେ ରହିପାରେ ।

୧୨୦୧୩. ଜନମ କୋଠରେ ଜନ୍ମ ଯାତରା
ମୁଁ ଛାଡ଼ି ଯାଉଛି ଗୋପି ମଥୁରା
ଭଗାରି କୋଠାରେ ହେବି ନାକରା ।
ଜନମ କୋଠରେ ମାଛି ବସିବ
ଭଗାରି କୋଠାତ ପୁରି ଉଠିବ ।

୧୨୦୧୪. ଜନମ ଘରେ ମୋ ନାହିଁ ମରଣ
ମୁହଁ ପୋଡ଼ୁ ମୋର ଝିଅ ଜନମ ।

୧୨୦୧୫. ଜନ୍ମ କରିଥିଲୁ ଝିଅ କାହିଁକି, ଲୋ ବୋଉ
ଦୟାମାୟା ଟିକେ ତୋର ନାହିଁକି, ଲୋ ବୋଉ
ଏତେ କଲବଲ କରୁ କିପାଇଁ, ଲୋ ବୋଉ
ଶତ୍ରୁ ବୋଲି ଅବା ଦେଲୁ ଭସାଇ, ଲୋ ବୋଉ
ଆଜି ଠାରୁ ସ୍ନେହ ସବୁ ସରିଲା, ଲୋ ବୋଉ
ତୋ ମୁଣ୍ଡରୁ ସବୁ ଜଞ୍ଜାଳ ଗଲା, ଲୋ ବୋଉ ।

୧୨୦୧୬. ଜର୍ମାନୀ ଜାପାନୀ ସତ୍ୟ କରିଥିଲେ
ରାଜାମାରି ପ୍ରଜା ପାଳିବେ ବୋଲି
ତୁମେ ସେହିପରି ସତ୍ୟ କରିଥିଲ
ମୋତେ ମାରି ବନ୍ଧୁ ବାନ୍ଧିବେ ବୋଲି ।
ଭାଇ କହୁଥିଲେ ଇଟାରେତ ଘର ଟାଇଲ ଛପର
ବେଲିଙ୍ଗି ବୁଣାଟ କୋରଟ ଗଣ୍ଡି
ମୁଁ ଦେଖି ଆସିଲି ମାଟିକାନ୍ଥ ଘର
ଛଣରେ ଛପର-କୁଟାର ଗଣ୍ଡି ।

୧୨୦୧୭. ଜରା ଶବରକୁ ଧରି ଆଣିଲେ,
ତାକୁ ଝାଡ଼ ଜଙ୍ଗଲରୁ ଆଣି କି ସୁଖ ପାଇଲେ ।
ସପ୍ତଋଷି ଯେବେ କରିଥାଆନ୍ତେ,
ଶଙ୍ଖଚକ୍ର ଚିହ୍ନ ସିନା ପାଇ ଥାଆନ୍ତେ ।

୧୨୦୧୮. ଜଳନ୍ତା ନିଆଁକୁ ଜୀଅନ୍ତା ମାଛ
ସମସ୍ତେ କରିଲ ନଦୀକୁ ଝାସ

ମୋତେ ଝାସିବାକୁ ଅଗ୍ନି ଜଳିଲା
ପୂରନ୍ତା ନଈତ ପୂରୁ ନ ଥିଲା
ମୋତେ ଝାସିବାକୁ ନଈ ପୂରିଲା ।

୧୨୦୧୯. ଜଳନ୍ତା ନିଆଁରେ ଦେଲୁ ଯା ଝାସି
କେରି କେରି ଝୋଟ ଗଳାକୁ ଫାଶି
ଜଳନ୍ତା ନିଆଁ ଯେ ଜଳୁ ନଥିଲା
ମୋତେ ଝାସିବାକୁ ଜଳି ଉଠିଲା ।

୧୨୦୨୦. ଜାକି ଧରିବେ ସେ ମୋହର ଶିରୀ
ଗୁଆକାତି ଗୁଆ ଜାକିଲା ପରି ।

୧୨୦୨୧. ଜାଣି ନଥିଲ କି ଦୋବେହୀ ବର
ତଳେ ବସାଦହି ଉପରେ ସର ।

୧୨୦୨୨. ଜାତିରେ ଶବର ବଣରେ ଘର
ସିଆଳି ଲଟାରେ ଛପର ତାର ।
ଶବର ସଙ୍ଗରେ ସାମିଲ କଲ
ଦାନ ଦେଇକରି କି ପୁଣ୍ୟ କଲେ ।
ଯାହା ଘରେ ନାହିଁ ଖଣ୍ଡିଆ କୋଡ଼ି
ତାହା ଘରେ ଦେଲ ସୁବର୍ଣ୍ଣ ଚୁଡ଼ି ।

୧୨୦୨୩. ଜାତିରେ ଶବର ବିକନ୍ତି କେନ୍ଦୁ
ତାଙ୍କ ସଙ୍ଗତରେ ବାନ୍ଧିଲେ ବନ୍ଧୁ ।

୧୨୦୨୪. ଜୀଇଲା ଗଛକୁ କାଠି ଦେଉଚୁ, ଲୋ ବୋଉ
ବଞ୍ଚିଥିଲା ଜୀବ ମାରି ଦେଉଚୁ, ଲୋ ବୋଉ
ଜନମ ବେଳେ ଅନ୍ତୁଡ଼ିଶାଳରୁ, ଲୋ ବୋଉ
ତଣ୍ଟିକାଟି ଯାହା ମାରି ନଦେଲୁ, ଲୋ ବୋଉ ।

୧୨୦୨୫. ଜୀଇଁଲେ ରହିବି ଯମର ଘରେ
ମଲେ ତ ରହିବି ବସୁଧା ତଳେ ।

୧୨୦୨୬. ଜେମାଦେଇ ଯିବେ ଶାଶୂ ଘରକୁ ଲୋ
ମାଗୁଛନ୍ତି ଅଳିକରି
ଭାର ମୋର ସବୁ ଦେବ ଯତନେ ଲୋ
ବୋଉ, କହୁଛି ଚରଣ ଧରି ।

ଶାଶୁ ବୁଢ଼ୀ ପାଇଁ ଯେଉଁ ଲୁଗା ଦେବ ଲୋ
ଥିବ ରଣପୁର ଧଡ଼ି
ନଇଲେ ତ ସିଏ ଝାଡ଼ି ଥୋଇବ ଲୋ
ବସିଛି ମାଙ୍କଡ଼ି ବୁଢ଼ୀ ।
ଶଶୁର ପାଇଁକି ଯେଉଁ ଲୁଗା ଦେବ ଲୋ
କଳା ପାହାଡ଼ିଆ ଛେଦା
ତ୍ାଇଁକି ଅନାଇ ମର୍ଯ୍ୟାଦା ନ ଦେଲେ
(ମୋ) ଗଳାରେ ବସିବ ଖୁନ୍ଦା ।
ନଣନ୍ଦ ପାଇଁକି ଯେଉଁ ଲୁଗା ଦେବ ଲୋ
ଦକ୍ଷିଣ କୁମ୍ଭଟି ଥିବ
ମୁଦିଟିଏ ତାହା ସଙ୍ଗରେ ନ ଦେଲେ
(ସେ) ଦୁଆର ଜଗି ବସିବ ।
ଦିଅର ପାଇଁକି ଯେଉଁ ଲୁଗା ଦେବ ଲୋ
ରଙ୍ଗ ଚହ ଚହ ଥିବ
ନଇଲେ ସେ ମୋତେ ଥଟା କରିବ ଲୋ
ବାଟ ଚଲାଇ ନ ଦେବ ।
ବାରିକାଣୀ ପାଇଁ ଯେଉଁ ଲୁଗା ଦେବ ଲୋ
ଥିବ ବାରହାତ ଲମ୍ୱ
ବାରକଥା ନଇଲେ ସେ କହିବ ଲୋ
ଗାଆଁ ଯାକ ଦେଖାଇବ ।

୧୨୦୨୭. ଜୋଇଁ କରିଥିଲ କୋହ୍ଲ ଖଡ଼ିଆ (=ଆଦିବାସୀ)
ବନ୍ଧୁ ଆଣିଥିଲା କୁହା ନଡ଼ିଆ ।
କୋହ୍ଲ ଖଡ଼ିଆର ବନସ୍ତେ ଘର
ସେ କିସ ଜାଣିବ ବନ୍ଧୁ ବେଭାର ।
ମାଣେ ଚାଉଳକୁ ଡାଲାରେ ଦେବେ
କଂସାଏ କଂସାଏ ଭାତ ଗେଫିବେ ।

୧୨୦୨୮. ତ୍ାଇଁ କରିଅଛ ମାଙ୍କଡ଼ଛୁଆ,
ବାରି ପଛଆଡ଼େ ଗଞ୍ଜେଇ ପୁଆ ।

ମାଙ୍କଡ଼ା ସାଙ୍ଗରେ ଦେଲ ଖଞ୍ଜେଇ
ବାଡ଼ି ପଛଆଡ଼େ ଡେଙ୍ଗା ଗଞ୍ଜେଇ ।
ବାଡ଼ି ଗେଞ୍ଜିଦେଲ ଭାଡ଼ି ତଳକୁ,
ମୋତେ ପେଲିଦେଲ ଯମପୁରକୁ ।
କ୍ୱାଇଁ କରିଅଛ ଡେଲା ଆଖିଆ,
ବାରି ପଛଆଡ଼େ କଦଳୀ ପୁଆ ।
ଜହର ମହୁରା ନ ଦେଲ ତୁଣ୍ଡେ
ପେଲି ଦେଲ ଯମ ନରକ କୁଣ୍ଡେ ।
ଚନ୍ଦ୍ରମାବଦନୀ ଭାଉଜ ରାଣୀ,
ତୁମ ସରି ଆଉ ନେତ୍ର ଦେଖିନି ।
ଆଉ କେ ଡାକିବ କନକଲତା,
କାହା ସଙ୍ଗେ ହେବି ଗୁପତ କଥା ।
ତମ ଠରାଠରି ଗୁପତ ବାଣୀ
ଝୁରି ମରୁଥିବି ମରମ ହାଣି ।
କଇଁଶି କାକୁଡ଼ି ମୁଣ୍ଡଟି ପିତା,
କିଆଁ ଖଞ୍ଜି ଦେଲ ମୋ ମୁଣ୍ଡେ ଚିତା ।
ଜଳ ଛାଡ଼ି ମୀନ ମରିବ ଶୁଖେ,
ତୁମକୁ ମୁରୁଛି ମରିବି ଦୁଃଖେ ।
ଝିଅ ଡାକ ଆଝୁ ସପନ ହେବ,
ବନସ୍ତେ କପୋତି ଝୁରି ମରିବ ।
ଜୁଳୁଜୁଳା ପୋକ ଦେଖି ଭୁଲିଲ,
ଚନ୍ଦ୍ର ସୂର୍ଯ୍ୟ କୋଉ ଦେଖିନଥିଲ ।
ଜାଣୁ ଜାଣୁ ଦେଲ ଦୂର ଦେଶକୁ
କାହିଁକି କ'ଣ ପାଇଁ କଲ ଏମନ୍ତ ।
ଝିଆରୀର ଅଳି ଆଉ ନ ଶୁଣିବ
ଏବେ ଯମପୁର ଛାଡ଼ି ଅଚିନ୍ତା ହେବ ।
ଝିଅ ନାଁ ଆଜି ଠୁଁ ଲୋପ ହୋଇବ
କେତେ ଖଜାପିଠା ବାସି ହୋଇବ ।

## -ମାଇପି ଛଟା-

୧୨୦୨୯. ଛଳାଙ୍ଗ ଭାଙ୍ଗିଲି ଦାନ୍ତକାଠି କଲି
କିଏ କେତେ ମନ ମୋହିଲା,
ଛତରା ସାଙ୍ଗରେ ପୀରତି କଲି
ଛିଣ୍ଡେଇ ବଚନ କହିଲା ।
(ପ୍ରୀତି ଭଙ୍ଗରେ ସ୍ତ୍ରୀର ଅନୁଶୋଚନା ।)
୧୨୦୩୦. ଜଳାଙ୍ଗ (=ବଣୁଆ ଗଛ) ଭାଙ୍ଗିଲି ଦାନ୍ତକାଠି କଲି
ସବୁ ଦାନ୍ତକାଠି ମୋହର
ଏଇ ବାଟେ ଯାଉ କଥା ତୁ ନ କହୁ
ଛାତି ଫାଟି ଯାଉ ତୋହର ।
୧୨୦୩୧. ଜର କଲେ ହାତୀ ମଲା
ପରର ପୀରତି ଅଢ଼େଇ ଦିନିଆ
ମୁହଁ ମୋଡ଼ିଦେଲେ ଗଲା ।
୧୨୦୩୨. ଜର କଲେ ହାତୀ ମଲା
ଭାଉଜ ପୀରତି ଅଢ଼େଇ ଦିନ ଲୋ
ଭାରିଯା ଅଇଲେ ଗଲା ।
୧୨୦୩୩. ଜଳାବାଟ ବାଟେ ଯାଉଥିଲି ମୁଁ ଗଳି
ପଧାନର ଝିଅ ଧଇଲା ହସ୍ତ ଭିଡ଼ି ।
ହସ୍ତ ଭିଡ଼ିନେଇ ପଲଙ୍କେ କଲା ଠିଆ
କିସ ଦେଖୁଅଛୁ ଝଲମଲିଆ
ଖାଇବୁ ମନପୁଆ ।
୧୨୦୩୪. ଜହ୍ନଟି ପାଖରେ ଏକ ଗୋଟି ତରା
ଘଇତାକୁ ଦେଲୁ ସବୁ ଚକୁଳି
ଦିଅର ଖାଉ ବରା ।
୧୨୦୩୫. ଜହ୍ନୀ ଫୁଲ ଫୁଟିଲା
ଗେହ୍ଲେଇ ନାନୀ ଗାଧୋଇ ଯାଇ ବାପ ଘରେ ଉଠିଲା ।
('ଗେହ୍ଲେଇ' ପ୍ରତି ପରିହାସ । ଗାଧୋଇବାକୁ ଯାଇ ବାପଘରେ ଅଟକି ଗଲା ।
ସଞ୍ଜ ଗଡ଼ିଗଲାରୁ ଆଉ ଫେରିଲା ନାହିଁ ।)

୧୨୦୩୬. ଜାଆ ଜେଉଳାରେ ଘର ଜାଇଫୁଲ
ଜାଆ ଜେଉଳାରେ ଘର
କି ଥାଇ କରିବେ ଶାଶୁ ଶଶୁର
ବସିଥାନ୍ତୁ ମୋର ବର ।
ଲୋ ଖରା ମଉଜ ବେଳେ
ରଥ ଦଉଡ଼ି ପଡ଼ିଛି ତଳେ ଲୋ, ଖରା ମଉଜ ବେଳେ ।

୧୨୦୩୭. ଜାଆ ଜେଉଳାରେ ଘର ଚମ୍ପାକଢ଼ୀ
ଜାଆ ଜେଉଳାରେ ଘର
ଶାଶୁ ଥାଉ ଥାଉ ନଣନ୍ଦ ଗଞ୍ଜିଲା
ମରିଗଲିଟି ଏଥର ଲୋ ।
ନ ଯା' ଲବଙ୍ଗଲତା
ଫେରି ଆସିଲେ କଥାବାରତା ଲୋ, ନ ଯା' ଲବଙ୍ଗଲତା ।

୧୨୦୩୮. ଜାଆଜେଉଳାର ଘର
ଶାଶୂ ଥାଉଁ ଥାଉଁ ନଣନ୍ଦ ଗଞ୍ଜିଲା, ମଲିଟି ଏଥର ।
(ନଣନ୍ଦ ଉତ୍‌ପୀଡ଼ିତା ବଧୂର ଖେଦୋକ୍ତି । ନଣନ୍ଦର ଉପ୍ରୋଧ ନ ଥାଏ । ଶାଶୂର ଉଦାସୀନତାର ସୁଯୋଗ ସେ ନିଏ । )

୧୨୦୩୯. ଜାଆଜେଉଳାର ଘର
କି ଥାଇ କରିବେ ଶାଶୂ ଶଶୁର, ବଞ୍ଚନ୍ତୁ ମୋହର ବର ।
( ବୋହୂର ସ୍ୱାର୍ଥପର ଭାବ । ସେ ସ୍ୱାମୀଙ୍କୁ ଘେନି ଘର କରିବା ଚିନ୍ତା କରେ । ଶାଶୂ ଶଶୁରଙ୍କର ହାନିଲାଭ ବୁଝେନାହିଁ । )

୧୨୦୪୦. ଜାଉ ନଥିଲାକୁ ପେଜରେ,
ଜାଉ ନଥିଲାକୁ ପେଜ
କେହି ନଥିଲାକୁ ତୋ ହାତ ଧରିଲି,
ମୋ ମୁହଁକୁ ନାହିଁ ଲାଜ ।

୧୨୦୪୧. ଜାଣି ନଥିଲି ମୁଁ ଛଣପଟ ଗୁଣ
ଫୁଲ ବାଜୁଥେଲା ରଣ ଝଣ
ପଡ଼ିଲି ଧାଇଁ,
ସୁଆଦ ଶବଦ ଟିକିଏ ନାହିଁ ।
(ରୂପ ପ୍ରତି ଆକୃଷ୍ଟ ହୋଇ କିଛି ଗୁଣ ନଦେଖି ନିରାଶ ହେବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।)

୧୨୦୪୨. ଜାଣି ଥିଲି କି ?
ଅଧେ ସୁନା ଅଧେ ପିତଳ ବୋଲି ମୁଁ, ନିକିତି ପକାଇ ତୁଲିଥିଲି କି ?
(ଚରିତ୍ରସଂହାର ଚେଷ୍ଟାରେ ଏକ ନିରୀହା ନାରୀ କ୍ଷୁବ୍ଧା ହେଲେ ମୁଖରା ନାରୀର ବ୍ୟଙ୍ଗୋକ୍ତି - 'ତୋ ଚରିତ୍ର କେତେ ଭଲ କେତେ ମନ୍ଦ, ମୁଁ ବଣିଆ ପରି ତୁଳି ଦେଖି ନାହିଁ ।')

୧୨୦୪୩. ଜାଣିଛି ତୁମ୍ଭର ରୀତି
ଯେବେ ଦେଖିବଟି ଅନ୍ୟ ଯୁବତୀ
ଯିବ ତା କତି,
ରହସ୍ୟେ ମାତି,
ଦିବସ ରାତି
ମୋତେ ଛାଡ଼ିଣ ହେ,
ମୁଁ କିପରି ଧରିବି ଛାତି ।

୧୨୦୪୪. ଜାଣିତ ହୋଇଛି ବୁଢ଼ୀ
ଆସିବ କି ଆଉ ବଳ ବୟସ, ପିନ୍ଧିବି ମୁଁ ସୁନାଚୁଡ଼ି ।
(ବୃଦ୍ଧାର ଅନୁଶୋଚନା । ସୁନାଚୂଡ଼ି ମିଳିଲେ ବି ବାର୍ଦ୍ଧକ୍ୟରେ ଅସୁନ୍ଦର । ଅଳଙ୍କାର ଯୁବତୀର ଯୌବନଶ୍ରୀ ପାଇଁ ଉଦ୍ଦିଷ୍ଟ । )

୧୨୦୪୫. ଜାତକ ଦେଖ ହେ ନାହାକ
ବୋହୁ ଭାତ ଖାଉ ନାହିଁ ପାଆକ;
କି ଜାତକ ଦେଖିବି ମାଉସୀ
ବୋହୂ ଭିତରେ ଭିତରେ ଖାଉଚି !
(ଛଳନାମୟୀ - ନାରୀର ଚରିତ୍ର । )

୧୨୦୪୬. ଜୁଣୁଝୁଣୁ ହୋଇ ଗାଧୋଇ-ପାଧୋଇ ନଈରୁ ଆସୁଛି ଗୋରୀ
ଜାନୁ ଯଉବନ ସବୁ ଦିଶୁଅଛି ସରୁ ଲୁଗା ଫୁଟି କରି ।

୧୨୦୪୭. ଜାଳ ନାହିଁ ଜାଳିବାକୁ
ଚୂଲୀ ମୁଣ୍ଡ ମୂଳେ ସକେଇ କାନ୍ଦୁଛୁ, ଭିନ ଘର କରିବାକୁ ।
(ଗରିବ ଘରେ ଚଳିବା ଏକେତ ଦୁର୍ଦ୍ଦଶା । ତହିଁକି ଭିନେ ହେଲେ ଦି'ଟି ଚୂଲୀ ପାଇଁ ଦି' ଗୋଛା ଜାଳ ଲୋଡ଼ା । ଦୁର୍ଦ୍ଦଶା ଆହୁରି ବଢ଼ିବ ।)

୧୨୦୪୮. ଜୀରା ଫୁଟାଇବି, ଲଙ୍କା ଫୁଟାଇବି
ଲୁଣ ବୋଲି ପାଶୋରିବି
ଶାଶୂ ଗାଳିଦେଲା, ନଣନ୍ଦ ଗଞ୍ଜିଲା
କାହାର କେତେ ସହିବି ?

## -ଦୋଳିଗୀତ-

୧୨୦୪୯. ଜଡ଼ାଖୁଣ୍ଟ ରଟମଟ
ପହଞ୍ଚିଲା ଭାଇ ରଜ ନିକଟ, ଗଢ଼ି ଦିଅ ଦୋଳି ଖୁଣ୍ଟ ।
୧୨୦୫୦. ଜଡ଼ା ତେଲ ବଡ଼ ଅଠା
ଥିରି ଥିରି କରି ଲିଭା ବଇଠା, ପାଳଧୁଆ ଦୋଳି ପଟା ।
୧୨୦୫୧. ଜଡ଼ିପତ୍ର ଖସ ଖସ,
ମୁହଁକୁ ପଡ଼ିଛି ବେଳ ତରାସ (=ତେଜ), ହସି ହସି କୋଳେ ବସ ।
୧୨୦୫୨. ଜଡ଼ି ପତ୍ର ସଲ ସଲ
ବାସନା ଅତର ଫୁଲୁରି ତେଲ ।
ଆଣିଛକି ଚମ୍ପାଫୁଲ, ନାଗର ହେ ।
୧୨୦୫୩. ଜହ୍ନ ଆସେ ଘନ ଘନ
ନିଅ ଏବେ ତୁମେ ବିଡ଼ିଆ ପାନ
ବିଡ଼ିଆ ପାନ ଗୋ,
ମୋହିଲ ମୋହରି ମନ ।
୧୨୦୫୪. ଜହ୍ନଟି ପାଖରେ ତରା
ଜହ୍ନ ବୁଡ଼ିଗଲେ ପଡ଼ିବୁ ଧରା, ବଇଶାଖ ମାସ ଖରା ।
୧୨୦୫୫. ଜହ୍ନ ପଡ଼ିଗଲା ପାହାନ୍ତି
ଅଳପ ଦିନକୁ ବହୁତ କଥା, ଦଶ (=ଯଶ) ରଖିଗଲା ମହାନ୍ତି ।
୧୨୦୫୬. ଜହ୍ନ ପଡ଼େ ଘନ ଘନ;
ଏହି ବାଟେ ଗଲେ ମୋ ଜୀବନ/ଜୀବଧନ, ପଡ଼ିଛି କଠଉ ଚିହ୍ନ ।
୧୨୦୫୭. ଜହ୍ନ ପଡ଼େ ଘନ ଘନ
ପୀରତି କରିତେ ଲାଗେ ସରମ, ମନ ହୁଏ ଛନ ଛନ ।

୧୨୦୫୮. ଜହ୍ନ ପାଖେ ପାଖେ ତରା
ଜହ୍ନ ବୁଡ଼ିଗଲେ ପଡ଼ିବ ଧରା, ଜଇଷ୍ଠ ପୁନିଅଁ ପରା ।
୧୨୦୫୯. ଜହ୍ନ ଭଦେ ନରହରି
ଜହ୍ନ ବୁଡ଼ି ଗଲେ ମେଘ ଅନ୍ଧାରି, କୃଷ୍ଣ ଲାଗି ଏତେ ସରି ।
୧୨୦୬୦. ଜାଇ ଫୁଲ ମାଳ ମାଳ
ପୀରତି ଆଗରୁ ବହୁଛି ଝାଳ, ଅଦିନ ମଲ୍ଲୀ, ଏକେତ ଗ୍ରୀଷମ କାଳ ।
୧୨୦୬୧. ଜାମୁକୋଳି କଳା କଳା
ଦୋଳି ନ ବସୁଣୁ ବେଗେ ତୁ ପଳା, ଡାକିଲେଣି ଗଳା ମାଳା ।
୧୨୦୬୨. ଜାଲରେ ମାଇଲି ମୀନ
ଝିଅଟି ସୁନ୍ଦର ଜୋଇଁଟି ହୀନ, କିପରି ସରିବ ଦିନ ।
୧୨୦୬୩. ଜୁଲୁକିରେ ସବୁ କଣ୍ଟା
ଆଖିଠାରି ଦେଲେ ଶାଶୁ ଜାଣିବେ, ନଣନ୍ଦ ବାଢ଼ିବ ଖୁଣ୍ଟା ।
୧୨୦୬୪. ଜୋକଗଡ଼ିଆର ଜୋକ
କାନପୁର ଶାଢ଼ୀ ଜଅକ ଜକ, ପିନ୍ଧିଲେ ବହୁତ ସୁଖ ।

## -ହଳିଆ ଗୀତ-

୧୨୦୬୫. ଜଗନ୍ନାଥ ପ୍ରଭୁଙ୍କୁ ଚାହିଁଲି ନିରେଖି
ଚମକି ପଡ଼ିଲି ଯେ ଚକାଡ଼ୋଳା ଦେଖି
ଚକର ଭିତରେ ହୋ କସ୍ତୁରୀର ଲେପ
ତୋଳେ ଚାହାଁ ଜଗବନ୍ଧୁଙ୍କୁ, ଘୋଟିଛି ତ୍ରୈଲୋକ୍ୟ ।
୧୨୦୬୬. ଜଗନ୍ନାଥ ପ୍ରଭୁ ବିଚିତ୍ର ବିନ୍ଧାଣି
ଏକା ଖମ୍ବକରେ ଲଗାନ୍ତି ଷୋଳ ଶେଣି
ଏକା ଶେଣିକରେ ଲଗାନ୍ତି ତିନିକାଣ୍ଡ
ନାଉରିଆ ନାବ ବାହୁଛି ଫିଟିବ ରାଜଦଣ୍ଡ ।
୧୨୦୬୭. ଜଗନ୍ନାଥ ପ୍ରଭୁ ସ୍ନାହାନ ମଣ୍ଡପରେ
ଲକ୍ଷେ ଯୋଡ଼ା ପାଣି ଢ଼ାଳନ୍ତି ମୁଖରେ
ମଥା ଗରୁ କଳା ଝିଅ ରୁକୁଣା, ତୋ ଭାଇ ଅଣସରରେ ।

୧୨୦୬୮. ଜଗନ୍ନାଥ ମହାପ୍ରଭୁ ଉପାୟ ବଳ ଦେଲେ
ବରଷକର ବାଟ ଛ' ମାସରେ ଗଲେ ।
ତାଳତ କୁଡ଼ିଆରେ ପତର ଶଯ୍ୟା କଲେ ।
ବଡ଼ ଦେଉଳକୁ ସ୍ଥିର କରି ଅନା
ଉପରେ ଉଡୁଛି ନୀଳଚକ୍ର ବାନା
କବାଟ ପିଟିଲେ ଦେଖିବୁ କାଳିଆ ଦାରୁବ୍ରହ୍ମା ।

୧୨୦୬୯. ଜଗନ୍ନାଥ ମହାପ୍ରଭୁ ଓଡ଼ିଶାରୁ ଗଲେ
ଛ'ମାସ କଷ୍ଟ କରି ପ୍ରଭୁ ବରଷେ ରହିଲେ
ମଧୁବନେ ତାଳ କୁଡ଼ିଆ ପତର ଶଯ୍ୟା କଲେ ।

୧୨୦୭୦. ଜନକ ସୀତୟାଙ୍କୁ ଶ୍ରୀରାମଚନ୍ଦ୍ର ବର
ତାଳ କୁଡ଼ିଆକୁ ମଲ୍ଲୀଫୁଲ ବାଡ଼
ସେବତୀ ଫୁଲର ଛାଉଣି ଶ୍ରୀରାମ ବସାଘର ।
ଶ୍ରୀରାମ ବସାଘର ତୀକ୍ଷମୂଳେ ବାଟ
ତିଳ ଚୋପା ପ୍ରାୟେ ଲାଗିଛି କବାଟ
କପାଟ ଫେଡ଼ି ଚାହାଁରେ ମୂଢ଼ ବସିଛି ଗୋଲାହାଟ ।

୧୨୦୭୧. ଜନମ ହେଲୁ ବଳା ମର୍ତ୍ତମଣ୍ଡଳରେ
ମରିଗଲେ କି ନେବୁ ସଙ୍ଗତରେ ।
ଭଲ ଖଣ୍ଡେ ରଖି ଛିଣ୍ଡା ଖଣ୍ଡ ଦେବେ
ଛ' ଖଣ୍ଡ କାଠରେ କୋକେଇ ବାନ୍ଧିବେ ।
ଭାଇ ବନ୍ଧୁ ମିଳି ବୋହି ଘେନିଯିବେ
ମଶାଣି ଭୂମିରେ ତୋ ପିଣ୍ଡ ଥୋଇବେ ।
ପାଞ୍ଚ ସାତ ହୋଇ ସହ (=କୁଇ) ତିଆରିବେ ।
ବେଢ଼ାଏ ବୁଲିଣ ସହରେ ନଦି ଦେବେ ।
ଧର୍ମକୁ ସୁମରିଣ ଅଗ୍ନି ଲଗାଇବେ
ପୋଡ଼ି ଜଳିଯିବୁ ମୂଢ଼ ସ୍ନାହାନ ସାରିବେ ।
ସ୍ନାହାନ ସାରିଣ ଯେଝା ଘର ଯିବେ
ନୂଆ ଆଟିକାରେ ପିତା ଯେ ଖାଇବେ ।

ବନ୍ଧୁ ବାନ୍ଧବଙ୍କୁ ଚିଟାଉ ପତ୍ର ଦେବେ
ଗ୍ରାମବାସୀ ମାନଙ୍କୁ ବାରତା ଲଗାଇବେ ।
ଦଶଦିନେ ଦଶ କରମ, ଏଗାର ଦିନେ ହାଣ୍ଡି
ବାରଦିନେ ତେର ଅଏଁଳା, ତୋ ନାମ ପାସୋରିବେ ।
ମାତା କାନ୍ଦୁଥାଇ ଯୁଗ ଯୁଗାନ୍ତରି
ଭଉଣୀ କାନ୍ଦଇ ଅଢ଼େଇ ଓଳି ଧରି
ଘରର ଘରଣୀ ଯେବେ କାନ୍ଦଇ
ମୁଁ ଗଲେ ଅନ୍ୟ ବର ହୋଇ ।

୧୨୦୭୨. ଜନମ ହେଲୁ ବଳାରେ ଅବଶ୍ୟ ମରିବୁ
ଯମରଜା ସଙ୍ଗେ କର ପୀରତି ଅମର ହୋଇଥିବୁ ।

୧୨୦୭୩. ଜୟ ଜୟ ଜଗନ୍ନାଥ ଜଗତ କରତା
କଂସକୁ ମାରିଣ ରଖିଲ ପିତା ମାତା
ରଖି ନ ପାରିଲ ନିଜ ଭାରିଯା
ରାବଣ ନେଲା ସୀତା ।

୧୨୦୭୪. ଜୁଆନ ଭଞ୍ଜରାଜାର ଚାରିଗୋଟି ରାଣୀ
ତୁ ହେଲେ ଯୁଗିଆଁ (=ଯୋଗିଆ) ମୁଁ ହେବି ଯୁଗିଆଣୀ
ଏକା ସାଥୀ ଚଲିଯିବା ଦୁଇଟି ପରାଣୀ (=ପ୍ରାଣୀ)
ତୁମ୍ଭେ ବସିଥିବ କଦମ୍ବ ମୂଳରେ
ଭିକ୍ଷା କରାଇବ ରାଜନ ବୁଲି ଯେ ବଜାରରେ ।

## -ହଳିଆ ଚଉତିଶା-

୧୨୦୭୫. ଜୁଆନ ଦେହକୁ ବହିଛୁ କାଳିଆ
ଯୁବା ଦେହ କାହିଁକି କରୁଛୁ ମାହାଳିଆ (=ମାଗଣା)
ଜୀବନ ଥିଲେଟି ଭୋଗ କରିବୁ ଜୀବନେ ବଞ୍ଚିଥିଲେ ଏକା ।

## -କୃଷି ବଚନ-

୧୨୦୭୬. ଜାଣ ନ ଜାଣ ଝାମ୍ପୁଡ଼ି ଆଣ
ଖାଡ଼ିଆ ଶିଙ୍ଘା ସବୁଠାରୁ ଟାଣ,
ଯେବେ ଆଣିବୁ ବେଣିଆ ରସି /ମୂଳା ଶିଙ୍ଘା ଯେବେ ଆଣିବୁ ରସି
କାନ୍ଦୁଥିବୁ ହିଡ଼ ମୁଣ୍ଡାରେ ବସି ।
ଶିଙ୍ଗସରୁଆ ଲାଙ୍ଗୁଳ ମୋଟା
ମାଗଣା ଦେଲେ ନ ଆଣିବ ବେଟା ।
ଯେବେ ଦେଖିବୁ ମିରିଗକାନା
ସେଇକ୍ଷଣି କାନୁ କାଢ଼ିବୁ ସୁନା ।

୧୨୦୭୭. ଜାଣ ନ ଜାଣ ଝାମ୍ପୁଲା ଆଣ
ଖାଡ଼ିଆଶିଙ୍ଗା ସବୁଠାରୁ ଟାଣ
କୁଣ୍ଡଳଶିଙ୍ଗା ଦେଖିବୁ ଯେବେ
ଅଣ୍ଟାରୁ ପଇସା କାଢ଼ିବୁ ତେବେ
ଆଣିଥିବୁ ମୂଳଶିଙ୍ଗାକୁ ରସି
କାନ୍ଦୁଥିବୁ ହିଡ଼ ମୁଣ୍ଡରେ ବସି
ଶିଙ୍ଗ ସରୁଆ ଲାଙ୍ଗୁଡ଼ ମୋଟା
ମାଗଣା ଦେଲେ ନ ଆଣିବୁ ବେଟା ।

(ଭଲ ବଳଦ ଚିହ୍ନି କିଣିବାର ସୂତ୍ର । ଝାମ୍ପୁଲା - ଯାହା ଶିଙ୍ଗ ଆଗକୁ ନଇଁଥାଏ । ଖାଡ଼ିଆଶିଙ୍ଘା - ଯାହା ଶିଙ୍ଘ ଦୁଇ ପାଖକୁ ଫରକଟା ହୋଇଥାଏ । କୁଣ୍ଡଳୀ ଶିଙ୍ଘା ବା ବେଣିଆ ମୁଣ୍ଡରୁ ବୃତ୍ତାକାରରେ ଶିଙ୍ଘ ବାହାରି ଥାଏ । ମୂଳାଶିଙ୍ଘା - ମୂଳରୁ ଅତି ମୋଟା ହୋଇ ବାହାରିଥାଏ ।)

୧୨୦୭୮. *ଏକାର୍ଥରେ* - ଆଣ ନ ଆଣ ଝାମ୍ପୁଲି ଆଣ
ଖାଡ଼ିଆଶିଙ୍ଘା ସବୁଠୁଁ ଟାଣ ।
ଯେବେ ଆଣିବୁ ବେଣିଆ ରସି
କାନ୍ଦୁଥିବୁ ହିଡ଼ ମୁଣ୍ଡରେ ବସି ।

୧୨୦୭୯. ଛିଆନାଡ଼ ଗଡୁଥିଲେ,
ଚାଣ୍ଟିମାନେ ଡ଼ିମ୍ବ ଉପରକୁ ବୋହୁଥିଲେ
ବଳଦଙ୍କ ଦେହରେ ମାଛି ଲାଗୁଥିଲେ,
ଜଳରେ ପକ୍ଷୀ ଡ଼େଣା ଶୁଖାଉଥିଲେ - ବର୍ଷା ହୁଏ ।
(ବର୍ଷା ହେବା ଲକ୍ଷଣ ।)

୧୨୦୮୦. ଜ୍ୟେଷ୍ଠ ଯେବେ ତପତ ହୁଏ,
ଜାଣିବ ବୃଷ୍ଟି ଭଲ ହୁଏ ।
(ଜ୍ୟେଷ୍ଠ ମାସରେ ଅଧିକ ଗରମ ହେଲେ ସେବର୍ଷ ବୃଷ୍ଟି ପାତ ଭଲ ହୁଏ ।)

୧୨୦୮୧. ଜ୍ୟେଷ୍ଠରେ ମାରି ଆଷାଢ଼େ ଭର,
କାଟି ମାଡ଼ି କରେ ଘର ।

୧୨୦୮୨. ଜ୍ୟେଷ୍ଠ ଶୁକ୍ଳ ଆଷାଢ଼େ ଧାରା,
ଶସ୍ୟର ଭାରା ନ ସହେ ଧରା ।

୧୨୦୮୩. ଜ୍ୟେଷ୍ଠ ଶେଷେ ବର୍ଷିଲେ ଜଳ
ଦେଶେ ହୁଅଇ ସୁ-ମଙ୍ଗଳ,
ଆଷାଢ଼େ ଜଳ ଶସ୍ୟେ ଭରା
ଶ୍ରାବଣେ ଭାର ନ ସହେ ଧରା,
ଭାଦ୍ରବ ମେଘ ନୁହେ ଭଲ
ଆଶ୍ୱିନେ ଜଳର ସୁଫଳ,
କାର୍ତ୍ତିକ ବରଷା ହୀନ ମାନ
ଆଷାଢ଼େ ବରଷା ଲୋକ ମାନ,
ପୌଷେ ଶସ୍ୟ ଯାଇ ନାଶ
ଖନା କହେ ସର୍ବ ଶେଷ ।

୧୨୦୮୪. ଜ୍ୟେଷ୍ଠେ କଦଳୀ ଆଷାଢ଼େ କିଆ, ପୋତ ନପୋତ ହୁଅଇ ଠିଆ ।
ହାତେ ଚାଖଣ୍ଡକେ ଖୋଳିବ ଗାତ, ପତର ଖଣ୍ଡିକେ ନ ଦେବ ହାତ ।
ଚାଖଣ୍ଡେ ଛାଡ଼ି ଭାଙ୍ଗିବ ଭଣ୍ଡା, ତେବେ ସେ ଦେଖିବ କଦଳୀ ପେଣ୍ଡା ।
(କଦଳୀଚାଷ ସମ୍ବନ୍ଧରେ ଉପଦେଶ)

୧୨୦୮୫. ଜ୍ୟେଷ୍ଠେ ଚଷ, ବେଳହୁଁ ଖସ ।
ବୈଶାଖେ ଚଷ, ହାକିମ ପୋଷ ।
ଚଇତେ ଚଷ, କୁଟୁମ୍ବ ପୋଷ ।
ଫଗୁଣେ ଚଷ, ସୁନାକଷ ।

୧୨୦୮୬. ଜ୍ୟେଷ୍ଠେ ଝାଞ୍ଜି ନାହିଁ ବିନ୍ଦୁ ପବନ,
ଆଷାଢ଼େ ବରଷା ଦିନକୁ ଦିନ,
ଧାରା ଶ୍ରାବଣରେ ଘୋର ବରଷା,
ଭାଦ୍ରବ ମାସରେ ଫସର ଫସା,
କାହିଁରେ ଧାନ ସାଇତିବୁ ଚଷା ?
(ପାଣିପାଗ ଓ ଫସଲ ବିଷୟରେ ଏକଥା କୁହାଯାଏ ।)

୧୨୦୮୭. ଜ୍ୟେଷ୍ଠରେ ହେଲେ ପୂବେଇ ପବନ
ଶ୍ରାବଣ ମାସେ ଅନାବୃଷ୍ଟି ଜାଣ ।
(ଜ୍ୟେଷ୍ଠ ମାସରେ ପୂର୍ବଦିଗରୁ ପବନ ବୋହିଲେ ଶ୍ରାବଣ ମାସରେ ଅନାବୃଷ୍ଟି ହୋଇଥାଏ ।)

## -ଜହ୍ନି ଓଷା ଗୀତ-

୧୨୦୮୮. ଜହ୍ନ ଆସେ ଘନ ଘନ
ତୋତେ ଦେଖିବାକୁ ବହୁତ ମନ
ଏବେ ତୁ ହେଲୁ ସାତ ସପନ ।

୧୨୦୮୯. ଜହ୍ନ ପାଖେ ନରହରି
ବୋଇଲିରେ ଜହ୍ନ ପାଖେ ନରହରି
ଜହ୍ନ ବୁଡ଼ିଗଲେ ମେଘ ଅନ୍ଧାରୀ
କୃଷ୍ଣ ଲାଗି ଏତେ ସରି,
ଜହ୍ନ ବୁଡ଼ିଗଲେ ଫାଲେ
ବୋଇଲିରେ ଜହ୍ନ ବୁଡ଼ିଗଲା ଫାଲେ
ଭଲା ପୁଡ଼ିଗଲା ଲିସିଂହା ପାଲେ
କଥା ରହିଗଲା କାଲେ ।

୧୨୦୯୦. ଜହ୍ନ ପଖ ବୋଲି ବାରିକି ଗଲି,
ପଡ଼ିଛି ମୟୂର ଛାଇ
ଅତି ଯତନରେ ସୋରିଷ ଫୁଲ,
ଲବକୁଶ ବେନିଭାଇ ।
ଲବକୁଶ ବୋଲି ଯାହାକୁ କହିଲି,
ଧରୁ ଧରୁ ପଳାଇଲେ
ରୂପାର କୋଳପ ସୁନାର କଞ୍ଚି
କେତେ ଖୁଣି ଫିଟାଇଲେ ।

୧୨୦୯୧. ଜହ୍ନ ପଡ଼େ ନରହରି ଗୋ ଫୁଲ ବଉଳବେଣୀ
ଆହୁରି ବୋହୂଙ୍କୁ ସୁନ୍ଦର ଦିଶଇ ଚୁଡ଼ି ପାଖେ
କଳିଆରି ଗୋ ଫୁଲ ବଉଳବେଣୀ ।
ଜହ୍ନ ପଡ଼େ ବଙ୍କା ବଙ୍କା ଗୋ ଫୁଲ ବଉଳବେଣୀ
ଆହୁରି ବୋହୂଙ୍କୁ ସୁନ୍ଦର ଦିଶଇ କଇଳାଶପୁର ଶଙ୍ଖା ଗୋ
ଫୁଲ ବଉଳବେଣୀ ।
ଜହ୍ନ ପଡ଼େ ମଉଳିଆ ଗୋ ଫୁଲ ବଉଳବେଣୀ
ଆହୁରି ବୋହୂଙ୍କୁ ସୁନ୍ଦର ଦିଶଇ ତାଡ଼ ପାଖେ ଡ଼େଉଁରିଆ ଗୋ,
ଫୁଲ ବଉଳବେଣୀ ।
ଜହ୍ନ ପଡ଼େ ଥୋଳା ଥୋଳା ଗୋ ଫୁଲ ବଉଳବେଣୀ
ଆହୁରି ବୋହୂଙ୍କୁ ସୁନ୍ଦର ଦିଶଇ ତାଡ଼ ପାଖେ ବାଙ୍କୁ ବନ୍ଧ ଗୋ
ଫୁଲ ବଉଳବେଣୀ ।
ଜହ୍ନ ପଡ଼େ ଛାଇ ଛାଇ ଗୋ ଫୁଲ ବଉଳବେଣୀ
ଆହୁରି ବୋହୂଙ୍କୁ ସୁନ୍ଦର ଦିଶଇ ମସ୍ତକରେ ମଥାମଣି ଗୋ
ଫୁଲ ବଉଳବେଣୀ ।
ଜହ୍ନପଡ଼େ ଝକ ଝକ ଗୋ ଫୁଲ ବଉଳବେଣୀ
ଆହୁରି ବୋହୂଙ୍କୁ ସୁନ୍ଦର ଦିଶଇ ବେକରେ ସୁନାର ଚିକ ଗୋ
ଫୁଲ ବଉଳବେଣୀ ।

ଜହ୍ନପଡ଼େ ହସି ହସି ଗୋ ଫୁଲ ବଉଳବେଣୀ
ଆହୁରି ବୋହୂଙ୍କୁ ସୁନ୍ଦର ଦିଶଇ ଫୁଟିକି ପାଶେ ନୋଳକ ଗୋ
ଫୁଲ ବଉଳବେଣୀ ।
ଜହ୍ନପଡ଼େ ଘନ ଘନ ନଇଲେ କଅଁଳା ବାଛୁରୀ କାନ
ଏଣୁ ତେଣୁ ଦେଲେ ନ ବୁଝିବି, ଏକା ପାଟ ଶାଢ଼ୀରେ ମୋ ମନ ।

୧୨୦୯୨. ଜହ୍ନି ଜହ୍ନି ସେ ଜହ୍ନି ଆଞ୍ଜୁଳି
ନିତି ପୂଜୁଥିବି ତିନି ଆଞ୍ଜୁଳି ।
ଶଙ୍ଖର ପାଣି ଚକରେ ଦିଅ
ସାତ ଜନମ ଯାଏ ଅହିଅ ।
ଜହ୍ନି ଫୁଲ ମହାଦେଇ
କେ କେ ଯାଉଛ ଚାଉଳ ଧୋଇ
ନୂଆ ବୋହୂକୁ ନିଅ ଗାଧୋଇ ।
ଜହ୍ନିଫୁଲ ହଳଦିଆ
କୁମୁଟି କନିଆ କେତେ ସୁନ୍ଦର
ଘେନିଗଲା ବଳଦିଆ ।

୧୨୦୯୩. ଜହ୍ନିଫୁଲ ଫୁଟି ଦିଶେ ଗୋଟି ଗୋଟି
ଦୂରକୁ ଦିଶଇ ସୁନା
ମୋହର ଘରଣୀ ଯେବେ ତୁ ହେବୁ
ଦାଣ୍ଡକୁ କରୁଛି ମନା ।
ବାମ୍ବି (=ମତ୍ସ୍ୟ ବିଶେଷ) ଶୁଖୁଆକୁ ଲଙ୍ଗଳ କନ୍ଦା (=ଆଳୁଭଳି)
ହେଲେ ହେବ ସାଳବନ୍ଧା ।

୧୨୦୯୪. ଜାଇ ନାନୀ ଲୋ ଜାଇ ନାନୀ ତୁ କି କରିଥାଉ ଛେନା
ଛେନା ଫେନା ପୋଡ଼ି ଯାଉ ନନ୍ଦକୁ ଦେଖିଲେ କିନା !
ନନ୍ଦ ମୋତେ ଛନ୍ଦ କଲା ଦୁଧ ହେଲା ପାଣି
ଦୁଧ ଖିରୀରୁ ଟିକିଏ ଖାଇଲେ ପେଟ ହେଲା ଟାଣି ।

୧୨୦୯୫. ଜାଉ କାଞ୍ଜି ଖାଇ ଢୋଳଉ ଥାଏ ।
କାଳିଆ କୁକୁର ପେଜ ନ ଖାଏ ।

୧୨୦୯୬. ଜାମୁ ପଡ଼େ ନଦନଦ
ମାଡ଼ି ଆସେ ବଣୁ କାଳିଆ କନ୍ଧ
ମୋର କରମଟି ବଡ଼ମନ୍ଦ ।

## -ରସର କେଳି- (ପଶ୍ଚିମ ଓଡ଼ିଶା)

୧୨୦୯୭. ଜାନୁ ଯଉବନ ଯତ୍ନେ ଥିଲି ସଞ୍ଚି କରି
ଯମ ନେଉ ନାହିଁ ଯୁବା ଦେହକୁ ନାଗର,
କେତେ ଥିବି ଧରି
ରସ ଯା ଚାଲିଯା ରେ ।
ଯତନେ ରତ୍ନ ପଲଙ୍କେ ଶେଯେ ଥିଲି ଶୋଇ
ଜାଇ ଚମ୍ପାଫୁଲ ମାଲ ଗୁନ୍ଥି ରଖି ତହିଁ
ଜାଗ୍ରତରେ ଶୋଇଥିଲି ନାଗର, ନ ପାରିଲି ଯାଇ
ରସ ଯା ଚାଲି ଯା ରେ ।
ଝଟତିରେ ଆସନ୍ତେ ମୁଁ ପଡ଼ିଲଇଁ ଝୁଣ୍ଟି
ଝର ଝର ହୋଇ ଯେ ରୁଧିର ଗଲା ଫିଟି
ଝଞ୍ଜୁକା ଝଡ଼େ ପଡ଼ି ରାଧିକା, ଗଲି ମୁଁ ଲେଉଟି
ରସ ଯା ଚାଲି ଯା ରେ ।
ଝାଇ ମାଟି ଲେପି ଦେଲି ପ୍ରାସ ଯିବ ଅଙ୍ଗ
କଦମ୍ବ ମୂଳରେ ଅଛି ମହୁଝରା ଟାଙ୍ଗ
ଝାଡ଼ରେ ଦେଖାଇ ଦେବି ନାଗର, ମହୁଝରା ଟାଙ୍ଗ
ରସା ଯା ଚାଲି ଯା ରେ ।

୧୨୦୯୮. ଛାଲି ଚଟୁର ମାଡ଼ଖିଆ ସମ୍ବଲପୁରିଆ
ମାଠିଆ ମଙ୍ଗରେ ଡେଙ୍ଗ ଡେଙ୍ଗୁଲିଆ
ପ୍ରୀତିକୃଟ କରିଥିଲି ଆହବ ବାହନ (= ଗାଈଗୋରୁ)
ଜଣାଶୁଣା ପଡ଼ିଗଲେ କେତେ ଅଭିମାନ
ଗଉଡ଼ ପୀରତି କଲେ ଗୁହାଳ ସୁରଥ (=ସୁରତି)

ହେଲେ ଲନ୍ତା ପିଲା ମହାନ୍ତି, ସକାଳ ପୁହାନ୍ତି,
ରସ ଯା ଚାଲି ଯାରେ, ଛନକା ଛପାଇ ଛାତି ।

## -କରମା ଗୀତ-

୧୨୦୯୯. ଜୁହାର ମାଗୋ କରମ ସାନି କହିଦେବୁ ମୋତେ
ଫୁଲେ ଫୁଲ ଚଢ଼ାଇବି ତୋତେ ।
ଜୁହାର ମାଗୋ କରମସାନି
ଅପୁତ୍ରୀକି ପୁତ୍ରୀ ଦାନୀ
ପୁତ୍ରର ଦୁଃଖର ଲାଗି ଜନେ କରନ୍ତି ଉପାସ ହୋ
କରମସାନି ଚଲେ ବନବାସ ।
ବୈଶାଖ ଗଲେ ଜ୍ୟେଷ୍ଠ ଆସେ
ଜ୍ୟେଷ୍ଠ ଗଲେ ଆଷାଢ଼ ଆସେ
ଆଷାଢ଼ ଗଲେ ଶ୍ରାବଣ ଆସେ
ଶ୍ରାବଣ ଗଲେ ଭୂଦୋ ଆସେ
ଭୂଦୋର ଏକାଦଶୀ ଶନିବାର
ମାଗୋ ତୋହର ପାଦେ ଜୁହାର ଜୁହାର
କର୍‌ମାକେ ଏକାଦଶୀ,
ଫୁଲ ଫୁଟେ ବାରମାସୀ
ଫୁଲର ନାମ ଅଟେ ଜାଇ ଯୁଈ ରେ
କରମସାନି ନାଚେ ଥେଇ ଥେଇ ।
ଗାୟକ ବଜାଏ ତାଲ,
ବାୟକ ବଜାଏ ମାଦଲ
କରମସାନି ମଧ୍ୟେ ଢ଼ଲି ଢ଼ଲି ରେ
ନାଚୁଛନ୍ତି ପ୍ରଭୁ ବନମାଲୀ ।

## -ଶଗଡ଼ିଆ ଗୀତ-

୧୨୧୦୦. ଜନକସୁତା (=ସୀତା) କହେ ଶୁଣରେ ମନ୍ଦମତି (=ରାବଣ)
ଜଳନ୍ତା ଅନଳେ ପଶିରେ ନ ମର
ତୋତେ ମାରିବେ ମୋର ପତି (=ଶ୍ରୀରାମ) ।

୧୨୧୦୧. ଜୀବ ଥିଲେ ସିନା ମୁଁ ଭୁଞ୍ଜିବି ଫଳମୂଳ
ଟୀକାଏ ବିଳମ୍ବ **ହେଲେ** **ମା'**ଗୋ
ମୋତେ ଭକ୍ଷିବେ ଶୃଗାଳ ।

୧୨୧୦୨. ଜୀବ ପରମକୁ ଏକ୍ ତୁହି କର
ଜପ ଏକାକ୍ଷର ହୃଦରେ ତୋହର
ଯମ ରାଜା ଦଣ୍ଡି ନ ପାରିବ ତୋତେ
ଜଗତଯାକ ଦେଖ ମୂଢ଼ ଯେ ମନାଇଁ ରହିଛି ଗୁପତେ ।

## -ଶାସ୍ତ୍ରବିଦ୍ୟା ମଙ୍ଗଳ ଗୀତ-

୧୨୧୦୩. (ଶ୍ରୀ)ଜଗନ୍ନାଥ ନାମ ଧରିଣ ଅନୁକୂଳ
ହେବଟି ଶତ୍ରୁକ୍ଷୟ ରଖିବେ ଆଦିମୂଳ ।
ଶ୍ରୀ ମଧୁସୂଦନ ନାମ କରିବ **ପଶୁପତ୍ର**
ଶତ୍ରୁକୁ କ୍ଷୟ କରି ନାଶିବ ତା'ର ଗୋତ୍ର ।
ମନକୁ **ଧନୁ** କରି ଆଗରେ ଥୋଇ ଦେବ
ଗୋବିନ୍ଦ ନାମ ଧରି ସଲଖେ ବିନ୍ଧିଦେବ ।
ଶତ୍ରୁକୁ କ୍ଷୟ କରି ଆସିବ ସେଇ କ୍ଷଣ
ଏକଥା ଅଟେ ସତ ଶୁଣ ହେ ସାଧୁଜନ ।
ନୃସିଂହ ନାମ ଗୋଟି ମନର ସୂତ୍ରେ ଯୋଖ
କରିବ **ଫେରି ଫନ୍ଦା*** ଶ୍ରୀ ହରି ପଦ୍ମମୁଖ ।
ଅଭୟ ପଞ୍ଜରର **ବାନା**କୁ ଶିରେ ଢାଙ୍କି
ମଥାକୁ **ଟୋପର** ଯେ ଅନନ୍ତ ପଦ୍ମଆଖି ।
**ମୁରୁଚା*** କରିବି ମୁଁ ପଞ୍ଜର ଆଶ୍ରେ କରି
ଶ୍ରୀମହାବାହୁ **ନଳି** କରରେ ଥିବ ଧରି ।
ଶ୍ରୀଚକ୍ରଧର **ଚୋଟ** ପକାଉଥିବ ଆଣ୍ଟେ
ଶ୍ରୀନାରାୟଣ **ଗଜ** ପୁରାଇ ନଳିବାଟେ ।
ଶ୍ରୀବାସୁଦେବ ନାମକ **ରଞ୍ଜକ** କରି ଠୁଳ
ବଳି ଶ୍ରୀପୀତବାସର **ବଳିତା** ଅନଳ ।
ଦଇତ୍ୟାରି **ଭଣ୍ଡା**ରେ ଲାଞ୍ଛଣ ବିନ୍ଧିଦେବ
ମରିବେ ଶତ୍ରୁମାନେ ଏକଥା ଅଟେ ଧ୍ରୁବ ।

ଶ୍ରୀରଘୁନାଥ ନାମ କରିବ **ବ୍ରହ୍ମଶର**
ସେ ଶରଘାତେ ଶତ୍ରୁ ମରିବେ ତତ୍‌ପର ।
କେଶବ ନାମେ **କାଣ୍ଡ** ଗିରିଜା ଶର **ବାଡ଼ି**
ଇକ୍ଷୁଦଣ୍ଡ ପରାୟେ ଶତ୍ରୁକୁ ଦେବ ପୋଡ଼ି ।
ଅନନ୍ତ ନାମଗୋଟି କରିବ **ଖଣ୍ଡାକାଣ୍ଡ**
ମାଇଲେ ଶତ୍ରୁଙ୍କର ପଡ଼ିବ **ଛିଣ୍ଡି** ମୁଣ୍ଡ ।
ଶ୍ରୀଚକ୍ରପାଣି ନାମ କରିଣ ଥିବ **ପୁଳି**
ନୃସିଂହ ନାମ ଚିନ୍ତି ଫୁଟାଇ ଦେବ ନଳି ।
ନିରାକାର **ଭାଣ୍ଡ**କୁ ଦେଖିବ ବେନି ନେତ୍ରେ
ତ୍ରୈଲୋକ୍ୟ କର୍ତ୍ତା **ଢାଲ** ଘୋଡ଼ାଇ ଥିବ ଗାତ୍ରେ ।
ଶ୍ରୀଧର ନାମ ଗୋଟି **ଗନ୍ତାଯୋର** କରିବ
ମୁରାରି ନାମ ଧରି କଟାରୀ କରିଥିବ ।
ପୁରୁଷୋତ୍ତମ ନାମ କରିଣ **ଖେଳକୁନ୍ତ**
ପେଶିଲେ ଏକଶରେ ହୋଇବ ଶତ୍ରୁହତ ।
ପରମେଶ୍ୱର ନାମ କରିକ **ବଡ଼ଗୁଣ୍ଡ**
ପେଶିବା ମାତ୍ରେ ଶତ୍ରୁ ହୋଇବେ ଖଣ୍ଡଖଣ୍ଡ ।
ଶ୍ରୀକୃଷ୍ଣ ନାମ ଗୋଟି କରିଣ **ବ୍ରାହ୍ମଶକ୍ତି**
ଶତ୍ରୁର ବେକ ମୋଡ଼ି ପୋଡ଼ିବ ଦିବାରାତି ।
ବିଷ୍ଣୁଙ୍କ ନାମ ଶର ଥିବ ଯା ହୃତଗତେ
ତାହାକୁ ଶତ୍ରୁଲାଗି କି କରିପାରେ ନିତ୍ୟେ ।

---

* **ଫନ୍ଦା** - କୂଟକୌଶଳ, **ମୁରୁଚା**- ପାଚେରୀ କାନ୍ଥରେ ଥିବା ସୈନ୍ୟମାନଙ୍କ ଗୁପ୍ତ ଗୃହ ।

## -ବନ୍ଦାପନା ମଙ୍ଗଳ ଗୀତ-

୧୨୧୦୪. ଜଗନ୍ନାଥ ପ୍ରଭୁଙ୍କର ବନ୍ଦାପନା ବେଳେ
ସ୍ୱର୍ଗର ଦେବତାମାନେ ମିଳିଲେ ସକଳେ ।

ଶ୍ରୀମୁଖକୁ ଚାହିଁ କରି ଶିରେ କର ଦ୍ୟନ୍ତି
ନିସ୍ତରିଲୁଁ ବୋଲି କରି ଦେବେ ଡାକ ଦ୍ୟନ୍ତି ।
ବେଢ଼ି ମାତାଏ ମିଳିଣ ସୁବେଶ କରନ୍ତି
ନାନା ରତ୍ନ ମଣି ଅଙ୍ଗେ ମଣ୍ଡଣି କରନ୍ତି ।
ଦୂର୍ବାକ୍ଷତ ଘେନିଣ ବନ୍ଦାନ୍ତି ସର୍ବ ମାଏ
ସ୍ୱର୍ଗେ ସୁର ବ୍ରହ୍ମାମିଳି କଲେ ଜୟେ ଜୟେ ।
ଭୁଞ୍ଜିବା ଠାବରେ ମାଏ ବସାଇଲେ ନେଇ
ନାନା ବର୍ଣ୍ଣ କ୍ଷୀରୀପିଠା ପରସନ୍ତି ତହିଁ ।
ଭୋଜନ ସଂପୂର୍ଣ୍ଣେ ଆଚମନ ବଢ଼ାଇଲେ
କର୍ପୂର ତାମ୍ବୁଳ ମାଏ ବେଗେ ଯୋଗାଇଲେ ।
ମଙ୍ଗଳ କରି ବାଳୀଏ ଗାଆନ୍ତି ଦିବ୍ୟବାଣୀ
ସର୍ବମଙ୍ଗଳ ହୋଇବ ରାମରାମ ବାଣୀ ।

## -ଅନୁକୂଳ ମଙ୍ଗଳ ଗୀତ -

୧୨୧୦୫. ଜୟ ଜୟ ଜଗନ୍ନାଥ ସର୍ବ ଯେ ମଙ୍ଗଳ
ଲକ୍ଷ୍ମୀ ନରସିଂହ ଧ୍ୟାୟି ହୁଅ ସେ ବାହାର ।
ଦୁର୍ଗାମାଧବ ନାମ ଯୋଗେ ସାର
ଦଧିବାବନ ସୁମରି ହୁଅ ସେ ବାହାର ।
ମଙ୍ଗଳ ମଧୁସୂଦନ ବିଘ୍ନନାଶନ
ମଙ୍ଗଳ ପୁଣ୍ଡରୀକାକ୍ଷ ଗରୁଡ଼ଆସନ ।
ମତ୍ସ୍ୟ, କଚ୍ଛ, ବରାହ, ତ୍ରିବିକ୍ରମ, କେଶରୀ
ପର୍ଶୁରାମ, ବଳରାମ ନାମ ନରହରି ।
ବଉଦ, କଳକୀ ଦଶ ଅବତାର ନାମ
ହୃଦେ ଧରି ଯାତ୍ରା କରି ଚଳ ହେ ସୁଜନ ।
ବାର, ତିଥି ତାରା ଚନ୍ଦ୍ର ଯୋଗ ଲଗ୍ନତିଥି
କିଛି ନ ବିଚାର ମନେ ଚିନ୍ତି ଲକ୍ଷ୍ମୀପତି ।

## - ଚଇତ ପର୍ବ ଗୀତ -

୧୨୧୦୬. ଜଗନ୍ନାଥ ଥୁଟା ବଳୀଭଦର
ବିଜେ କଲେ ଫୁଲ ରଥେ
ଯେଉଁଟା କହିଲେ ସେଇଟା ଶୁଣିବି
କିସ ଚିନୁ(=ଚିହ୍ନ)ଅଛୁ ମୋତେ ?
ଶୁଖିଲା ବାଉଁଶ ଫୁଟିଲା ଠୋଅ, କି' କଥା କହୁଛୁ କହ ।
୧୨୧୦୭. ଜଗମୋହନ ମନ୍ତରରେ ସଖି
ଜାଣନ୍ତି ମୁରଲୀଧର
ଜଗତରେ ଦ୍ରବି ପାଷାଣ ତରଳେ
ପାଣି ହୁଅଇ ପଥର ।
୧୨୧୦୮. ଜଗି ମୁଁ ଦେଖିଲି ତମ ବଦନ
ତମ କଥା ଶୁଣି କରି
ଠେଙ୍ଗୁଆ ବୋଇଲେ ମୋ ନିନି ଧନି
ରହି ଯିବା ମିଶି କରି ।
ଆମେ ମନ କଲେ କେବେ କି କେବେ
ତମେ ମନେ କଲେ ଏବେ ।
୧୨୧୦୯. ଜହ୍ନମାମୁଁ ଜହ୍ନମାମୁଁ
କାହ୍ନୁ ଭଣଜାକୁ ପାଟକାଛି ଦେଇଯାଆ,
ଗୋଟିଏ ହେଲେ କାହ୍ନୁ ହସିବ
ଦୁଇଟି ହେଲେ ଆନନ୍ଦରେ ପିଢ଼ା ମାଡ଼ିବସିବ ।
୧୨୧୧୦. ଜହ୍ନୀ ଜହ୍ନୀ ଆଞ୍ଜୁଳି
ନିତି ପକାଏ ତିନି ଆଞ୍ଜୁଳି
ଦୋଳିରେ ଯାଏ ଦୋଳିରେ ଆସେ
ପଟା ପିଢ଼ା ଖଣ୍ଡେ ମାଡ଼ି ବସେ ।
ମୋ' ବୋହୂ ମୋ' କୋଳରେ ବସେ,
ନାତୁଣୀ ବୋହୂ ରାନ୍ଧି ପରଷେ

ହାଣ୍ଡି ପୋଛା ଭାତ ଖାଏ
ଆଟିକାପୋଛା ତିଅଣ ଖାଏ ।
ରାଜା ଗଲେ ଦାଣ୍ଡରେ
ହୁଳହୁଳି ପଡ଼ିଲା ତୁଣ୍ଡରେ
ପଡ଼ିଲାନି ତା ମୋ କାନରେ ।
ଦଧି ନଉତିରେ ଆଣ୍ଠୁ ବୁଡୁ
ଗୋବର ଗାଡ଼ିଆରେ ଗଣ୍ଠି ବୁଡୁ ।
କଖାରୁ ଫୁଲ ସୁକୁଟା,
ପାଟ ମହାଦେଈ କହିଯାଇଛି, ଝିଅ ନାଆଁ 'ମୁକୁତା' ।
(ଝିଅଟିର ନାଁ 'ମୁକୁତା' । କିଭଳି ସୁନ୍ଦର ଭାବରେ ତତ୍କାଳୀନ ଲଳନାମାନେ ଏହା ବ୍ୟଞ୍ଜିତ କରୁଥିଲେ ତା'ର ଏକ ଦୃଷ୍ଟାନ୍ତ ।)

୧୨୧୧୧. ଜୟପୁର ଅଟେ ଅତି ସୁନ୍ଦର
ଲାଗୁଛି ଯୋଡ଼ା ଲାନ୍ତର
ତ'ପରା ଗରାଖ୍ ମ' ଘରେ ଥିଲେ
ଅଧିକ ଶରଧା ମୋର ।
ଆସ ଆସ ଧନ ପ୍ରୀତି କରିବା, ଶରଧାରେ ମାତିଥିବା ।

୧୨୧୧୨. ଜୟପୁର ଆମ କଚେରି ଘର
ଚମ୍ପାଫୁଲ ଭାର ଭାର
ତମର ଆମର ପୀରତି ଲାଗିଲେ
କେଉଁ ପରି ବଞ୍ଚିବାର ।
ଶୁଖିଲା ବାଉଁଶ ଫୁଟିଲା ଠୋଅ, କିପରି ବଞ୍ଚିବା କହ ।

୧୨୧୧୩. ଜୟପୁର ପାଖେ ଜୟନ୍ତ ଗିରି
ଗୋତ ଗଲା ଦିନ ବିରି
ତମ ଶିରିମୁଖ ଛଣେ(=କ୍ଷଣେ) ନ ଦେଖିଲେ
ସପନେ ମରିବୁ ଝୁରି ।
ଆସରେ ଲଡ଼ରା ଲଡ଼ରୀ କାଜେ(=କାର୍ଯ୍ୟରେ),
ଖଜା ଘିନି ଦେବୁ ରୋଜେ(=ପ୍ରତିଦିନ) ।

୧୨୧୧୪. ଜୟପୁର ଲାଗେ ଜୟ ନଗର
ସିଂହପୁରେ ଲାଲ ଘର
ମ'ର ସଙ୍ଗେ ଧନ ପୀରତି କଲେ
ତତେ ନ କରିବି ଦୂର ।
କାହିଁକିରେ ନିନି ବିରସ ମନ, ମୁଁ ଅଛି ତୋ' ଗୋରାଧନ ।

୧୨୧୧୫. ଜାଣିଅଛ ତମେ କେତେ ମନ୍ତର
ଲଗାଇବ ରସ ବିଷ
ଭେଣ୍ଡିଆ ପିଲାର ଗଜରା ନିଶ
ଆସିଲେ ଗୁଲାପି ରହିବା ମିଶି, ତମ ଗାଏଁ ମୁଁ ନ ଆସି ।

୧୨୧୧୬. ଜୀବନ ରତନ ମୋ ଗରା ଧନ
ଶୁଣ ଶୁଣ କଥା ଦୁଇ
ତ'ପରା ଗରାଖ୍ ମ' ଘରେ ଥିଲେ
ବୁଲାଇ ବୁଲନ୍ତି ମୁଇଁ ।
ସିଆଳି ପତର ସିଇଁଲୁ ଦନା, ମ' ପାଖେ ରଇଲେ ସିନା ।

୧୨୧୧୭. ଜେଠ ଚାରିମାସ ଦୁଧୁଲି ମାଲ
ଡଙ୍ଗର୍ଲ୍ଲି ରାଇଜେ ଥିଲା
ଆମ ବାବୁ ଲୋକ ଛିଡ଼ି ପଡ଼ିଲା
ଆମେ ଭାବିବାର ବେଳା
ଭଲାରେ ଦଇବ ଭେଟାଇ ଦେଲା, ଲେଖନ କପାଳେ ଥିଲା ।



## - ଦନାଇ ବଚନ -

୧୨୧୧୮. ଜଣାଣ ମିଠା ଯେବେ ଥାଏ ଭକତି (= ଭକ୍ତି),
ରମଣ ମିଠା ଯେବେ ଥାଏ ଶକତି (= ଶକ୍ତି) ।
ଗୋବର ମିଠା ଯେ ଧାନ ବିଲକୁ,
କାହାଣୀ ମିଠା ଯେ ପିଲାମାନଙ୍କୁ ।
ପୁଅ ମିଠା ଯେବେ ସଭାରେ ବସେ,
ବୋହୂ ମିଠା ଯେବେ ରାନ୍ଧି ପରସେ ।
ବଚନ ମିଠା ଯେ ଟୋକୀ ଶାଳୀକି,
ବେଶଭୂଷା ମିଠା ନବ ବାଳୀକି ।
ବଣିଜ ମିଠା ହେଉଥିଲେ ଲାଭ,
ନ୍ୟାୟ ମିଠା ଦୟା ତା' ସାଙ୍ଗେ ଥିବ ।
ସାହୁକାର ମିଠା ସୁଧ ଛାଡ଼ିଲେ,
କାଞ୍ଜି ମିଠା ତହିଁ ମୂଳା ପଡ଼ିଲେ ।
ସନ୍ୟାସୀକି ମିଠା ହରି ଭଜନ,
ପୁରୁଷକୁ ମିଠା ଧର୍ମ ଅର୍ଜନ ।
ନାଗରକୁ ମିଠା କହରା ନିଶ,
ନାଗରୀକି ମିଠା ମୁରୁକି ହସ ।
ଆଉ କେତେ ମିଠା କହିବି ଭାଳି,
ଦନାଇକୁ ମିଠା ଢଗଢମାଳି ।
(କାହାକୁ କିଏ ମିଠା ସେ ସମ୍ପର୍କରେ ଅନୁଭବସିଦ୍ଧ ବଚନ ।)

୧୨୧୧୯. ଜନନୀର କୋପ, ବାଳକ କ୍ରୋଧ,
ମାଇପର ମାନ, କୁକୁର ନିଦ,
ପୁଆତୀ(=ଜନ୍ମ କରିଥିବା ସ୍ତ୍ରୀ)ର କୁଚ, ବାଟୋଇ ସ୍ନେହ,
ପାଷାଣ୍ଡର ଭକ୍ତି, ପିଲା କଳହ,
ଚଟିଆ ରମଣ, ନାଟୁଆ ଲୀଳା,
ଭୋଦୁଅ ମାସର ବଉଦ ଭେଳା,

କହେ ଦନାଇଟି,
କ୍ଷଣକରେ ଯାଏ ଫସର ଫାଟି ।

୧୨୧୨୦. ଜନ୍ତୁ ଜାନୁଆର ମାରଣା ଶଣ୍ଢ,
ଲାଞ୍ଚୁଆ ମିଛୁଆ ଖଚୁଆ ଭାଣ୍ଡ,
ଖୋସାମତିଆ ଯେ ବିଟପୀ ନାରୀ,
କଳିହୁଡ଼ି ଆଉ ଠକ ବେପାରୀ,
ବାଳ ବିଧବା ଯେ ଠକ ମଇତ୍ର,
କୋରଧୀ ବ୍ରାହ୍ମଣ ଯେ ଭଙ୍ଗା କାଛ,
ଶତ୍ରୁ ସଙ୍ଗେ ଯେ କରେ କାରବାର,
ଟୋକୀ ଶାଳୀ ହୋଇଥିଲେ ସୁନ୍ଦର
ଅବିବାହୀ ଯୁବା ସାବତ ପୁଅ,
ମଦୁଆ, ମିଛୁଆ, ଭୁଷଡ଼ା କୁଅ,
ପହଲି ବଚନେ ଦନାଇ କହି,
ଏମାନଙ୍କ ପାଖ ମାଡ଼ିବ ନାହିଁ ।

(କେଉଁମାନଙ୍କ ପାଖ ମାଡ଼ିବ ନାହିଁ ସେ ସମ୍ପର୍କରେ ଅନୁଭୂତିର ନିରାଟତା ଏଥିରେ ପ୍ରତିପାଦିତ ହୋଇଛି ।)

୧୨୧୨୧. ଜନ୍ମ କଲା ମାତା ହାତ ସୁଆଦ,
ଟୋକୀ ମେଳରେ ଯାତ ସୁଆଦ,
ଖରାଦିନରେ ବାତ(=ପବନ) ସୁଆଦ,
ଶୀତ ଦିନରେ ତାତ ସୁଆଦ,
ଦୁଧ କ୍ଷରୁଥିଲେ ନାତ ସୁଆଦ,
ଦୁଧ କ୍ଷରୁଥିଲେ ମାତ ସୁଆଦ,
ଦନାଇକୁ ପୋଲା(=ମାଗଣା) ଭାତ ସୁଆଦ ।

୧୨୧୨୨. ଜପଇ ଦାଣ୍ଡରେ ତୁଳସୀମାଳି,
ଗ୍ରାମେ ଗ୍ରାମେ ପଶି କରଇ କଳି ।
ଯେମନ୍ତ ଲୋକର ଏମନ୍ତ ଗତି,
କହେ ଦନାଇ ସେ ମିଛ ଭକତି ।

(ଭଣ୍ଡ ବାବାଜୀଙ୍କ ସମ୍ପର୍କରେ ସୂଚନା ।)

୧୨୧୨୩. ଜଳେ ପଶେ ଯେ ନ କରି କଳନା,
ଭୃତ୍ୟକୁ ଠକେ ଯେ କରି ଛଳନା,
ତୂଳା ନ ସୁଆରି(=ଭିଣି) କରେ ବଳଣା,
ମାଛ ରାନ୍ଧଇ କରିଣ ଅଲଣା,
କଖାରୁ ଓପାଡ଼ି ରୁଏ(=ରୋଇବା) ଚଲଣା,
ବୋଲେ ଦନାଇ ଏ ସବୁ ବୋଲଣା(=ନିନ୍ଦା) ।

୧୨୧୨୪. ଜାଦୁଆ ପାଚକ, ବାଦୁଆ ଭାଇ,
କାଦୁଆ ଗଡ଼ିଆ, ଭୋଦୁଆ ଗାଈ (=ଭାଦ୍ରବ ମାସରେ ଜନ୍ମ କରିଥିବା ଗାଈ)
ଭେଦୁଆ (=ଘର ଗୁମର ପଦାରେ ପକେଇବା)ପଡ଼ିଶା,
ଛେଦୁଆ (=ମାରିବା ମନୋବୃତ୍ତି ଯାହାର)ଦାଈ(=ଧାଈ),
ବୋଲେ ଦନାଇ ଅଭାଗ୍ୟକୁ ପାଇ ।

୧୨୧୨୫. ଜାର ପୁରୁଷ ଯେ ପର ନାରୀକୁ,
ଭିକାରୀ ଭିକ୍ଷା, ପୁରୁଷ ଧନକୁ,
ସୁପଣ୍ଡିତ ଶାସ୍ତ୍ର ଆଲୋଚନାକୁ,
ଚୋର ତସ୍କର ପରର ଦ୍ରବ୍ୟକୁ,
ନାରୀ ଭୂଷଣ, ବେଶ୍ୟା ଧନିକକୁ,
ଚଟିଆ ପାରାବତ ମୈଥୁନକୁ,
ରୋଗୀ ଅପଥ୍ୟ, ମହିଷ ଜଳକୁ,
ସଦା ଇଛଇ ଦନାଇ ନାମକୁ ।
(ବୀଟପୁରୁଷ ପରନାରୀକୁ, ପଣ୍ଡିତ ଶାସ୍ତ୍ରାଲୋଚନାକୁ, ନାରୀ ଅଳଙ୍କାରକୁ, ବେଶ୍ୟା ଧନୀକୁ, ଚଟିଆ ମୈଥୁନକୁ, ରୋଗୀ ଅପଥ୍ୟକୁ, ଦନାଇ ଈଶ୍ୱରଙ୍କ ନାମକୁ ରସେ ।)

୧୨୧୨୬. ଛାଳ ଘରେ ନାହିଁ ଘୋର ବରଷା,
ତା ଉପରେ ପୁଣି ଅନ୍ଧାର ନିଶା,
ଘଇତା ସଞ୍ଜକୁ ଖେଳଇ ପଶା,
ରାଣ୍ଡ ନଣନ୍ଦର ହାଣୁଆ ଭାଷା,
ସକାଳ ପହରୁ ଶାଶୂଙ୍କ ରୁଷା,
ବୋଲେ ଦନାଇ ଏ ବୋହୂଙ୍କ ଦଶା ।
(ବୋହୂର ଦୁର୍ଦ୍ଦଶାର ଏକ ବର୍ଣ୍ଣନା - ଅନ୍ଧାର ରାତି, ବର୍ଷା, ସ୍ୱାମୀ ଜୁଆଡ଼ୀ, ନଣନ୍ଦଙ୍କ ଗଞ୍ଜଣା, ଶାଶୂଙ୍କ ରୁଷା, ତହିଁକି ଘରେ ଛାଳ ନାହିଁ ।)

୧୨୧୨୭. ଜ୍ଞାନୀ ବଢ଼ାଏ ମନ୍ତର ବେଦର,
ଅକାଳ ବଢ଼ାଏ ନିଶା ମଦର ।
ସିନିହ (= ସ୍ନେହ) ବଢ଼ଇ କଲେ ଆଦର,
ଘିଅ ଖାଇଲେ ବଢ଼ଇ ଉଦର ।
ଅଭ୍ୟାସ କଲେ ବଢ଼ଇ କଦର,
ମାଉଁଶ ବଢ଼ଇ ହେଲେ ଗୋଦର ।
ମାନ ବଢ଼ାଏ ଯେ ମାନୀ ସୋଦର,
ଦନାଇ ବଢ଼ାଏ ଡଗ ସୁନ୍ଦର ।
(କ'ଣ କଲେ କ'ଣ ବଢ଼େ ତା'ର ଏକ ଚୁମ୍ବକ ବର୍ଣ୍ଣନା )

୧୨୧୨୮. ଜିଆ ଗାଳିବାରୁ ଜାଣିବ ଜମି,
ବ୍ୟବହାରରୁ ଜାଣିବ ମାନୀ (= କୁଳୀନ) ।
କଇଁ ନାଡ଼ରୁ ପାଣି ହୁଏ ଜାଣି,
ପଣ୍ଡିତ ଜାଣିବ କଥା ବଖାଣି ।
ଦନାଇ କହେ ପଦରେ,
ବନ୍ଧୁ ଚିହ୍ନିବ ପଡ଼ିଲେ ପ୍ରମାଦରେ ।
(କେଉଁ ପଦାର୍ଥକୁ କିପରି ଠଉରେଇବ ସେ ସମ୍ପର୍କରେ ସୂଚନା ।)

୧୨୧୨୯. ଜୀବନରେ ରଖି ଶତ୍ରୁକୁ ସାଧିବ
ଜମିକୁ ସାଧିବ କମଣରେ (=ଓଡ଼ ଚାଷରେ) ।
ଅଭ୍ୟାସ ବଶରେ ବିଦ୍ୟାକୁ ସାଧିବ
ବିଷକୁ ସାଧିବ ମାରଣରେ (=ବିଷରେ) ।
(ବିଷସ୍ୟ ବିଷମୌଷଧମ୍) ।
ନାରୀକୁ ସାଧିବ ଉପବାସ ରହି /ଉପାସରେ ଶୋଇ
ଦନାକୁ ସାଧିବ ସାରଣରେ(=ଦୋଷଶୁଦ୍ଧି) ।

୧୨୧୩୦. ଜୀବ ମାତ୍ରକେ ଡରେ ମରଣକୁ,
ଗରିବ ଚାଷୀ ଡରେ କରଣକୁ ।

ଅରକ୍ଷିତର ଯେ ଶୀତକୁ ଡର,
ଧନୀଲୋକ ଡରେ ଚୋର ତସ୍କର ।
ପଣ୍ଡିତ ଦୁରୁଜନେ କରେ ଭୟ,
ପାପ ଡରଇ ନାମ କଲେ ଲୟ ।
ମାଛର ଭୟ ସବୁ ଜନ୍ତୁ ଠାରେ,
ସାପ ନେଉଳକୁ ଦେଖିଲେ ଡରେ ।
ମଶକ ଧୂମକୁ, ରୋଗକୁ ଦେହ,
ଅପାଠୁଆର ଗୁରୁଠାରେ ଭୟ ।
ରାଜ ପୁରୁଷକୁ ଡରଇ ଚୋର,
ଜାର ପୁରୁଷ ଡରେ ସବୁଠାର ।
ମାଙ୍କଡ଼ ବାଟୁଳି ଦେଖିଲେ ଡରେ,
ଖାତକ ସାହୁକୁ ଦେଖିଲେ ଥରେ ।
ପେଚକ ରବିକୁ, ରବି ରାହୁକୁ,
ବିରାଡ଼ି ଦେଖି ମୂଷା ଦୁକୁ ଦୁକୁ ।
ଗୃହବିବାଦକୁ ଡରଇ ମାନୀ,
ଦନାଇ ଡରଇ ଦେଖି ଅଜ୍ଞାନୀ ।
(କିଏ କାହାକୁ ଡରିବା ସମ୍ପର୍କରେ ବଚନ)

୧୨୧୩୧. ଜୀବ ମାତ୍ରକେ ପିତା ଯେ ମରଣ,
ଭିକାରୀକୁ ପିତା ଝିଅ ଜନମ,
ଯୁବତୀ ନାରୀ ବାପଘର ପିତା,
ଟୋକୀକୁ ପିତା ଯେ ବୁଢ଼ା ଘଇତା ।
ବାନ୍ଧବ ପିତା ଯେ ମହର୍ଗ କାଳ,
ଓଲିଆ ଗାଈକି ପିତା ଗୁହାଳ ।
ଓଦା କାଠ ସିନା ପିତା ଚୂଲିକୁ,
ପୁଅ ଜନମ ପିତା ମାହାରୀକୁ ।

ସ୍ଥାବରକୁ ପିତା ଅଟଇ ରତି,
ନାସ୍ତିକକୁ ପିତା ଦେବ ଭକତି ।
ଅଦିଆକୁ ପିତା ଅଟଇ ଦାନ,
ଜରୁଆକୁ ପିତା କାନିକା ଅନ୍ନ,
ଦନାଇକୁ ପିତା ଖଳବଚନ ।
(କାହାକୁ କିଏ ପିତା ଲାଗେ ସେ ସମ୍ପର୍କରେ ବଚନ ।)

୧୨୧୩୨. ଜୁଜ୍ଝରୁ (=ଯୁଦ୍ଧରୁ) ପଛୁଆ ହେବା ବୀର,
ମୁରୁଖ ବାମୁଣ (=ବ୍ରାହ୍ମଣ) ହୀନ ଆଚାର,
ଦୋଚାରୁଣୀ ନାରୀ, ମଡ଼କ ଦେଶ,
ଘୋଟକ ଦେହରେ ନଥିଲେ କେଶ,
ନିଶଖିଆ ବୈଦ୍ୟ,ଲୋଭୀ ବେପାରୀ,
ମହିଷ ମନ୍ଥନ ଯେଉଁ ପୋଖରୀ,
ଭଗ୍ନ ଦେବମୂର୍ତ୍ତି, ପେଟୁ ଚାକର,
ମିଛୁଆ ନାହାକ, କରଣ ଚୋର,
ଏମାନଙ୍କୁ ଯେହୁ ତ୍ୟାଗ କରଇ,
କହେ ଦନାଇ ଦୋଷ ନ ଲାଗଇ ।
(ଯେଉଁମାନଙ୍କୁ ତ୍ୟାଗ କଲେ ଦୋଷାବହ ନୁହେଁ ।)

୧୨୧୩୩. ଲୁଡ଼ା ପାରେ ମୁଣ୍ଡେ ଯେ ବୁଢ଼ୀଦିନେ,
ଲୋଭୀ ସନ୍ୟାସୀ ଯେ କର୍କଶ ବୁଢ଼ାଦିନେ,
ଜ୍ଞାନୀ ହୋଇ ଯେ କରେ ପକ୍ଷପାତ,
ବେଶ୍ୟା ଆସକ୍ତ ହୁଏ ଯେ ପଣ୍ଡିତ,
ଦରିଦ୍ର ହୋଇ ଯେ ହୁଏ ଅତି ମାନୀ,
ଅତି କୃପଣ ଯେବେ ହୁଏ ଧନୀ,
କୁଳବୁଆସୁଣୀ ଯେ ନବରେ ଲାଜ,
ଆଚାର ବିହୀନ ଯେବଣ ଦ୍ୱିଜ,
କଥାକଥାକେ ଯେ କାଢ଼େ ବଡ଼ାଇ,
ଦଣ୍ଡବତ ନାହିଁ ବୋଲେ ଦନାଇ,
(ଏହି ବ୍ୟକ୍ତିବିଶେଷ ସମ୍ମାନ ଓ ପ୍ରଣତିର ଅଯୋଗ୍ୟ ।)

୧୨୧୩୪. ଭୋଗେଁ ନ ମିଳିଲେ ପିତା ଦୁହିତା,
ଅରୁଚି ଧଇଲେ ଅମୃତ ପିତା ।
ବୃଦ୍ଧକୁ ତରୁଣୀ ଅଟଇ ପିତା,
ତୁଣ୍ଡ ଘାଆକୁ ଯେ ପିତା ରାଇତା ।
ସହଜେ ପିତା ଯେ କୁଆମଇତା,
ଦନାଇକୁ ପିତା ଧନସାଇତା ।
(ଅତ୍ୟଧିକ ଧନ ସାଇତା ପିତା ବୋଲି, ପିତା ପଦାର୍ଥର ଉଦାହରଣ ଦେଇ ଏହାର ଯଥାର୍ଥତା ପ୍ରତିପାଦିତ ହୋଇଛି ।)

# ପ୍ରହେଳିକା, ପହଳି, ଢ଼େଗ (ନାଆଁ ଦିଅ)

୧୨୧୩୫. ଜଟାଧାରୀ ଶଙ୍କର, ଭିତରେ ତାଙ୍କ ଝିଙ୍କର
ଝିଙ୍କର ଭିତରେ ରସ ରହିଛି ରସ ଭିତରେ ସାଗର । ..........(ନଡ଼ିଆ)

୧୨୧୩୬. ଜଣଙ୍କ ଉପରେ ଜଣେ ବସେ
ଜଣେ ମାଳି ଜପି ଜପି ଆସେ
ଏ ତିନିହେଁ ହୋଇଲେ ରୁଣ୍ଡ
ତିନି ଜଣଙ୍କର ସତର ମୁଣ୍ଡ ।
(କାର୍ତ୍ତିକ, ମୟୂର, ରାବଣ ।)

୧୨୧୩୭. ଜଣେ ଶୋଇଛି, ଜଣେ ବସିଛି, ଜଣେ ମାଳି ଜପି ଜପି ଆସୁଛି,
ଏ ତିନିହେଁ ହୋଇଲେ ରୁଣ୍ଡ, ତିନି ଜଣଙ୍କର ପନ୍ଦର ମୁଣ୍ଡ;
ତିନିଜଣଙ୍କର ତିରିଶି ଆଖି, କିଏ କହିଦେବ ଦେଖିବା ଦେଖି ।
(କୁମ୍ଭକର୍ଣ୍ଣ ନିକଟରେ ରାବଣ ବସିଛି; ବ୍ରହ୍ମା ଆସି ପହଞ୍ଚିଲେ)

୧୨୧୩୮. ଜନମ କରେ, ପେଟରେ ଭରେ । ..........(ଲୁଣ)

୧୨୧୩୯. ଜନମ କାଳରୁ ମୁଣ୍ଡରେ ଟୋପି, କୃଷ୍ଣ ଅବତାରେ ମୋହିଲେ ଗୋପୀ;
ରାମ ଅବତାରେ ରାବଣ ମାରି; ଆଜି ହୋଇଛି ଆମ ତରକାରୀ
ଏ ନାଆଁଟି କହ ବିଚାରି ।
(ବାଉଁଶ କରଡ଼ି; କୃଷ୍ଣ ଅବତାରରେ ବଂଶୀ, ରାମ ଅବତାରରେ ଧନୁ )

୧୨୧୪୦. ଜନମ କାଳରେ ନଥାଏ ସେତ
ପୂର୍ଣ୍ଣ ବୟସରେ ବଡିଶ ଖ୍ୟାତ
ଢ଼ିଙ୍କି ଚକି ନୁହେଁ ପେଷଣ କରେ
ଆନନ୍ଦ ହୋଇଲେ ଦେଖନ୍ତି ନରେ । ..........(ଦାନ୍ତ)

୧୨୧୪୧. ଜନମ ସ୍ଥାନଟି ଆସାମ ଦେଶରେ
ପତି ବୃଣ୍ଡ ହୋଇଥିଲେ ସେଠାରେ
ଭ୍ରମି ବାହାରିଲେ ଗ୍ରାମ ଗୃହରେ
ଭେଟିଲେ ପାଣି ଓ କ୍ଷୀର ଖଣ୍ଡରେ
ଚାରି ମିତ୍ର ମିଶି ଗରମ ହେଲେ
ଲୋକେ ପାନ ପାତ୍ରେ ଢାଳି ପିଇଲେ । ..........(ଚାହା, କଫି)

୧୨୧୪୨. ଜନମ ହୋଇଣ ସେକ୍ଷଣି ଉଡ଼ଇ,ଉଡ଼ିଲେ ଉଡ଼ଇ ବସାରେ
ଉଡ଼ି ଉଡ଼ି କରି ଆହାର କରଇ ଆହାର ରଖଇ ଶେଷରେ
ଅଣ୍ଡ ତା ନିର୍ମଳ ପକ୍ଷୀ ତା ନିର୍ମଳ ଧାତା କରିନାହିଁ ଜନମ
ଅହର୍ନିଶ ତାର କ୍ରୋଡ଼ରେ ଜନମ ଆହୁରି କଥାଏ ଶୁଣମ
ନଚଳଇ ଅଣ୍ଡ ନଚଳଇ ମୁଣ୍ଡ ନଚଳଇ ପାଦ ତାହାର
ଏ ତିନି ପାଦରୁ ପାଦେ ଊଣା ହେଲେ ବିଷମ ମଣିବେ ଆହାର
ଆହାର ଆହାର ସଂସାର ଆହାର ମନୁଷ୍ୟମାନଙ୍କ ଆହାର
କହେ ଉପଇନ୍ଦ୍ର ଭଞ୍ଜବୀରବର,
ବ୍ରହ୍ମଜ୍ଞାନରେ ଏ ସାର । ..........(ଢେଙ୍କି)

୧୨୧୪୩. ଜନ୍ତୁ ବାଙ୍ଗରା ମୁଣ୍ଡ ଟାଙ୍ଗରା
ଅଗ୍ନି ଦେବତାଙ୍କ ଭାଇ
ଯୋଗ ପଡ଼ିଗଲେ ତାହାଙ୍କ ବ୍ୟତୀତ
ସମସ୍ତଙ୍କୁ ପାରେ ଖାଇ । ..........(ଉଇ)

୧୨୧୪୪. ଜନ୍ମ ପରେ ସେହି ଚାରି ଗୋଡ଼ିଆ
ବଡ଼ ହେଲେ ସେ ଦୁଇ
ବୟସ ଗଲେ ତିନି ଗୋଡ଼ିଆ
କିଏ ସେହି ଜୀବ ଭାଇ । ..........(ମନୁଷ୍ୟ)

୧୨୧୪୫. ଜନ୍ମ ମଧୁର, ମଧ ଖଟା
ଶେଷକୁ ମିଳେ ସାର ଚକଟା ।..........(ଦୁଧ, ଦହି, ଘିଅ)

୧୨୧୪୬. ଜନ୍ମ ହେଲାଦିନୁ ଉଡ଼ି ନ ଉଡ଼ଇ
ବାସରେ ରହି ଗ୍ରାସ କରୁଛି କରଇ । ..........(ଧାନ,ଡିଙ୍କି, ଚାଉଳ)

୧୨୧୪୭. ଜରାସନ୍ଧ ପ୍ରାୟେ ତାହାର ଧାଡ଼ି
ଶିବ ବାହାନ ଭକ୍ଷି ନୁହେ ହାଡ଼ି
ଏ ଢଗ ବିଚାରି, କହି ପଣ୍ଡିତ ଜାଣି ମାଧୁରୀ । ..........(ମଶା )

୧୨୧୪୮ ଜଳକୁ କଣ୍ଟେ, ଶତ୍ରୁକୁ ଆଣ୍ଟେ, ସାଙ୍ଗ ହୋଇଥାଏ ଜଣେ,
ହଉ ପଛକେ ଗବ ଡିମ୍ବିରି ତାକୁ ନ ଛାଡ଼ିବ କ୍ଷଣେ । .......... (ବାଡ଼ି)

୧୨୧୪୯. ଜଳଚର ସେହୁ ବଡ଼ ଉଠିଆ
ଉତରା ପବନ ତାର ଘାଟିଆ
ବହୁତ ସଂଖ୍ୟାରେ ଉଠନ୍ତି ଖରେ
ସୂକ୍ଷ୍ମ ଅସ୍ଥିମାଳ ତାର ଶରୀରେ । ..........(ଇଲିଶ ମାଛ)

୧୨୧୫୦. ଜଳଧର ପଚାରେ ହଳଧରଙ୍କୁ
ଚକ୍ରଧର କିମ୍ପା ମଲେ ?
ସ୍ୱର୍ଗରୁ ପଡ଼ିଲେ ପଞ୍ଚ ପାଣ୍ଡବ
ମାରି ବନବାସ ଗଲେ ।
(ଜଳଧର - ପୋଖରୀ, ହଳଧର - ହଳିଆ, ଚକ୍ରଧର - ନାଗସାପ, ପଞ୍ଚପାଣ୍ଡବ - ଓଉ । ଗଛରୁ ଓଉ ଝଡ଼ି ସାପ ମୁଣ୍ଡରେ ପଡ଼ିଲା । ସାପ ମଲା । )

୧୨୧୫୧. ଜଳ ନୁହେଁ ସେତ ବୁଡ଼ାଏ ଦେହ
ଶରୀର ମଧରେ ଆଣଇ କୋହ
ଅଗ୍ନି ତ ନୁହଁଇ ପୋଡ଼ଇ ଦେହୀ
ପବନ ନୁହଁଇ ଶିରୀ ଶୋଷଇ । .......(ଏହାର ଉତର ଦିଅନ୍ତୁ)

୧୨୧୫୨. ଜଳ ମଧେ ଥାଇ ନଛୁଏଁ ପାଣି
ଜୀବ ଜନ୍ତୁ ନୁହେଁ ସମସ୍ତେ ଜାଣି
ହାତ ଗୋଡ଼ ନାହିଁ ଲାଙ୍ଗୁଡ଼ ଅଛି
ଏକ ଅକ୍ଷରରେ ନାମ ବହିଛି । ..........(ର)

୧୨୧୫୩. ଜଳ ମଧ୍ୟେ ଥାଏ ନ ଛୁଏଁ ପାଣି
ଜୀବ ଜନ୍ତୁ ନୁହେଁ ସମସ୍ତ ଜାଣି
ବର୍ତ୍ତୁଳ ହୋଇ ଲାଙ୍ଗୁଡ଼ ଅଛି
ଏ ତ ବ୍ରହ୍ମାଙ୍କ କୂଟ
କହି ନ ପାରିଲେ ସଭାରୁ ଉଠ । ..........(କଇଁ ବା ପଦ୍ମ )

୧୨୧୫୪. ଜଳ ମଧ୍ୟେ ରହଇ
ଜୀବଜନ୍ତୁ ନୁହଇ
ଏକ ଲାଞ୍ଜ ବହଇ
କହିବକି ଧିଆଇ ? ..........(କଇଁ ବା ପଦ୍ମ )

୧୨୧୫୫. ଜଳରୁ ଜନମ, କାଳିକା ହସ୍ତେ ଛେଦନ,
ସୂର୍ଯ୍ୟପାକ ରନ୍ଧନ, ଘଣ୍ଟି ଟଣ ଟଣ,
କାଉଙ୍କ ବେହରଣ, ଦୁଃଖୀ ଲୋକଙ୍କ ସାଇଁ
ସ୍ୱବଂଶ ଘେନି ଗୋଡ଼ତଳେ ପଡୁଛି -
ପିଠିକି ବିଜେକର ଗୋସାଇଁ ।
(ହେଁସ । ଦାଆରେ ବେରୁଆଁ କଟା ହୋଇ ଖରାରେ ଶୁଖାଯାଏ । ଝୋଟ ଦଉଡ଼ିରେ
ଝିଙ୍କର ଝୁଲା ହୋଇ ହେଁସ ବୁଣାଯାଏ ।)

୧୨୧୫୬. ଜଳରୁ ଜନମ ହୋଇଛି ସେହି
ଶୁଖିଗଲେ ସେହି ଜଳେ ଭାସଇ .......... (ସୋଲ)

୧୨୧୫୭. ଜଳରେ ଅଟଇ ତାହାର ଘର
ଦେହ ମଧ୍ୟେ ଅଛି ଛାଞ୍ଚୁଣୀ ତାର
ଓଲଟି ପଡ଼ଇ ଉପର ତଳ
ସ୍ୱାଦିଷ୍ଟ ଅଟଇ ମାଂସ ଅଙ୍ଗର । ..........(ଚିତଳ ମାଛ)

୧୨୧୫୮. ଜଳରେ ଜଳ ପ୍ରତିଷ୍ଠା
ମଳରେ ମଳ ପ୍ରତିଷ୍ଠା
ବ୍ରାହ୍ମଣେ ଖାଆନ୍ତି ଶୂଦ୍ର ଅଇଁଠା
ଶିବ ଖାଆନ୍ତି ବାଛୁରୀ ନାଳ
ଶ୍ରୀକୃଷ୍ଣ ମୁଣ୍ଡରେ ଶିଖଣ୍ଡୀ ଚୂଳ ।

(ଗଙ୍ଗା ପାଣିରେ କୂଅ, ପୋଖରୀ ପ୍ରତିଷ୍ଠା ହୁଏ । ମଳ ପୋଛି ଦେଲା ପରେ ସ୍ଥାନ ଟି ଗୋବରରେ ଲିପାଯାଏ । ପୁରୋହିତ ବ୍ରାହ୍ମଣ ଶୂଦ୍ରଙ୍କ ଶ୍ରାଦ୍ଧରେ ଉତ୍ସର୍ଗ ହୋଇଥିବା ଚାଉଳ ଖାଆନ୍ତି । ବାଛୁରୀ ପିଇବା ପରେ ଗାଈ ଚିରରୁ ଦୁହାଁ ଦୁଧ ମହାଦେବଙ୍କୁ ଭୋଗ ହୁଏ । ଶ୍ରୀକୃଷ୍ଣଙ୍କ ଶିଖାରେ ମୟୂର ଚୂଳ ଶୋଭା ପାଏ ।)

୧୨୧୫୯. ଜଳ ସ୍ଥଳ ସେହି ଉଭୟଚର
ରସ ଘେନି ଉଦ୍‌ଗାରେ ଅସାର
ଖଗରେ ଫୋପାଡ଼ି ମାରେ ଜୀବକୁ
ଜାଣିଥିଲେ କୁହ ତାର ନାମକୁ । ..........(କୁମ୍ଭୀର)

୧୨୧୬୦. ଜାତି ଓ ଅଜାତି ବାରଣ ନାହିଁ
କିସ ଖାଇଥାନ୍ତି ହାତ ପୁରାଇ । ..........(ମହାପ୍ରସାଦ)

୧୨୧୬୧. ଜୀବକୁ ଅଜୀବ ଝାମ୍ପିଲା
ଜୀବ ତଳ ବଖରାରେ କମ୍ପିଲା । ..........(ପୋଳୁହ ଓ ମାଛ)

୧୨୧୬୨. ଜୀବକୁ ଜୀବ ଝାମ୍ପିଲା
ଜୀବ ତଳ ବଖରାରେ କମ୍ପିଲା । ...........(ମଣିଷ ଓ ମାଛ )

୧୨୧୬୩. ଜୀବକୁ ଝାଁପେ
ଜୀବକୁ ଦେଖିଲେ ଥରହର କାଁପେ
ବିଶାଣହେ ଗୋଡ଼ ତାର ବିଶାଣହେ ଆଖି
ବିଧାତା ଦେଲା ତାକୁ ଉପରେ ପାଟି । ........... (ପୋଳୁହ )

୧୨୧୬୪. ଜୀବକୁ ମାଇଲି, ଜୀବକୁ ଖାଇଲି
ଜୀବ ଯାଇଛନ୍ତି ବୁଲି । ..........(ଖମ୍ବଆଳୁ)

୧୨୧୬୫. ଜୀବନ ବିକଳେ ଖୋଜେ ବାଟକୁ
ଅଜୀବ ଢ଼ାଙ୍କିଛି ଚଉପାଶକୁ । ..........(ମୁଗୁରା ଓ ମାଛ)



# ରୁଢ଼ିପ୍ରୟୋଗ

୧୨୧୬୬. ଜକଡ଼ିବା - ରଖା ହୋଇଥିବା ପଦାର୍ଥ ସାନ୍ଦ୍ର ହେବା; କଠିନ ହେବା । ଜାବୁଡ଼ି କରି ଧରିବା ।

୧୨୧୬୭. ଜକ ମାରିବା - 'ଜଖ'(= ସଜୀବ ପୋତାଧନ)ଉପରେ ହଳଦୀପାଣି ଅଜାଡ଼ି ସୁନାରେ ପରିଣତ କରିବା । ପୋତାଧନ ପାଇଯିବା ।

୧୨୧୬୮. ଜକଲା ମାଡିବା - ଆର୍ଦ୍ର କରିବା/ଓଦା ହେବା ।

୧୨୧୬୯. ଜଖମ୍ ତାଜା କରିବା - ଦୁଃଖ, ଦୁର୍ଦ୍ଦଶାକୁ ଚେତାଇ ଦେବା, ଖୁଣ୍ଟା ମାରିବା, ଖୁଣ୍ଟଣା ଦେବା-କଟା ଘା'ରେ ଚୂନ ଦେବା ଅର୍ଥରେ ।

୧୨୧୭୦. ଜଖମ୍ ଦକ୍‌ଦକ୍ ହେବା - ଘୋର ଯନ୍ତ୍ରଣା, ଅସହନୀୟ ହେବା ।

୧୨୧୭୧. ଜଗତରେ ନାଚିବା - ଜୀବନରେ ନାନାବିଧ କାର୍ଯ୍ୟ କରିବା, ଜୀବନ ବିତେଇବା ।

୧୨୧୭୨. ଜଗତି ମେଢ଼ - ଜଙ୍ଗଲ ମଧ୍ୟରେ ଗୋରୁଙ୍କୁ ନିରାପଦରେ ରାତିରେ ରଖିବା ପାଇଁ ବଡ଼ ଖୁଣ୍ଟମାନ ବେଢ଼ା ହୋଇଥିବା ସ୍ଥାନ, ଯାହା ମଧ୍ୟରେ ଖଣ୍ଡିଏ ମେଲାଘର ମଧ୍ୟ ଥାଏ ।

୧୨୧୭୩. ଜଗତୀତଳ - ପୃଥିବୀ, ଭୂମି, ଭୂପୃଷ୍ଠ ।

୧୨୧୭୪. ଜଗାଇ ମାଧାଇ - ନବଦ୍ୱୀପବାସୀ ମହାପାପୀ ଓ ଦୁଷ୍ଟ ଦୁଇଭାଇ । ଶ୍ରୀ ଚୈତନ୍ୟଙ୍କୁ ପାଇ ତାଙ୍କର ପ୍ରଧାନ ଭକ୍ତ ହୋଇପାରିଥିଲେ ।

୧୨୧୭୫. ଜଗେଇଦେବା - ଅଜ୍ଞାନୀ ବା ଅଜଣା ଲୋକକୁ ବୁଦ୍ଧି ଦେବା ।

୧୨୧୭୬. ଜଙ୍କ ଲାଗିବା - କଳଙ୍କି ଲାଗିବା

୧୨୧୭୭. ଜଙ୍ଗ (ଲଢ଼େଇ) କରିବା - ଲଢ଼େଇ ଲଢ଼ିବା, ଝଗଡ଼ା ଝଞ୍ଜଟ କରିବା ।

୧୨୧୭୮. ଜଙ୍ଗ ଭୂମି ଲାଲ୍ କରିବା - ଘୋର ଯୁଦ୍ଧ କରିବା, ଦୁଇ ଶତ୍ରୁ ପରସ୍ପର ମଧ୍ୟରେ ଭୀଷଣ ଲଢ଼େଇରେ ବ୍ୟାପୃତ ହେବା ।

୧୨୧୭୯. ଜଙ୍ଗଲ ଭିତରେ ରାସ୍ତା ପାଇବା - ଅତ୍ୟଧିକ ଭିଡ଼ଭାଡ଼ ଭିତରୁ ବାହାରି ଆସିବା ।

୧୨୧୮୦. ଜଙ୍ଗଲି ଶାସନ - ଶାରୀରିକ ବଳଦ୍ୱାରା ପରିଚାଳିତ ଶାସନ/ ସାମାଜିକ ନିୟମକୁ ଉପେକ୍ଷା କରୁଥିବା ଶାସନ ବ୍ୟବସ୍ଥା ।

୧୨୧୮୧. ଜଙ୍ଗା ଯବାନ୍ - ହୃଷ୍ଟପୁଷ୍ଟ ଓ ସୁଗଠିତ ଶରୀର ବିଶିଷ୍ଟ ବ୍ୟକ୍ତି ।

୧୨୧୮୨. ଜଘନ କୁପ - ସୁନ୍ଦରୀ ସ୍ତ୍ରୀମାନଙ୍କର କଟି ଦେଶର ପଛ ପାଖରେ ଥିବା ଭଉଁରୀ ଦ୍ୱୟ ।

୧୨୧୮୩. ଜଘନଚପଳା - ଅସତୀ/ ନଷ୍ଟଚରିତ୍ରା/ କୁଳଟା/ନର୍ତ୍ତକୀ/ କାମୁକୀ ନାରୀ ।

୧୨୧୮୪. ଜଙ୍ଘାବୃତ୍ତି - ଚାଲିକରି ଯିବା ଆସିବାର ବ୍ୟବସାୟ । ଦୌଡ଼ିକରି ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାର ଧନ୍ଦା ।

୧୨୧୮୫. ଜଜ୍‌ଗିରି କରିବା - ଅନ୍ୟ କଥା ବା କାମରେ ଦଖଲ ଦେବା ।

୧୨୧୮୬. ଜଞ୍ଜିର ଗଳାରେ ପଡ଼ିବା - ଜଞ୍ଜାଳରେ ପଡ଼ିବା ।

୧୨୧୮୭. ଜଞ୍ଜିର ପକାଇବା - ବଶ୍ୟତାକୁ ଆଣିବା, ଅଧିନକୁ ଆଣିବା, ଅଧିକାର ସାବ୍ୟସ୍ତ କରିବା ।

୧୨୧୮୮. ଜଞ୍ଜିର ପକାଇବା/ଲଗାଇବା - ଶିକୁଳି ଲଗାଇ କବାଟ ବନ୍ଦ କରିଦେବା, ଶିକୁଳିରେ ବାନ୍ଧିପକାଇବା ।

୧୨୧୮୯. ଜଞ୍ଜାଳରୁ ମୁକ୍ତି - ସାଂସାରିକ ମୋହ, ମାୟାରୁ ମୁକ୍ତି ଲାଭ ଅଥବା ମୃତ୍ୟୁ ।

୧୨୧୯୦. ଜଟଜଟିଆ - ବନ୍ୟ ଛଣପଟ, ଏକ ପ୍ରକାର ତୃଣ ।

୧୨୧୯୧. ଜଟାଇବା - ଭଣ୍ଡିବା/ ଭୁଲାଇବା/ ପ୍ରତାରଣା କରିବା/ ଠକାଇବା ।

୧୨୧୯୨. ଜଡ଼ ଭରତ - ମହାମୂର୍ଖ ।

୧୨୧୯୩. ଜଡ଼ର ଶେଷ ପର୍ଯ୍ୟନ୍ତ ପହଞ୍ଚିବା - ଘଟଣାର ପୁଙ୍ଖାନୁପୁଙ୍ଖ ଖବର ନେବା ।

୧୨୧୯୪. ଜଡ଼ରେ କୁରାଢ଼ି ମାରିବା - ଆଧାର ନଷ୍ଟ କରିବା ବା ନଷ୍ଟ କରିବାକୁ ଚେଷ୍ଟା କରିବା ।

୧୨୧୯୫. ଜଡ଼ ହଲିଯିବା - ସ୍ଥାୟିତ୍ୱ ଖତମ ହୋଇଯିବା, କମ୍‌ଜୋର ହୋଇଯିବା ।

୧୨୧୯୬. ଜଡ଼ାତେଲ ମେଣ୍ଢାବାଳ - ଅଭେଦ୍ୟ ବା ଘନିଷ୍ଠ ସମ୍ପର୍କ ।

୧୨୧୯୭. ଜନକଜନନୀ - ପିତାମାତା ।

୧୨୧୯୮. ଜନକ-ତନୟା - ବୈଦେହୀ/ ସୀତା

୧୨୧୯୯. ଜନକାତ୍ମଜା - ଜନକତନୟା/ ଜନକ ନନ୍ଦିନୀ/ ସୀତା ।

୧୨୨୦୦. ଜନଙ୍ଗମ - ଚଣ୍ଡାଳ

୧୨୨୦୧. ଜନଚର୍ଚ୍ଚା - ଜନପ୍ରବାଦ/ ଗୁଜବ/ ଜନଶ୍ରୁତି/ ଜନରବ ।

୧୨୨୦୨. ଜନଚକ୍ଷୁ - ସୂର୍ଯ୍ୟ

୧୨୨୦୩. ଜନଜାତି - ଆଦିବାସୀ/ ଗିରିଜନ/ ଆଦିମ ଅଧିବାସୀ ।

୧୨୨୦୪. ଜନଦେବ - ରାଜା/ ନରପତି । ମହାଭାରତରେ ବର୍ଣ୍ଣିତ ମିଥିଳାର ଜଣେ ଜିଜ୍ଞାସୁ ରାଜା । ତାଙ୍କର ନାମ 'ଜନଦେବ' ଥିଲା ।

୧୨୨୦୫. ଜନନ ବିପର୍ଯ୍ୟୟ - ଉତ୍ପତ୍ତି କ୍ରମର ବୈପରୀତ୍ୟ,ପୁରୁଷ ପରମ୍ପରା ।

୧୨୨୦୬. ଜନନାଶୌଚ - ସୂତିକାଶୌଚ ।

୧୨୨୦୭. ଜନମ ଜନମ - ସବୁଦିନ, ପ୍ରତ୍ୟେକ ଜନ୍ମରେ, ସୃଷ୍ଟି ଆରମ୍ଭରୁ ପ୍ରଳୟ ପର୍ଯ୍ୟନ୍ତ ।

୧୨୨୦୮. ଜନମପାଣି - ନବଜାତ ଶିଶୁର ପ୍ରଥମ ସ୍ନାନ ।

୧୨୨୦୯. ଜନମବାଉଳା - ଜନ୍ମରୁ ନିର୍ବୋଧ ।

୧୨୨୧୦. ଜନମ ଯାକର ରୋଜଗାର - ଜୀବନ କାଳ ମଧ୍ୟରେ ଅର୍ଜିତ ଚଳ ଅଚଳ ସମ୍ପତ୍ତି, ଅର୍ଜିତ ପ୍ରତିଷ୍ଠା, ଜୀବନ କାଳର ଅନୁଭବ ।

୧୨୨୧୧. ଜନମ ସଫଳ/ ସାର୍ଥକ କରିବା - ଜୀବନ କାଳରେ ସର୍ବୋତ୍କୃଷ୍ଟ କାମ କରିବା ।

୧୨୨୧୨. ଜନଲୋକ - ହିନ୍ଦୁ ପୁରାଣ ମତରେ ସପ୍ତ ଭୁବନ ମଧ୍ୟରୁ ପଞ୍ଚମ ଭୁବନ । (ସପ୍ତଲୋକ - ଭୂଃ, ଭୁବଃ, ସ୍ୱଃ, ମହଃ, ଜନଃ, ତପଃ, ସତ୍ୟଃ )

୧୨୨୧୩. ଜନ୍ମ ଅକାରଣ ହେବା - ଜୀବନରେ ଭଲ କାମ ନ କରିବା ।

୧୨୨୧୪. ଜନ୍ମପତ୍ରିକା - ଜାତକ/କୋଷ୍ଠୀ ।

୧୨୨୧୫. ଜନ୍ମସିଦ୍ଧ ଅଧିକାରୀ ହେବା - ନିର୍ବିବାଦ ଅଧିକାର, ସ୍ୱାଭାବିକ କର୍ତ୍ତବ୍ୟ ବା ଜିମାଦାରୀ ।

୧୨୨୧୬. ଜନାଜାତି ଭଉଁରିଆ - ଯେଉଁ ଭଉଁରିଆ ବା ରେକର୍ଡ଼ରେ ପ୍ରତ୍ୟେକ କିତା ଜମିର ମାପ ଲେଖାଥାଏ ।

୧୨୨୧୭. ଜନାନାମହଲ - ଅନ୍ତଃପୁର ।

୧୨୨୧୮. ଜନାବ୍ କରିବା - ଖାଇବା ।

୧୨୨୧୯. ଜନ୍ତାଜନ୍ତି - ବହୁ ଲୋକଙ୍କ ଦେହ ପରସ୍ପର ଲଗାଲଗି/ ଠେଲାଠେଲି ହେବାର ଦଳିବା କାମ/ ଚକେଟାଚକେଟି ।

୧୨୨୨୦. ଜନ୍ତୁପତି - ଯମ/ଚିତ୍ରଗୁପ୍ତ-ଯମଙ୍କ ପାଞ୍ଜିଆ ।

୧୨୨୨୧. ଜନ୍ତୁରାଜ/ଜନ୍ତୁରାଣ / ଜନ୍ତୁରାୟ/ଜନ୍ତୁସାଇଁ - ଯମ

୧୨୨୨୨. ଜନ୍ମାବଚ୍ଛିନ୍ନ - ଜୀବନକାଳ/ଜୀବନବ୍ୟାପୀ ।

୧୨୨୨୩. ଜବରଅଠା ସିହା - ଦୈନିକ ଆୟବ୍ୟୟ ହିସାବ ବହି ।

୧୨୨୨୪. ଜବର୍‌ଜଂଘ - ଅସୁନ୍ଦର ଭାବରେ ଗୁଡ଼ାଏ ଲୁଗାପଟା ଦେହରେ ଗୁଡ଼ାଇ ହୋଇଥିବା/ବଳିଷ୍ଠ ପଦ ଓ ଜଙ୍ଘବିଶିଷ୍ଟ ବ୍ୟକ୍ତି ।

୧୨୨୨୫. ଜବାଇ କରିବା - ହଲାଲ (ମୁସଲମାନଙ୍କ ଦ୍ୱାରା କୋରାନ୍ ମତେ ପଶୁଚ୍ଛେଦନ)/ହତ୍ୟା କରିବା ।

୧୨୨୨୬. ଜବାନ୍ କଇଁଚି ପରି ଚଲାଇବା - ମୁଖର ହେବା ।

୧୨୨୨୭. ଜବାନକୁ ଆଣିବା - ଚର୍ଚ୍ଚା କରିବା ।

୧୨୨୨୮. ଜବାନ୍‌କୁ ଆସିବା - ମୁହଁରୁ ବାହାରିବା ବା ବାହାର କରିବା ।

୧୨୨୨୯. ଜବାନ୍ ଖର୍ଚ୍ଚ କରିବା - କିଛି ନା କିଛି କହିବା ।

୧୨୨୩୦. ଜବାନ୍ ଖୋଲିବା - ମାଗିବା, ରହସ୍ୟ ଉଦ୍‌ଘାଟନ କରିବା, ବିରୋଧ କରିବା ।

୧୨୨୩୧. ଜବାନଗିରି କରିବା - ଗୋଇନ୍ଦାଗିରି କରିବା, ଗୁପ୍ତଚର ବୃତ୍ତି କରିବା ।

୧୨୨୩୨. ଜବାନ୍ ଚାଟିବା - ଓଠ ଚାଟିବା ।

୧୨୨୩୩. ଜବାନ୍ ଚାଲିବା /ଚଲେଇବା - ମିଛ ସତ କହିବା,ଆଛେ ବାଛେ ବକିବା ।

୧୨୨୩୪. ଜବାନ୍ ଛାଡ଼ିବା - କହିଥିବା କଥାକୁ ଅସ୍ୱୀକାର କରିବା ।

୧୨୨୩୫. ଜବାନ୍ ଦେବା - ନିଶ୍ଚିତ ଭାବେ କଥା ଦେବା/ସ୍ଥିର ଜବାବ ଦେବା/ ମୌଖିକ ଅଙ୍ଗୀକାର କରିବା ।

୧୨୨୩୬. ଜବାନ୍ ପାଲଟାଇବା (ବଦଳାଇବା) - କଥା ଦେଇ ଦୂରେଇ ଯିବା ।

୧୨୨୩୭. ଜବାନ୍ ବନ୍ଦ ରଖିବା - ଚୁପ୍ ରହିବା ।

୧୨୨୩୮. ଜବାନ୍‌ବନ୍ଦୀ - ସାକ୍ଷୀ ବା ପକ୍ଷର କଥିତ ପ୍ରମାଣ ।

୧୨୨୩୯. ଜବାନ୍‌ବନ୍ଦୀ କରିବା - ସାକ୍ଷ୍ୟ ଦେବା ।

୧୨୨୪୦. ଜବାନ୍ ରଖିବା - ପ୍ରତିଶ୍ରୁତି ରକ୍ଷା କରିବା ।

୧୨୨୪୧. ଜବାନରେ ରଖିବା - ଚାଖିବା, ମନେ ରଖିବା ।

୧୨୨୪୨. ଜବାନରେ ଲଗାମ ନଦେବା - କଟୁଭାଷୀ ହେବା-ଅନାବଶ୍ୟକ ସ୍ଥଳେ ସ୍ପଷ୍ଟବାଦୀ ହେବା, ଅଶିଷ୍ଟତାରେ କଥା କହିବା ।

୧୨୨୪୩. ଜବାନ୍ ଶୁଖିଯିବା - ଅତ୍ୟଧିକ ତୃଷାର୍ତ୍ତ ହେବା, ଭୟ ବା ଆଶଙ୍କାରେ ପାଟିରୁ କଥା ନ ବାହାରିବା ।

୧୨୨୪୪. ଜବାନ୍ ସିଲ୍ ହୋଇଯିବା - ମୁହଁରୁ କଥା ନବାହାରିବା ।

୧୨୨୪୫. ଜବାନ୍ ହେବା - ଯୁବାବସ୍ଥ ଆସିବା, ଭାରତୀୟ ସୈନିକ ହେବା ।

୧୨୨୪୬. ଜବାନୀ ଆସିବା - ଯୁବବସ୍ଥାର ପ୍ରାରମ୍ଭ,ବାଲ୍ୟାବସ୍ଥା ଅତିବାହିତ ହୋଇଯିବା ।

୧୨୨୪୭. ଜବାନୀ ଉତୁରିଯିବା - ଯୁବାବସ୍ଥାଗତ ହେବା, ପ୍ରୌଢ଼ାବସ୍ଥା ଆସିବା ।

୧୨୨୪୮. ଜବାନୀ ଦେଖେଇବା - ଶକ୍ତିପ୍ରଦର୍ଶନ କରିବା ।

୧୨୨୪୯. ଜବାନୀ ଫାଟିପଡ଼ିବା - ଯୁବାବସ୍ଥା ବିକଶିତ ହେବା, ଯୁବାବସ୍ଥାରସ୍ପଷ୍ଟ ଚିହ୍ନ ଶରୀରରେ ଦେଖାଦେବା ।

୧୨୨୫୦. ଜବାନୀ ବିତିଯିବା - ଯୁବାବସ୍ଥାରଦିନ ଶେଷ ହୋଇଯିବା ।

୧୨୨୫୧. ଜବାନୀର ନିଆଁ - ଯୁବାବସ୍ଥାର ଉତ୍ସାହ ।

୧୨୨୫୨. ଜବାବ୍ ଦେବା - କଥାଦେବା, ବାରଣ କରିଦେବା ।

୧୨୨୫୩. ଜବାବ୍ ମିଳିବା - ସମୁଚିତ ଉତ୍ତର ମିଳିଯିବା ।

୧୨୨୫୪. ଜବାବ୍ ସୁଆଲ୍ - ଉତ୍ତର ପ୍ରତ୍ୟୁତ୍ତର/ପ୍ରଶ୍ନୋତ୍ତର । ମକଦ୍ଦମାର ପ୍ରମାଣ ଗୃହୀତ ହେବାପରେ ଉଭୟ ପକ୍ଷର ଓକିଲଙ୍କର କୋର୍ଟ ଆଗରେ ବାଦାନୁବାଦ; ଯୁକ୍ତିତର୍କ ତଥା ବାଦବିବାଦ ।

୧୨୨୫୫. ଜମଘଟ ଯୁଟିବା /ଲାଗିବା - ଅନେକ ଲୋକ ଗୋଟିଏ ସ୍ଥାନରେ ଏକତ୍ରିତ ହେବା ।

୧୨୨୫୬. ଜମ୍ଭଭେଦୀ - ଇନ୍ଦ୍ର/ବଜ୍ର । ଜମ୍ଭଭେଦନ/ଜମ୍ଭରିପୁ ।

୧୨୨୫୭. ଜମାଉତ୍/ଜମାତ୍/ଜମାଏତ୍/ଜମାଓତ୍/ଜମାୟତ୍ - ବହୁଲୋକଙ୍କ ମିଳନ/ତୀର୍ଥପର୍ଯ୍ୟଟକ/ହିନ୍ଦୁ ବୈରାଗୀ ଦଳ ବିଶେଷ।

୧୨୨୫୮. ଜମାଉତ୍‌ବସ୍ତୁ - ଅବୈଧ ଜନତା/ବେ-ଆଇନ୍ ଜନତା।

୧୨୨୫୯. ଜମାନବିସ୍ - ଜମିଦାରୀ ସିରସ୍ତାରେ ପ୍ରଜାମାନଙ୍କ ଜମିଜମାର ହିସାବ ଲେଖିବାପାଇଁ ନିଯୁକ୍ତ କର୍ମଚାରୀ।

୧୨୨୬୦. ଜମାନା ଆସିବା - ଅନୁକୂଳ ସମୟ ଆସିବା, ଅବସର ମିଳିବା।

୧୨୨୬୧. ଜମାନାର ହାୱା ଲାଗିବା - ଦୁନିଆର ଚାଲିଚଳନକୁ ଅନୁକରଣ କରିବା।

୧୨୨୬୨. ଜମାନାରୁ ଉଠିଯିବା - ଚର୍ଚ୍ଚା ବନ୍ଦ ହୋଇଯିବା, ମରିଯିବା।

୧୨୨୬୩. ଜମ୍ଭାଏଲ୍ ଦାଁତ - ପେଷକ ଦାନ୍ତ/ କଳଦାନ୍ତ

୧୨୨୬୪. ଜମ୍ଭାରାତି - ଇନ୍ଦ୍ର/ବଜ୍ର। ଅଗ୍ନି/ନିଆଁ।

୧୨୨୬୫. ଜମ୍ଭାରାତି ମଣି - ଇନ୍ଦ୍ରନୀଳ ମଣି।

୧୨୨୬୬. ଜମି ଉଠିଆ ହେବା - ଚାଷ ଜମି ଠିକାରେ/ଭାଗରେ ଦେବା।

୧୨୨୬୭. ଜମିଏତ୍ ଉଲେମା - ସଭା/ ସମ୍ମିଳନୀ।

୧୨୨୬୮. ଜମିନ୍ ଆସମାନ କରିବା - ହୋ,ହଲ୍ଲା କରିବା।

୧୨୨୬୯. ଜମିନ୍ ଆସ୍ମାନ୍ - ମର୍ତ୍ତ୍ୟ ଓ ସ୍ୱର୍ଗ/ ପୃଥିବୀ ଓ ଆକାଶ।

୧୨୨୭୦. ଜମିନ୍ ଆସମାନରେ ନ ଅଣ୍ଟିବା - ଅବିଶ୍ୱସନୀୟ ଆଧିକ୍ୟ।

୧୨୨୭୧. ଜମ୍ବୁଜଳ - ଜାମୁଗଛରୁ ଖସି ପଡୁଥିବା ବର୍ଷାଜଳ।

୧୨୨୭୨. ଜମ୍ବୁଜମ୍ଭାଳ/ଜମ୍ବୁନଦସାର - ସୁବର୍ଣ୍ଣ/ ସୁନା।

୧୨୨୭୩. ଜମ୍ବୁନଦ ଗୋରୀ - ସୁବର୍ଣ୍ଣ ପରି କାନ୍ତିବିଶିଷ୍ଟା।

୧୨୨୭୪. ଜମ୍ବୁମାର୍ଗ - ପୁଷ୍କରସ୍ଥ ତୀର୍ଥବିଶେଷ।

୧୨୨୭୫. ଜମ୍ବୁମୁହାଁ - ଯାହାର ମୁହଁ ଭାଲୁ ପରି ଓ ଓଠ ଗୋଜିଆ।

୧୨୨୭୬. ଜର ଖଇ ଫୁଟିବା / ଦିହରେ ଖଇ ଫୁଟିବା - ରୋଗୀର ଶରୀରରେ ଜ୍ୱରର ତାପ ଅତ୍ୟଧିକ ହେବା।

୧୨୨୭୭. ଜରତ୍‌କାରୁପତ୍ନୀ - ମନସା ଦେବୀ।

୧୨୨୭୮. ଜରଦ୍‌ଗବ - ବୁଢ଼ା ଓ ହଡ଼ା ଷଣ୍ଢ / ନିକମା ମଣିଷ/ହିତୋପଦେଶ ବର୍ଣ୍ଣିତ ବୁଢ଼ା ଶାଗୁଣାର ନାମ 'ଜରଦ୍‌ଗବ'।

୧୨୨୭୯. ଢଳଢଳ କରି ଚାହିଁବା/ ଢଳଢଳ ଚାହିଁବା - ଏକ ଦୃଷ୍ଟିରେ ଚାହିଁବା ।

୧୨୨୮୦. ଢଳଢଳା ମାଣିକୀ - ନିର୍ଲ୍ଲଜ୍ଜା ସ୍ତ୍ରୀ ।

୧୨୨୮୧. ଢଳଢଳାମୁହାଁ - ଅତି ନିର୍ଲ୍ଲଜ୍ଜ

୧୨୨୮୨. ଢଳଢଳିଆ - ଢଳକା /ଯେଉଁ ହାଣ୍ଡିରେ ଛିଦ୍ର ଥାଏ/ପାଣ୍ଡୁ, ଶୋଥ, ଜର ଆଦି ଯୋଗୁଁ ଆଖି,ମୁହଁ, ଗାଲ ଫୁଲୁକା ଦିଶୁଥିବା ।

୧୨୨୮୩. ଢଳଦଗମ୍ଭୀର - ମେଘ ଗର୍ଜନ ପରି ଗମ୍ଭୀର ସ୍ୱର ।

୧୨୨୮୪. ଢଳନ୍ତା ନିଆଁରେ କୁଟାପକାଇବା - କ୍ରୋଧ ବା ବିରକ୍ତିରେ ଉତ୍ତେଜିତ ହେବା ଓ ସେମନ୍ତୁ ବଢ଼ାଇବା ଭଳି କୌଣସି କାର୍ଯ୍ୟ କରିବା ।

୧୨୨୮୫. ଢଳପାନି - ଛାତ୍ରକୁ ମିଳୁଥିବା ମାସିକ ଅର୍ଥ ସାହାଯ୍ୟ; ଛାତ୍ରବୃତ୍ତି ।

୧୨୨୮୬. ଢଳମାତୃକା - ଢଳରେ ବାସ କରୁଥିବା ୭ଟି ଦେବୀ - ମତ୍ସ୍ୟ, କୂର୍ମୀ, ବାରାହୀ, ଦର୍ଦ୍ଦୁରୀ, ମକରୀ, ଜଳୁକା ଓ ତନ୍ତୁକା ।

୧୨୨୮୭. ଢଳମାର୍ଜ୍ଜାର - ଓଧ ।

୧୨୨୮୮. ଢଳମାନୁଷ - ଏକ କଳ୍ପିତ ଢଳଢନ୍ତୁ ଯାହାର ଅଣ୍ଟା ପାଖରୁ ଉପରିଭାଗ ମନୁଷ୍ୟପର ଓ ତଳଅଂଶ ମାଛ ପରି ।

୧୨୨୮୯. ଢଳମୁକ୍ - ମେଘ ।

୧୨୨୯୦. ଢଳମୂର୍ତ୍ତିକା - କରକା/ କୁଆପଥର ।

୧୨୨୯୧. ଢଳରେ ଢଳ ମିଶିବା - ଅଧିକରୁ ଅଧିକ ହେବା, ଧନ ବାନ ଲୋକ ଅଧିକ ଧନୀ ହେବା ।

୧୨୨୯୨. ଢଳରେ ବୁଡ଼ିଯାଉଥିବା ଲୋକର ପାଣିଫୋଟକାକୁ ଆଶ୍ରା - ବିପଦରୁ ଉଦ୍ଧାର ପାଇବା ପାଇଁ ମୂଲ୍ୟହୀନ ବସ୍ତୁର ସାହାଯ୍ୟ ମଧ ଲୋଡ଼ା ଯାଇଥାଏ । ଯେପରି - ଘରପୋଡ଼ିରୁ କୁଟା ଖିଏ । ନାହିଁ ମାମୁଠାରୁ କଣାମାମୁ ଭଲ, ବାଆକୁ ବତା ।

୧୨୨୯୩. ଢଳ ସର୍ପିଣୀ - ଜୋକ

୧୨୨୯୪. ଢଳହାସ - ଫେଣ ।

୧୨୨୯୫. ଜଳ୍ପନା କଳ୍ପନା - କୌଣସି କାର୍ଯ୍ୟ କରିବା ନିମନ୍ତେ ମୁହଁରେ ପ୍ରକାଶ କରିବା ଓ ମନରେ ଚିନ୍ତା କରିବା ।

୧୨୨୯୬. ଜଳାକବାଟି - ଝରକା/ ଗବାକ୍ଷ ।

୧୨୨୯୭. ଜଳାଗବାକ୍ଷ - ଜଳାକବାଟ/ ଝରକା ।

୧୨୨୯୮. ଜଳି-ପୋଡ଼ିଯିବା - ଅତ୍ୟନ୍ତ କ୍ରୋଧିତ ହେବା ।

୧୨୨୯୯. ଜଳିଯିବା - ନାରାଜ ହେବା, ଦୁଃଖୀ, ଚିନ୍ତିତ ବା ଅସ୍ଥିର ହେବା ।

୧୨୩୦୦. ଜଳେଇ ପୋଡ଼େଇ ମାରିବା - ଜାଳିପୋଡ଼ି ମାରିବା; ନିର୍ଯ୍ୟାତନା ଦେବା; ବହୁତ ଦୁଃଖ ଦେବା ।

୧୨୩୦୧. ଜଳୋଚ୍ଛ୍ୱାସ - ଜୁଆର/ଢେଉ ।

୧୨୩୦୨. ଜହର ପିଇବା - ଆତ୍ମଘାତୀ ହେବା, ଅତ୍ୟଧିକ କ୍ରୋଧକୁ ଚାପିରଖି ଚୁପ୍‌ଚାପ ରହିବା ।

୧୨୩୦୩. ଜହରବ୍ରତ - ରାଜପୁତ ରମଣୀମାନଙ୍କର ସତୀତ୍ୱ ରକ୍ଷା କରିବା ନିମନ୍ତେ ଅଗ୍ନିକୁଣ୍ଡରେ ଝାସଦେବା ବ୍ରତ ।

୧୨୩୦୪. ଜହର ବୁଣିବା - ଅନିଷ୍ଟ କରିବା, ଲଢ଼େଇ-ଝଗଡ଼ା ଲଗାଇବା ।

୧୨୩୦୫. ଜହରି ଲଙ୍କାମରିଚ - ଭାରି ରାଗୁଆ ଧାନୁଆଁ ଲଙ୍କାମରିଚ ।

୧୨୩୦୬. ଜହ୍ନ କାଛି ଲାଗିବା - ଚନ୍ଦ୍ର ପ୍ରକୃତରେ ଅସ୍ତ ନହୋଇ, ଅସ୍ତାଚଳଗାମୀ ହୋଇ ମଳିନ ପଡ଼ିବା ।

୧୨୩୦୭. ଜହ୍ନ ବୁଢ଼ା ହୋଇଯିବା - ଚାନ୍ଦ ବୁଢ଼ା ହୋଇଯିବା/ଚାନ୍ଦ ପୂଜା ସମୟ ଗଡ଼ିଯିବା ।

୧୨୩୦୮. ଜହ୍ନିଖାଇ - ଏକ ଦେବୀ ପ୍ରତିମା/ଗାଳି ବିଶେଷ ।

୧୨୩୦୯. ଜହ୍ନି ଫୁଲ ପରି ଆୟୁଷ ପାଇବା - ଅଳ୍ପାୟୁ ହେବା

୧୨୩୧୦. ଜହ୍ନିମଞ୍ଜି ପରି ଗୋରା - ଜହ୍ନି ମଞ୍ଜିପରି ଘୋର କୃଷ୍ଣବର୍ଣ୍ଣ ଚର୍ମ ବିଶିଷ୍ଟ ।

୧୨୩୧୧. ଜହ୍ନୁ ଆଶ୍ରମ - ପ୍ରୟାଗ ତୀର୍ଥ ।

୧୨୩୧୨. ଜୟନ୍ତୀ ତୀର୍ଥ - ହିନ୍ଦୁମାନଙ୍କର ତୀର୍ଥ ବିଶେଷ ।

୧୨୩୧୩. ଜୟନ୍ତୀ କ୍ଷେତ୍ର - ଆଧୁନିକ ମୁଖଲିଙ୍ଗର ପୁରାତନ ନାମ ।

| | | |
|---|---|---|
| ୧୨୩୧୪. | ଜଳ୍‌ଜଳୁଆ | - ଅସ୍ପଷ୍ଟ ଭାବରେ ଦେଖାଯିବା/ଢାଲ୍‌ଢାଲୁଆ । |
| ୧୨୩୧୫. | ଜ୍ୱଳନ୍ତ ଅଗ୍ନି | - ବିପଦଜନକ ସ୍ଥିତି, ଭୟଙ୍କର ବିପତ୍ତି । |
| ୧୨୩୧୬. | ଜ୍ୱଳନ୍ତ ଅଗ୍ନିରେ ପାଣି ଢାଳିବା | - ନିଆଁ ଲିଭାଇବା, କ୍ରୋଧକୁ ଶାନ୍ତ କରିବା । |
| ୧୨୩୧୭. | ଜାକିଜାକି ହେବା | - କୌଣସି କାର୍ଯ୍ୟ କରିବାକୁ ପଶ୍ଚାଦ୍‌ପଦ ହେବା ବା କୁଣ୍ଠିତ ହେବା । |
| ୧୨୩୧୮ | ଜାକିଜୁକି ହେବା | - ଦେହକୁ ସଙ୍କୁଚିତ କରିବା/ଜାକିହେବା/ବ୍ୟୟ କରିବାକୁ କୁଣ୍ଠିତ ହେବା । |
| ୧୨୩୧୯. | ଜାଗର ଜାଳିବା | - ଶିବରାତ୍ରିର ରାତିରେ ମହାଦେବଙ୍କ ନିକଟରେ ଦୀପ ଜାଳି ନିଜେ ଉଜାଗର ହୋଇ ଜଗି ବସିବା । |
| ୧୨୩୨୦. | ଜାଗା କରିବା | - ଜମି ଜାଗା କିଣିବା, କାହାରି ମନରେ ବିଶ୍ୱାସ ବା ଭଲ ପାଇବାର ସ୍ଥାନ କରିନେବା । |
| ୧୨୩୨୧. | ଜାଗା ଖାଲି କରିବା ବା ଛାଡ଼ିବା | - ଚାକିରୀ ଛାଡ଼ିଦେବା, ଖସିଯିବା, ଅନ୍ୟ ପାଇଁ ଜାଗା ଛାଡ଼ିଦେବା । |
| ୧୨୩୨୨. | ଜାଗା ଜାଗାର ପାଣି ପିଇବା | - ବିଭିନ୍ନ ପରିସ୍ଥିତି ସହିତ ଖାପ ଖୁଆଇବା ବା ଅଭିଜ୍ଞତା ଅର୍ଜନ କରିଥିବା । |
| ୧୨୩୨୩. | ଜାଗା ଦେବା | - ରହିବାକୁ ସ୍ଥାନ ଦେବା, ଚାକିରୀ ଦେବା । |
| ୧୨୩୨୪. | ଜାଗା ବନେଇବା | - ନିଜକୁ ଯୋଗ୍ୟ ବନେଇବା, ଆବଶ୍ୟକତା ପ୍ରତିପାଦିତ କରିବା । |
| ୧୨୩୨୫. | ଜାଗା ବର୍ ଜାଗା | - ସବୁଠାରେ । |
| ୧୨୩୨୬. | ଜାଗାରେ ରହିବା | - ଯଥାଯୋଗ୍ୟ ସ୍ଥାନରେ ରହିବା, ନ୍ୟାୟୋଚିତ କର୍ତ୍ତବ୍ୟପରାୟଣ ହେବା । |
| ୧୨୩୨୭. | ଜାଗିଲାବେଳକୁ ସକାଳ | - ଜୀବନଯାକ ବେପରୁଆ ରହିବା । |
| ୧୨୩୨୮. | ଜାଗୁଳାଇ ପଞ୍ଚମୀ | - ଶ୍ରାବଣ ଶୁକ୍ଳ ପଞ୍ଚମୀ, ଜାଗ୍ରତ୍‌ଗୌରୀ ପଞ୍ଚମୀ । |
| ୧୨୩୨୯. | ଜାଜ୍ଜୁଲୁ ଜାଜ୍ଜୁଲୁ | - ରାତି ପାହି ଆସିବା/ ରାତି ଶେଷ ହୋଇ ଆସିବା । |
| ୧୨୩୩୦. | ଜାଡୁଆ ଗୋସାଇଁ | - ଶିବ । |
| ୧୨୩୩୧. | ଜାଣନ୍ତା ପ୍ରମାଣେ | - ଜାଣତରେ/ ଜ୍ଞାତସାରରେ । |

୧୨୩୩୨. ଜାଣିଚତୁର - ଜାଣିସିଆଣା/ଅତି ଚତୁର/ଧୂର୍ତ୍ତ

୧୨୩୩୩. ଜାଣିଚତୁରା (ଚତୁରୀ) - ସବୁ ଜାଣି ସୁଦ୍ଧା ଯେ କିଛି ଜଣେନାହିଁ ବୋଲି ଛଳନା କରେ । ଏକାର୍ଥରେ - ଜାଣିସିଆଣା।

୧୨୩୩୪. ଜାଣିବାର ଶୁଣିବାର - ଅଭିଜ୍ଞ/ଚତୁର/ବୁଦ୍ଧିମାନ/ବିଜ୍ଞ ।

୧୨୩୩୫. ଜାଣିବା ଶୁଣିବା ଲୋକ - ବିଜ୍ଞ ବ୍ୟକ୍ତି /ବିଦ୍ୱାନ୍/ଅନୁଭବୀ ବ୍ୟକ୍ତି ।

୧୨୩୩୬. ଜାଣିସିଆଣା - ଅତି ଚତୁର/ଧୂର୍ତ୍ତ

୧୨୩୩୭. ଜାତକ ମେଳ ହେବା - ପ୍ରସ୍ତାବିତ ବରକନ୍ୟାଙ୍କର ଜାତକରେ ଥିବା ଗ୍ରହଲଗ୍ନାଦି ପରସ୍ପରଙ୍କ ମିଳନ ପ୍ରତି ଅନୁକୂଳ ଥିବା ଦେଖାଯିବା । ଜାତକ ଅମେଳ ହେବ ଏହାର ବିପରୀତ ।

୧୨୩୩୮. ଜାତକରେ ନାହିଁ - ବ୍ୟକ୍ତିର ପ୍ରକୃତିବିରୁଦ୍ଧ ।

୧୨୩୩୯. ଜାତକ ସୁଝିବା - ଜାତକ ମେଳ ହେବା । ଜାତକ ନ ସୁଝିବା ଏହାର ବିପରୀତ ।

୧୨୩୪୦. ଜାତବ୍ୟବହାର - ସାବାଳକ ।

୧୨୩୪୧. ଜାତାଶୌଚ - ଛୁତିକିଆ/ସୂତିକାଶୌଚ ।

୧୨୩୪୨. ଜାତି ଅଟକହେବା - ଅକ୍ରିୟା ବା କୁକର୍ମ କରିବାହେତୁ ସମାଜଚ୍ୟୁତ ହେବା ।

୧୨୩୪୩. ଜାତିଆ ଅନ୍ତର - ରକ୍ଷିତା କ୍ଷତ୍ରିୟ କନ୍ୟା ଗର୍ଭରୁ ଜାତ ସନ୍ତାନ ।

୧୨୩୪୪. ଜାତିଧର୍ମ ନିର୍ବିଶେଷରେ - ଜାତି ବା ଧର୍ମ ବିଷୟରେ ପ୍ରଭେଦ ବିଚାର ନ କରି କାର୍ଯ୍ୟ କରିବା ।

୧୨୩୪୫. ଜାତିପତି ହରାଇବା - ଜାତି ହରାଇବା ।

୧୨୩୪୬. ଜାତିବାସନ୍ଦ ହେବା - ଜାତିରୁ ଅଟକ ହେବା ।

୧୨୩୪୭. ଜାତିବିଟାଳ - ଜାତିଚ୍ୟୁତି/ ଜାତିଭ୍ରଷ୍ଟ ହେବା

୧୨୩୪୮. ଜାତିବିଟାଳିଆ - ଜାତିଗତ/ ଜାତିଭ୍ରଷ୍ଟ ।

୧୨୩୪୯. ଜାତିଭ୍ରଂଶ - ଜାତିଚ୍ୟୁତ/ ଜାତିନାଶ

୧୨୩୫୦. ଜାତି ମାରିବା - ଜାତି ନେବା/ଜାତି ଭ୍ରଷ୍ଟ କରାଇବା ।

୧୨୩୫୧. ଜାତି ସାରିବା - ଜାତି ନେବା/ଜାତି ହରେଇବା ।

୧୨୩୫୨. ଜାଦୁ କରିବା - ତୁଟୁକା କରିବା,ପ୍ରଭାବିତ କରିବା, ମୋହିତ କରିବା, ବଶକୁ ଆଣିବା ।

| | | |
|---|---|---|
| ୧୨୩୫୩. | ଜାନ୍ (ଜୀବନ) ଉପରେ ବିତିବା | - ପ୍ରାଣସଙ୍କଟରେ ପଡ଼ିବା/ ଭୟଙ୍କର ସଙ୍କଟ ଦେଖାଦେବା । |
| ୧୨୩୫୪. | ଜାନ୍ ଖାଇବା | - ଅତି ବିରକ୍ତ ବା ବ୍ୟତିବ୍ୟସ୍ତ କରିବା । ବାରମ୍ବାର ଜିଦ୍ କରିବା । |
| ୧୨୩୫୫. | ଜାନ୍ (ଜୀବନ) ଦାନ କରିବା | - ପ୍ରାଣ ବଞ୍ଚାଇବା, ସମ୍ବନ୍ଧ ତ୍ୟାଗ କରିବା । |
| ୧୨୩୫୬. | ଜାନ୍ ଦେବା | - କୌଣସି କାର୍ଯ୍ୟରେ ଜୀବନ ସମର୍ପଣ କରିବା । ଜୀବନ ଦେବା । |
| ୧୨୩୫୭. | ଜାନ୍ ନେବା | - ପ୍ରାଣରେ ମାରିଦେବା । |
| ୧୨୩୫୮. | ଜାନ୍(ଜୀବନ) ଫାଲତୁ ହେବା | - ଜୀବନ ଶସ୍ତା ହେବା । |
| ୧୨୩୫୯. | ଜାନ୍ ବିତାଇବା | - ଜୀବନ କଟାଇବା |
| ୧୨୩୬୦. | ଜାନ୍ (ଜୀବନ)ରୁ ହାତ ଧୋଇବା | - ପ୍ରାଣତ୍ୟାଗ କରିବା । |
| ୧୨୩୬୧. | ଜାନ୍ (ପ୍ରାଣ)ରେ ଜାନ୍ ଆସିବା | - ଆଶ୍ୱସ୍ତ ହେବା, ଶକ୍ତି ସଞ୍ଚାର ହେବା । |
| ୧୨୩୬୨. | ଜାନ୍(ଜୀବନ) ଶସ୍ତା ହେବା | - ଜୀଇବା, ମରିବା ପାଇଁ ବେପରୁଆ ହେବା । |
| ୧୨୩୬୩. | ଜାନୁ-ଯଉବନ | - ଯୁବତୀ ମାତ୍ରେ ଜାନୁ ଓ ଯୌବନ ଯୋଗୁଁ ବିକଶିତ ଅନ୍ୟ ଅବୟବ ବିକଶିତ ହୁଏ । |
| ୧୨୩୬୪. | ଜାବତା କରିବା | - କାଇଦା କରିବା/ଶାସନ କରିବା/ ଗାଳିଦେବା । |
| ୧୨୩୬୫. | ଜାବତା ନକଲ | - ସହି ମୋହର ନକଲ, ମୋକଦ୍ଦମାର ପ୍ରତିଲିପି । |
| ୧୨୩୬୬. | ଜାବିତା ମାଫିକେ | - ଉଚିତମତେ । |
| ୧୨୩୬୭. | ଜାବୁଡ଼ା ଜାବୁଡ଼ି | - ଧରାଧରି । |
| ୧୨୩୬୮. | ଜାମାରୁ ଜୋଡ଼ | - ସାଧା ଓ ସରୁ ଧଡ଼ିଆ ପିନ୍ଧା ଲୁଗା ଓ ଚଦର । |
| ୧୨୩୬୯. | ଜାମିନ୍ ପଡ଼ିବା | - ମଧ୍ୟସ୍ଥ ହେବା |
| ୧୨୩୭୦. | ଜାର୍ କରେଇ ପାର୍ କରେଇ | - ଯେ ଡାହାଣୀ ହୋଇ ଲାଗେ ଓ ଗୁଣିଆ ହୋଇ ଝାଡ଼େ । |

୧୨୩୭୧. ଜାରକ କାଗଜୀ - ଆଚାର ।

୧୨୩୭୨. ଜାରଣ ମାରଣ - ଧାତୁ ଦ୍ରବ୍ୟାଦିର ଶୋଧନ । କୌଣସି ବ୍ୟକ୍ତିକୁ ଆୟତ୍ତ କରିବା ସକାଶେ ନରମ-ଗରମ, ସଦ୍-ଅସଦ୍ ସବୁ ପ୍ରକାର ଉପାୟ ପ୍ରୟୋଗ କରିବା ।

୧୨୩୭୩. ଜାଳିପୋଡ଼ି ମାରିବା - ବହୁ କଷ୍ଟ ଦେବା ।

୧୨୩୭୪. ଜାହାନମ୍ ଉଠାଇବା - ବିପଦ ମୁଣ୍ଡେଇବା ।

୧୨୩୭୫. ଜାହାନମ୍‌କୁ ଯିବା - ନର୍କକୁ ଯିବା/ ବିନାଶ ପଥରେ ଅଗ୍ରସର ହେବା ।

୧୨୩୭୬. ଜାହାଁ ତାହାଁ ହେବା - ଅବ୍ୟବସ୍ଥିତ ହେବା, ବିକ୍ଷିପ୍ତ ହୋଇଯିବା, ବିକ୍ଷିପ୍ତ ହୋଇଯିବା ।

୧୨୩୭୭. ଜାହାଁବାଜ୍ - ବହୁଦର୍ଶୀ/ଅନୁଭବୀ/ତୀକ୍ଷ୍ଣ ବୁଦ୍ଧି ସମ୍ପନ୍ନ/ କୂଟବୁଦ୍ଧି ସମ୍ପନ୍ନ ।

୧୨୩୭୮. ଜାହିର କରିବା - ପ୍ରକଟ ହେବା, ପ୍ରକାଶିତ ହେବା ।

୧୨୩୭୯. ଜାହିରାତ୍‌ନାମା - ସାଧାରଣ ବିଜ୍ଞାପନ ।

୧୨୩୮୦. ଜାୟବେଜାୟ - ଉଚିତ ଓ ଅନୁଚିତ, ଉତ୍ତମ ଓ ମଧ୍ୟମ, ନ୍ୟାୟ ଓ ଅନ୍ୟାୟ, ବକ୍ତବ୍ୟ ଏବଂ ଅବକ୍ତବ୍ୟ / ଉଚିତ ଓ ଅନୁଚିତ କର୍ମ ।

୧୨୩୮୧. ଜାଲପୋତୁଅ - ପାଞ୍ଚଖଣ୍ଡ ଡାଙ୍ଗରେ ଆବୃତ ଜାଲ ।

୧୨୩୮୨. ଜାଲବାହାଣ କରିବା - ଜାଲକୁ ପାଣିରେ ମେଲି ମେଲି ଅଗ୍ରସର ହେବା ।

୧୨୩୮୩. ଜାଲରେ ପଡ଼ିବା ବା ଫସିବା - ଧୋଖା ଖାଇବା । ଠକାମିରେ ପଡ଼ିବା ।

୧୨୩୮୪. ଜ୍ଞାତଯୌବନା - ଯେଉଁ ଯୁବତୀ/ନାୟିକା ଆପଣାର ଯୌବନ ସମ୍ପର୍କରେ ଜାଣିଅଛି ।

୧୨୩୮୫. ଜ୍ଞାନ ବିପର୍ଯ୍ୟୟ - ବୁଦ୍ଧିଭ୍ରଂଶ ।

୧୨୩୮୬. ଜ୍ଞାନମଞ୍ଜି - ଭାତ, ଚାଉଳ, ଧାନ ଇତ୍ୟାଦି ଖାଦ୍ୟ ଶସ୍ୟ ।

୧୨୩୮୭. ଜ୍ଞାନାଞ୍ଜନଶଳାକା - ଶିଷ୍ୟକୁ ଗୁରୁ ଦେଇଥିବା ଶିକ୍ଷା । ଯେପରି ଜ୍ଞାନରୂପ ଅଞ୍ଜନକୁ ଶିଷ୍ୟର ଦିବ୍ୟଚକ୍ଷୁରେ ଦେଇ ଶିଷ୍ୟର ଜ୍ଞାନଚକ୍ଷୁର ଦୃଷ୍ଟିକୁ ଉଜ୍ଜ୍ୱଳ କରିବା

ନିମନ୍ତେ ଗୁରୁ ଶିଷ୍ୟକୁ ଯେଉଁ ଶିକ୍ଷା ପ୍ରଦାନ କରନ୍ତି ତାହାକୁ ଶାସ୍ତ୍ରକାରମାନେ ଆଖିରେ କଜ୍ଜ୍ଳ ଲଗାଇବା କାଠି ସଙ୍ଗେ ତୁଳନା କରି ଲେଖିଅଛନ୍ତି ଯେ ଅଜ୍ଞାନତିମିରାନ୍ଧ ଶିଷ୍ୟର ଦିବ୍ୟ-ଚକ୍ଷୁକୁ ଗୁରୁ ଜ୍ଞାନାଞ୍ଜନଶଳାକା ଦ୍ୱାରା ଉନ୍ମୀଳିତ କରନ୍ତି ।

୧୨୩୮୮. ଜ୍ୱାଳା ଶାନ୍ତ କରିବା - ଦ୍ୱେଷ ବା ଈର୍ଷାରୁ ଉତ୍ପନ୍ନ ଇଚ୍ଛା ପୂର୍ଣ୍ଣ କରିବା, ପ୍ରତିଶୋଧ ନେବା ।

୧୨୩୮୯. ଜିଅନ୍ତା-ଜାଗ୍ରତ ଚିତ୍ର - କୌଣସି ବସ୍ତୁ ବା ଦୃଶ୍ୟର ସମ୍ପୂର୍ଣ୍ଣ ବର୍ଣ୍ଣନ ବା ପ୍ରସ୍ତୁତି ।

୧୨୩୯୦. ଜିଅର୍‌ବାଦ୍ - ଅପବ୍ୟୟ/କ୍ଷତି । କ୍ଷତିଗ୍ରସ୍ତ/ଅପବ୍ୟୟିତ ।

୧୨୩୯୧. ଜିଗର ପାରହେବା - ମର୍ମାନ୍ତିକ ଯନ୍ତ୍ରଣା ହେବା ।

୧୨୩୯୨. ଜିଗରର ଅଗ୍ନି - ଇଚ୍ଛା, ଆକାଙ୍କ୍ଷା ।

୧୨୩୯୩. ଜିଗର (କଲିଜା) ର ଟୁକୁରା - ଅତ୍ୟନ୍ତ ପ୍ରିୟ ।

୧୨୩୯୪. ଜିଗରି ଦୋସ୍ତ - ଅଭିନ୍ନ ମିତ୍ର ।

୧୨୩୯୫. ଜିନ୍ଦଗୀ ଅଜୀର୍ଣ୍ଣ ହେବା - ଜୀଇବା ମୁସ୍କିଲ୍ ହୋଇଯିବା ।

୧୨୩୯୬. ଜିନ୍ଦଗୀ ଘୋଷାରି କଟେଇବା - ଦୁଃଖ ଦାରିଦ୍ର୍ୟରେ ସମୟ ଅତିବାହିତ କରିବା ।

୧୨୩୯୭. ଜିନ୍ଦଗୀ ବରବାଦ କରିବା - ବ୍ୟର୍ଥ କାମରେ ଜୀବନକାଳ କଟାଇବା । ଜୀବନର ସୁଖ, ସ୍ୱାଚ୍ଛନ୍ଦ୍ୟ ନଷ୍ଟ କରିବା ।

୧୨୩୯୮. ଜିନ୍ଦଗୀ ମେଣ୍ଟାଇବା - ମରିଯିବା ବା ଜୀବନରେ ମାରିଦେବା ।

୧୨୩୯୯. ଜିନ୍ଦଗୀର ଜାଲ - ଜୀବନ କାଳର କଠିନ ସମସ୍ୟା ।

୧୨୪୦୦. ଜିନ୍ଦଗୀର ଦିନ ପୁରା କରିବା - ମରଣାସନ୍ନ ହେବା ।

୧୨୪୦୧. ଜିନ୍ଦଗୀର ପ୍ରଚଣ୍ଡ ଖରା - କଷ୍ଟମୟ ବା ସଂଘର୍ଷପୂର୍ଣ୍ଣ ଜୀବନ ।

୧୨୪୦୨. ଜିନ୍ଦଗୀର ସଫରରେ ସାଙ୍ଗ ଦେବା - ସାଙ୍ଗସାଥିରେ ଜୀବନ ବିତାଇବା ।

୧୨୪୦୩. ଜିନ୍ଦଗୀର ସାଜ - ଜୀବନ କାଳ

୧୨୪୦୪. ଜିନ୍ଦଗୀରେ ଠିଆ ହେବା - ସ୍ୱାବଲମ୍ବୀ ହେବା ।

୧୨୪୦୫. ଜିନ୍ଦଗୀରେ ଦାଗ ଲଗାଇବା - ଘୃଣ୍ୟ କାମ କରି ଜୀବନକୁ କଳଙ୍କିତ କରିବା ।

| | | |
|---|---|---|
| ୧୨୪୦୬. | ଜିନ୍ଦଗୀରେ ମୃତ୍ୟୁର ମଜା ଚାଖିବା | - ଜୀବନ ମୃତପ୍ରାୟ ବଞ୍ଚିରହିବା । |
| ୧୨୪୦୭. | ଜିନ୍ଦଗୀ ଲାଭ କରିବା | - ଚିନ୍ତା ଓ ଦୁଃଖରୁ ନିଷ୍କୃତି ପାଇ ଜୀବନ ସୁଖରେ ବିତାଇବା । |
| ୧୨୪୦୮. | ଜିଭ ଅଗରେ ଥିବା | - କୌଣସି ବିଷୟ ଉତ୍ତମ ରୂପେ କଣ୍ଠସ୍ଥ ହୋଇଥିବା । |
| ୧୨୪୦୯. | ଜିଭ କାଢ଼ିବା | - ପାଟିରୁ ଜିଭକୁ ବାହାର କରିବା/ଅଚେତ ହେବା । |
| ୧୨୪୧୦. | ଜିଭ କାମୁଡ଼ିବା | - ଅଜାଣତରେ ଜିଭର ଅଗକୁ ଦାନ୍ତରେ କ୍ଷତ କରିବା/ଲଜ୍ଜା ବା ବିସ୍ମୟରେ କିଂକର୍ତ୍ତବ୍ୟବିମୂଢ଼ ବା ମ୍ରିୟମାଣ ହେବା । |
| ୧୨୪୧୧. | ଜିଭ ଚାଟରା ହେବା | - ଖାଇବା ପାଇଁ ଲୋଭ ହେବା । ସବୁପ୍ରକାର ଖାଇବା ଜିନିଷକୁ ଚାଖିଲାପରେ ଖାଇବାକୁ ଇଚ୍ଛା ହେବା । |
| ୧୨୪୧୨. | ଜିଭ ଚାଲିବା | - ବାତୁଳ ହେବା, ଅଧିକ କଥାବାର୍ତ୍ତା କରିବା । |
| ୧୨୪୧୩. | ଜିଭ ଚିରିବା | - ଜିଭ ଛେଲିବା/ଜିଭଛେଲା ଦ୍ୱାରା ଜିଭରୁ ଛତିଆ ଚାଞ୍ଛି ସଫା କରିବା । |
| ୧୨୪୧୪. | ଜିଭ ପଡ଼ିଯିବା | - କହିବା କ୍ଷମତା ନରହିବା । |
| ୧୨୪୧୫. | ଜିଭ ପିଛିଳି ଯିବା | - ମିଛ ହେଉ ବା ସତ ହେଉ, ଅନାୟାସରେ କିଛି କହି ପକେଇବା । |
| ୧୨୪୧୬. | ଜିଭରୁ ନିଆଁ ବିଞ୍ଚିବା | - ଝଗଡ଼ା ଲାଗିବା, ବଦଜବାନ ହେବା । |
| ୧୨୪୧୭. | ଜିଭରୁ ଲାଳ ଗଡ଼ିବା | - ଖାଇବା ପାଇଁ ଲାଳାୟିତ ହେବା । |
| ୧୨୪୧୮. | ଜିଭରେ ହାଡ଼ ହେବା | - ମିଥ୍ୟା କଥା କହିବା ପାଇଁ ସାହସ ହେବା । |
| ୧୨୪୧୯. | ଜିଭ ସିଲେଇ କରିବା | - ଚୁପ୍ ରହିବା /କୌଣସି ବ୍ୟକ୍ତିକୁ କହିବା ପାଇଁ ଅନୁମତି ନ ଦେବା । |
| ୧୨୪୨୦. | ଜିଭ ହୁଡ଼ିବା | - ଅକଥ୍ୟ କଥା କହିବା/ମିଛ କହିବା । |
| ୧୨୪୨୧. | ଜିଭ ଲଡ଼ବଡ଼ | - ପେଟୁପଣ/ଖାଇବା ଦ୍ରବ୍ୟ ପ୍ରତି ଅତି ଲୋଭ । |
| ୧୨୪୨୨. | ଜିଭ ଲଡ଼ବଡ଼ିଆ / ଜିଭ ଲୁତୁ ବୁଡ଼ିଆ | - ପେଟୁପଣ/ଖାଦ୍ୟପ୍ରତି ଲାଳାୟିତ । |

୧୨୪୨୩. ଜିଭ ଲଡ଼ବଡ଼ିଆ ଖୋଇ - ଅତିରିକ୍ତ ଭୋଜନ ଲାଳସା/ଆହାର ଲୋଲୁପତା ।

୧୨୪୨୪. ଜିଭ ଲେଉଟିବା - ଶବ୍ଦ ଉଚ୍ଚାରଣ କରି ପାରିବା/କହି ପାରିବା ।

୧୨୪୨୫. ଜିରେଇ ଶିଆଳି - ଏକ ପ୍ରକାର ସରୁ ଶାରଦ ଧାନ ।

୧୨୪୨୬. ଜିହ୍ୱାଗ୍ରେ ହେବା - ପଚାରିଲାମାତ୍ରେ ଯେଉଁ କଥା ମୁହେଁ ମୁହେଁ କହି ଦେଇ ହୁଏ ।

୧୨୪୨୭. ଜିହ୍ୱାରେ ବସିବା - ଯାହାର ପାଠ ବା କୌଣସି ପାଣ୍ଡିତ୍ୟପୂର୍ଣ୍ଣ କଥା ଅଳ୍ପ ଅଭ୍ୟାସରେ ମନେ ରହିଯାଏ ଏବଂ ପଚାରିଲାମାତ୍ରେ ବଖାଣି ଦିଏ ।

୧୨୪୨୮. ଜୀଅନ୍ତା ମାଛି ଗିଳିବା - ଜାଣି ଶୁଣି ଠକେଇରେ ପଡ଼ିବା, ଜାଣିଶୁଣି ଅନୁଚିତ କିମ୍ବା ଅନ୍ୟାୟ କାର୍ଯ୍ୟ କରିବା ।

୧୨୪୨୯. ଜୀଅନ୍ତେ-ଜୀ ମରିଯିବା - ମୃତ ହୋଇ ବଞ୍ଚିରହିବା ।

୧୨୪୩୦. ଜୀଇବା ପାଇଁ ମରିବା - ଜୀବନ ଯାପନ ପାଇଁ କଠିନ ପରିଶ୍ରମ କରିବା ।

୧୨୪୩୧. ଜୀଉଣି ପନ୍ଥା - ଜୀବିକା /ଜିବନୋପାୟ ।

୧୨୪୩୨. ଜୀ(ମନ) ଖଟା ହେବା - ବିମୁଖ ହେବା ।

୧୨୪୩୩. ଜୀ(ମନ) ଖୋଲିକରି - ଖୋଲାମନ, ବେଧଡ଼କ ।

୧୨୪୩୪. ଜୀ(ମନ) ଚହଲିଯିବା - ମନ ମୋହିତ ହୋଇଯିବା ।

୧୨୪୩୫. ଜୀ(ପ୍ରାଣ)ଛାଡ଼ି ପଳେଇବା - ସାହସ ହରେଇ ପଳେଇଯିବା । ଡରି ପଳେଇବା ।

୧୨୪୩୬. ଜୀ ଜଳେଇବା - କ୍ରୋଧ ଉତ୍ପନ୍ନ କରିବା, କ୍ରୋଧ ପହୁଞ୍ଚାଇବା ।

୧୨୪୩୭. ଜୀ, ଜାନ୍ ଲଢ଼େଇ ଦେବା - ମନ, ପ୍ରାଣ ଏକ କରି ଦେବା, କାମ କରିବା ବା କାମ ହାସଲ ପାଇଁ ଜୀବନ ଚାଲିଯିବାକୁ ପରବାୟ ନ କରିବା ।

୧୨୪୩୮. ଜୀ-ଜାନ ସହକାରେ - ପୂର୍ଣ୍ଣ ମନଯୋଗ ସହକାରେ ।

୧୨୪୩୯. ଜୀ(ଛାତି) ଧକ୍ ଧକ୍ ହେବା - ଡରିଯିବା, ଚମକି ପଡ଼ିବା

୧୨୪୪୦. ଜୀବ ଛାଡ଼ିବା - ମରିବା/ ଜୀବନୀଶକ୍ତି ଲୋପ ହେବା ।

୧୨୪୪୧. ଜୀବତ୍ୟାଗ - ଦେହତ୍ୟାଗ/ମୃତ୍ୟୁ ।

୧୨୪୪୨. ଜୀବନ ଅଟକିଯିବା - ମୃତ୍ୟୁ କିଛି ସମୟ ପାଇଁ ଟଳିଯିବା ।

୧୨୪୪୩. ଜୀବନ ଆସିବା - ଧୈର୍ଯ୍ୟ ଉଦ୍ରେକ ହେବା, ଶାନ୍ତି ଆସିବା ।

୧୨୪୪୪. ଜୀବନ ଉପରେ ଆସି ବସିବା - ପ୍ରାଣ ସଙ୍କଟରେ ପଡ଼ିବା, ଭୀଷଣ ଆପଦରେ ପଡ଼ିବା ।

୧୨୪୪୫. ଜୀବନ ଉପରେ ପଡ଼ିବା - ପ୍ରାଣାନ୍ତକ ସଙ୍କଟାପନ୍ନ ହେବା ଅବସ୍ଥା/ଅତି ଗୁରୁତର ମନଦୁଃଖ ବା କଷ୍ଟ ।

୧୨୪୪୬. ଜୀବନ ଉତ୍ସର୍ଗ କରିବା - କୌଣସି କାର୍ଯ୍ୟ ବା ବ୍ୟକ୍ତି ନିମନ୍ତେ ଆପଣାର ପ୍ରାଣକୁ ପାଣି ଛଡ଼ାଇବା ।

୧୨୪୪୭. ଜୀବନକୁ ଚିମୁଟିବା - ଆଦୌ ରକ୍ଷା ପାଇନପାରିବା, ଫସିଯିବା, ଅଲଗା କରି ନପାରିବା ।

୧୨୪୪୮. ଜୀବନକୁ ଜୀବନ ବୋଲି ନବୁଝିବା - ପ୍ରାଣ ଯିବାକୁ ପରବାୟ ନ କରିବା, ଅତ୍ୟନ୍ତ କଷ୍ଟ ସହିବା ବା ପରିଶ୍ରମ କରିବା ।

୧୨୪୪୯. ଜୀବନ ଖଞ୍ଜିଦେବା - ଶୋଭା ବଢ଼ାଇବା, ମୃତପ୍ରାୟ ସଂସ୍ଥାକୁ ପୁନରୁଦ୍ଧାର କରିବା, ଜୀବିତ ପ୍ରାୟ କରିଦେବା ।

୧୨୪୫୦. ଜୀବନ ଖଟେଇ, ଲଗେଇ - ହାର୍ଦ୍ଦିକ ଇଚ୍ଛାସହ, କଠିନ ପରିଶ୍ରମ ଦ୍ୱାରା କୌଣସି କାର୍ଯ୍ୟ ହାସଲ କରିବା, ପୂର୍ଣ୍ଣ ମନଯୋଗ ସହ ।

୧୨୪୫୧. ଜୀବନ ଗରମା ଗରମ ବିତାଇବା - ସୁଖଶାନ୍ତିରେ ଜୀବନ କାଳ କଟିଯିବା, ଭୋଗବିଳାସରେ ବିତିବା ।

୧୨୪୫୨. ଜୀବନ ଛାଡ଼ି ପଳେଇବା - ପ୍ରାଣ ବଞ୍ଚାଇବା ପାଇଁ ପଳେଇଯିବା ।

୧୨୪୫୩. ଜୀବନ ଜୀଇବା - ମାନ, ମର୍ଯ୍ୟାଦା ସହ ଜୀବନଯାପନ କରିବା, ସୁଖଶାନ୍ତିରେ ଜୀବନ କଟାଇବା ।

୧୨୪୫୪. ଜୀବନ ଥିବା ପର୍ଯ୍ୟନ୍ତ - ଅନନ୍ତ କାଳ ପର୍ଯ୍ୟନ୍ତ, ପ୍ରାଣ ଉତ୍ସର୍ଗ କରି ମଧ୍ୟ କାର୍ଯ୍ୟ ହାସଲ କରିବାକୁ ଚେଷ୍ଟା ।

୧୨୪୫୫. ଜୀବନ ଥିବା ପର୍ଯ୍ୟନ୍ତ କର୍ତ୍ତବ୍ୟ କରି ଚାଲିବା - ଜୀବିତ ଥିବା ପର୍ଯ୍ୟନ୍ତ ଜୀବିକା ଉପାର୍ଜନ କରିବାର ଚେଷ୍ଟାରେ ଲିପ୍ତ ରହିବା ।

୧୨୪୫୬. ଜୀବନ ନଖ ଭିତରେ ରହିବା - ଘୋର ଆଶଙ୍କାରେ ପଡ଼ିବା, ମର୍ମାନ୍ତକ କଷ୍ଟ ହେବା ।

୧୨୪୫୭. ଜୀବନ ପଛରେ ପଡ଼ିବା - ମୁକ୍ତି ନମିଳିବ, ପଛରେ ଲାଗି ରହିବା, ଜୀବନ ନେବାକୁ ଚାହିଁବା, ଜୀବନରେ ମାରିଦେବା ପାଇଁ ସୁଯୋଗ ଉଣ୍ଡିବା ।

୧୨୪୫୮. ଜୀବନ ପଶିବା - ଦେହରେ ପ୍ରାଣବାୟୁ ସଞ୍ଚରିବା ।

୧୨୪୫୯. ଜୀବନ ବନେଇବା - ନିଜର ଉନ୍ନତିପାଇଁ ଉପାୟ କରିବା ।

୧୨୪୬୦. ଜୀବନ ବାଜି / ପଣ ଲଗାଇବା - ପ୍ରାଣକୁ ପରବାୟ ନ କରିବା ।

୧୨୪୬୧. ଜୀବନ ବାହାରିଯିବା - ମରିବା / ପ୍ରାଣାନ୍ତକ କଲବଲ ହେବା । ମୁମୂର୍ଷୁ ଅବସ୍ଥା ।

୧୨୪୬୨. ଜୀବନ ବିକିବା - ନିଜର ପ୍ରାଣକୁ (ଅନ୍ୟ ବ୍ୟକ୍ତିଠାରେ) ସମର୍ପଣ କରିବା/ ଦାସତ୍ୱ ସ୍ୱୀକାର କରିବା ।

୧୨୪୬୩. ଜୀବନ ଭାରିହେବା - ବଞ୍ଚିବାର ଆକର୍ଷଣ ନ ରହିବା, ସଙ୍କଟାପନ୍ନ ହେବା ।

୧୨୪୬୪. ଜୀବନମରଣ ସମସ୍ୟା - ଜୀବନ ରହିବ କି ଯିବ ଏହିପରି ସଙ୍କଟ ।

୧୨୪୬୫. ଜୀବନର ଘଡ଼ି ଗଣିବା - ମୃତ୍ୟୁ ଆସନ୍ନ ହେବା ।

୧୨୪୬୬. ଜୀବନର ଜଞ୍ଜାଳ - ଦୁର୍ବିସହ ଅବସ୍ଥା ।

୧୨୪୬୭. ଜୀବନର ଦୌଡ଼ - ଜୀବନ କାଳ

୧୨୪୬୮. ଜୀବନର ରୋଗ - ସବୁଦିନ କଷ୍ଟ ଦେବା ବାଲା, ଭୟଙ୍କର ବିପଦ ।

୧୨୪୬୯. ଜୀବନରେ ନିଶ୍ୱାସ ଥିବା ପର୍ଯ୍ୟନ୍ତ - ନିଶ୍ୱାସ ଚାଲୁ ଥିବା ପର୍ଯ୍ୟନ୍ତ ଜୀବନ ଥିବା ପର୍ଯ୍ୟନ୍ତ କର୍ତ୍ତବ୍ୟ ରତ ରହିବା ।

୨୧୪୭୦. ଜୀବନ ଶୂଳିରେ ଟଙ୍ଗାହେବା - ମନରେ ନାନା ପ୍ରକାର ଦୁର୍ଭାବନା ରହିବା / ଆସିବା ।

୧୨୪୭୧. ଜୀବନ ହାରିବା - ମରିବା/ ପ୍ରାଣ ବିସର୍ଜନ କରିବା ।

୧୨୪୭୨. ଜୀବନ ଲୁଚେଇବା - ପ୍ରାଣରକ୍ଷା ପାଇଁ ଚେଷ୍ଟା କରିବା, ସାମନାରେ ନପଡ଼ିବା ।

୧୨୪୭୩. ଜୀବମାତୃକା - ଜୀବର ମଙ୍ଗଳସାଧିକା ସପ୍ତମାତୃକାବିଶେଷ । ଏମାନେ ହେଲେ - କୁମାରୀ, ଧନଦା, ନନ୍ଦା, ବିମଳା, ମଙ୍ଗଳା, ବଳା ଓ ପଦ୍ମା ।

୧୨୪୭୪. ଜୀବଂଜୀବ - ଯେ ଦୀର୍ଘକାଳ ବଞ୍ଚେ । ଚକୋର ପକ୍ଷୀ ।

୧୨୪୭୫. ଜୀବିକାନିର୍ବାହ - କୌଣସି ଉପାୟ ଦ୍ୱାରା ପେଟ ପୋଷିବା ।

୧୨୪୭୬. ଜୀଭ ଆଣିବା - ଚେତା ଫେରାଇ ଆଣିବା । ସଚେତ କରାଇବା । ମୃତ ବ୍ୟକ୍ତିର ଆତ୍ମା ପରଲୋକରେ କିପରି ଚଳୁଅଛି ତାହା ଜାଣିବା ପାଇଁ ଆତ୍ମାକୁ ଡାକି ଆଣିବା ପ୍ରଥା । ଏହି ପ୍ରଥା ଅନୁସାରେ - ମୃତ ବ୍ୟକ୍ତିର ପୁତ୍ର, କନ୍ୟା ବା ସ୍ୱଜନମାନେ ଦଶାହ ରାତ୍ରିରେ ଗୋଟିଏ ନିର୍ଜନ ପ୍ରକୋଷ୍ଠରେ ସ୍ୱର୍ଗୀୟ ବ୍ୟକ୍ତିର ଆତ୍ମାକୁ ପୂଜା କରନ୍ତି । ତା'ପରେ ଗୋଟି କଦଳୀପତ୍ରରେ ମଇଦା ବା ଅଟା ବିଛାଇ ତହିଁ ଉପରେ ଗୋଟିଏ ହାଣ୍ଡି ଉଗୁଡ଼େଇ ଦିଅନ୍ତି । ''ହେ ସ୍ୱର୍ଗତଃ ଆତ୍ମା! ତୁମେ କିପରି ଅଛ ଦୟାକରି ଜଣାଅ ।'' ଏହା କହି ସେମାନେ ପ୍ରାର୍ଥନା କରନ୍ତି । ତାପରେ ସେ ଘର ବନ୍ଦ କରିଦେଇ ଚାଲିଆସନ୍ତି । ଏହି ସମୟରେ ସ୍ତ୍ରୀଲୋକମାନେ କଂସାଟିଏ ଧରି ଘରୁ ବାହାରି କଂସା ବଜାଇ ବଜାଇ ଗୀତ ବୋଲନ୍ତି, ''ହେ ଜୀବନ ପୁରୁଷ! କାହିଁ ଅଛ ବିଜେ କର ।'' ଏହା ବୋଲି ବୋଲି ସେମାନେ ଶ୍ମଶାନ ଆଡ଼କୁ ଯାଆନ୍ତି ଏବଂ ଖଣ୍ଡେ ଦୂର ଯାଇ ଫେରି ଆସି ବନ୍ଦ ହୋଇଥିବା ଘରକୁ ଫିଟାଇ ସେ ଉଗୁଡ଼ା ହାଣ୍ଡିଟିକୁ ଉଠାଇ ମଇଦାରେ କି ଚିହ୍ନ ପଡ଼ିଛି ତାହା ଦେଖନ୍ତି । ସେ ଚିହ୍ନରୁ ସ୍ୱର୍ଗତ ଆତ୍ମାର ସଙ୍କେତ ବୁଝାଯାଏ । ତହିଁରେ ଗୋରୁ, ହାତୀ ଆଦି ଜନ୍ତୁଙ୍କ ପାଦଚିହ୍ନର ସାଦୃଶ୍ୟ ଥିଲେ

ଆତ୍ମା କୁଶଳରେ ଅଛି ଏବଂ ବାଘ ଭାଲୁ ଆଦିଙ୍କ ପାଦଚିହ୍ନର ସାମଞ୍ଜସ୍ୟ ଥିଲେ ଆତ୍ମା କଷ୍ଟ ପାଉଛି ବୋଲି ବୁଝାଯାଏ । ଏହା ଦେଖାଯାଉଛି ଯେ ଅପମୃତ୍ୟୁରେ ମରିଥିବା ବ୍ୟକ୍ତି ପାଇଁ ସଜ୍ଜିତ ମଇଦାରେ ବିରାଡ଼ିର ଖୋଜ(ପାଦଚିହ୍ନ) ପଡ଼ିଥାଏ । ପଶ୍ଚିମ ଓଡ଼ିଶା ଛଡ଼ା, ଓଡ଼ିଶାର ଅନ୍ୟ କେତେକ ଅଞ୍ଚଳରେ ମଧ୍ୟ ହାଣ୍ଡିତଳେ ବାଲିରେ ଏହିପରି ସାଙ୍କେତିକ ଚିହ୍ନ ଦେଖିବାର ପ୍ରଥା ଅଛି । କେତେକ ଅଞ୍ଚଳରେ ଏହାକୁ ''ଛାଇ ଡାକିବା'' ବୋଲି କୁହାଯାଏ ।

୧୨୪୭୭. ଜୀ ଭରତି - ମନଇଚ୍ଛା, ବିନା ସଙ୍କୋଚରେ ।

୧୨୪୭୮. ଜୀ ଭରିଯିବା - ସନ୍ତୁଷ୍ଟ ହୋଇଯିବା । ଆଶଙ୍କ, ସନ୍ଦେହ ଦୂର ହୋଇଯିବା ।

୧୨୪୭୯. ଜୀ(ମନ) ମିଳିଯିବା - ଦୁଇଜଣଙ୍କ ଭିତରେ ଉତ୍ତମ ବୁଝାମଣା ହେବା ।

୧୨୪୮୦. ଜୀରାରୁ ଶିରା କାଢ଼ିବା - କୌଣସି କଥାରୁ ଅତି ସାମାନ୍ୟ ଖିଅ ବାହାର କରି ତାକୁ ବଡ଼ କଥା ବୋଲି ଗଣନା କରିବା ।

୧୨୪୮୧. ଜୀରେ ନିଆଁ ଲାଗିବା - କ୍ରୋଧାନ୍ୱିତ ହେବା, ପ୍ରତିଶୋଧ ନେବା ପାଇଁ ଉଦ୍‌ବିଗ୍ନ ହେବା ।

୧୨୪୮୨. ଜୀ(ଜୀବନ) ସାଏଁ ସାଏଁ କରିବା - ଦୁଃଖରେ ଜୀବନ ଅଶାନ୍ତ ହେବା ।

୧୨୪୮୩. ଜୀ ଲଗେଇବା - ପ୍ରେମ କରିବା, ଏକାଗ୍ରତା ଆଣିବା, ମନ ମଜେଇବା,ଚିନ୍ତା ଫିକରହେବା ।

୧୨୪୮୪. ଜୀ ଲଢ଼େଇବା - କୌଣସି କାମ ପୂର୍ଣ୍ଣ ମନଯୋଗ ଦେଇ କରିବା ।

୧୨୪୮୫. ଜୁଆଚୋର - ଜୁଆ ଖେଳାଳି /ଜୁଆ ଖେଳରେ ଯେ ଠକାଏ / ପ୍ରତାରକ/ଧପାବାଜ/ଠକ ।

୧୨୪୮୬. ଜୁଆଚୋରି - ପ୍ରବଞ୍ଚନା/ଶଠତା/ପ୍ରତାରଣା ।

୧୨୪୮୭. ଜୁଆଣପାଣି - ମନ୍ତ୍ରପୂତ ଜଳ ।

୧୨୪୮୮. ଜୁଆନ୍ ବୟସ - ଯୌବନ/ଯୁବକ ଅବସ୍ଥା ।

୧୨୪୮୯. ଜୁଆ ଶକଟା - ଜୁଆ ଖେଳ ଓ ଶକଟା ବା ଗଞ୍ଜପା ।

୧୨୪୯୦. ଜୁଆଁଳା ଜିଆଁ - ଜାଆଁଳା ପିଲା ।

୧୨୪୯୧. ଜୁଟ୍ ଖାଇବା - ପରସ୍ପର ମିଳିତ ହେବା/ପରସ୍ପର ସଙ୍ଗମ କରିବା/ଜୋଡ଼ପଡ଼ିବା/ପରସ୍ପର ସର୍ବତୋଭାବରେ ମେଳ ହେବା ।

୧୨୪୯୨. ଜୁଟ୍ ବାନ୍ଧିବା - ମେଳି ହେବା /ବହୁ ବ୍ୟକ୍ତି କୌଣସି ଉଦ୍ଦେଶ୍ୟରେ ଦଳ ବାନ୍ଧିବା ।

୧୨୪୯୩. ଜୁଟ୍ ହେବା - ଏକତ୍ର ହେବା / ଦଳବଦ୍ଧ ହେବା /ପରସ୍ପର ମିଳିତ ହେବା/ସମ୍ମିଳିତ ହେବା / ସଂଯୁକ୍ତ ହେବା ।

୧୨୪୯୪. ଜୁଠା(ଅଇଁଠା) ଖାଇବା ବା ଚାଟିବା - ପରର ଅନ୍ନରେ ପ୍ରତିପାଳିତ ହେବା ।

୧୨୪୯୫. ଜୁଡ଼ବୁଡ଼୍ - ତେଲ ବା ପାଣି ସରସର ।

୧୨୪୯୬. ଜୁତା ମାରିବା - ଜୋତା ଦ୍ୱାରା ମାଡ଼ ଦେବା ।

୧୨୪୯୭. ଜୁତା ଲଗାଇବା - ଜୋତା ଦ୍ୱାରା ମାଡ଼ ଦେବା ।

୧୨୪୯୮. ଜୁମକ୍ ନିଶା - ଗାଢ଼ ନିଶା । ନିଶାସକ୍ତ ହୋଇ ମଉଜିଆ ଭାଷା କହିବା ।

୧୨୪୯୯. ଜୁମ୍ମାନମାଜ୍ - ଶୁକ୍ରବାର ଦିନ ମୁସଲମାନଙ୍କର ପାଠ କରିବା ସ୍ତବ ।

୧୨୫୦୦. ଜୁଲୁକି କବାଟ - ଜଳା କବାଟ ।

୧୨୫୦୧. ଜୁଲମ୍ କରିବା - ଅନ୍ୟାୟ, ଅତ୍ୟାଚାର କରିବା ।

୧୨୫୦୨. ଜେଇଁ ଜାଇଁ ରଖିବା - ନାନା ଉପାୟ ଅବଲମ୍ବନପୂର୍ବକ କୌଣସି ବିଷୟ, ପ୍ରାଣୀ ବା ବୃକ୍ଷ ଆଦିକୁ ସଜୀବ ରଖିବା/ବଞ୍ଚେଇ ରଖିବା ।

୧୨୫୦୩. ଜେଜେ କରିବା - ପ୍ରଣାମ କରିବା ।

୧୨୫୦୪. ଜେବ୍ ଖାଲିହେବା - ପାଖରେ ପଇସା ପତ୍ର ଅଭାବ ହେବା ।

୧୨୫୦୫. ଜେବ୍ ଗରମ କରିବା - ଘୁସ୍ ନେବା,ଆମଦାନୀ କରିବା ।

୧୨୫୦୬. ଜେବ୍‌ରେ ପକାଇବା - ହାତେଇ ନେବା, ସଜାଇ ରଖିବା ।

୧୨୫୦୭. ଜେବ୍‌ରେ ପଡ଼ିରହିବା - ପାଖରେ ହେବା, ବଶରେ ହେବା ।

୧୨୫୦୮. ଜେମନାଳୟ - ହୋଟେଲ, ଖାଦ୍ୟାଗାର ।

୧୨୫୦୯. ଜେର୍‌ବାରି ବା ଜେରବାରିଆ - ଯେ ଅନ୍ୟ ବ୍ୟକ୍ତିକୁ ଅପବ୍ୟୟଗ୍ରସ୍ତ କରାଏ/ବାଧ ହୋଇ ଅପବ୍ୟୟ କରିବା ଅବସ୍ଥା ।

୧୨୫୧୦. ଜେରା କାଢ଼ିବା - ଖୋଳିତାଡ଼ି ପଚାରିବା ।

୧୨୫୧୧. ଜେଲର ଚକି ପେଷିବା ବା, ରୋଟି ଖାଇବା ବା, ହାଓ୍ୱା ଖାଇବା । - ଜେଲ୍ ଦଣ୍ଡ ଭୋଗିବା ।

୧୨୫୧୨. ଜୋଇଡୋବି ବା, ଜୋଏଡେବି - ଦିଆସିଲି ।

୧୨୫୧୩. ଜୋଓକାଠି - ଲୁଗା ବୁଣିବା ସମୟରେ ଯେଉଁ କାଠିଦ୍ୱାରା ଭରଣୀ ସୂତାର ଶେଷ ମୁଣ୍ଡକୁ ଟାଣି କରି ରଖାଯାଏ ।

୧୨୫୧୪. ଜୋଗଣ ବଢ଼ିବା - ରାଜାଙ୍କର ଭୋଜନ ତଥା ଭୋଜନ ସମାପ୍ତି ।

୧୨୫୧୫. ଜୋଗଣଲାଗି - ଭୋଜନରେ ବ୍ୟାପୃତ । ଯେପରି, ଛାମୁ ବର୍ତ୍ତମାନ ଜୋଗଣଲାଗି ହୋଇଛନ୍ତି ।

୧୨୫୧୬. ଜୋଡ଼ତୋଡ଼ - ଆୟୋଜନ, କପଟ, ଜୋଡ଼ିବା ଓ ଭାଙ୍ଗିବା କ୍ରିୟା ।

୧୨୫୧୭. ଜୋଡ଼ ଫିଟିବା - ପରସ୍ପର ଅଲଗା ବା ଛଡ଼ାଛଡ଼ି ହେବା ।

୧୨୫୧୮. ଜୋଡ଼ ବାନ୍ଧିବା - ଏକଜୁଟ୍ ହେବା ।

୧୨୫୧୯. ଜୋଡ଼ ବିଜୋଡ଼ - ଜୋଡ଼ାଜୋଡ଼ା ହୋଇ ନଥିବା/ଏକ ଜୋଡ଼ାର ଗୋଟାଏ ବସ୍ତୁ ଅନ୍ୟ ଜୋଡ଼ାର ବସ୍ତୁ ସଙ୍ଗେ ରଖା ଯାଇଥିବା । ଯେପରି - ସମ ଓ ଅସମ ବସ୍ତୁ ଏକାଠି ରଖିବା ।

୧୨୫୨୦. ଜୋଡ଼ ବେଳ - ସଙ୍ଗମ ଋତୁ /ସ୍ତ୍ରୀ ପୁରୁଷଙ୍କର ମୈଥୁନ ସମୟ ।

୧୨୫୨୧. ଜୋତ ଆବାଦ କରିବା - ଭୂମି ଚାଷ କରିବା/ ରଇତ ରୂପେ ଜମି ଚାଷ କରିବା ।

୧୨୫୨୨. ଜୋରୁବେଟୀ - ସ୍ତ୍ରୀ ଓ କନ୍ୟା ।

୧୨୫୨୩. ଜୋ-ହୁକୁମ - ଆପଣଙ୍କ କଥା ମୋର ଶିରୋଧାର୍ଯ୍ୟ ହେଲା / ଆଜ୍ଞା ହଁ କହିବା ।

୧୨୫୨୪. ଜ୍ୟେଷ୍ଠାଶ୍ରମୀ - ଗୃହସ୍ଥ, ଗୃହୀ ।

୧୨୫୨୫. ଜ୍ୟୋତିରିଙ୍ଗଣ - ଖଦ୍ୟୋତ/ଜୁନୁଜୁଳା ପୋକ ।



# ପୁରୀବୋଲି

୧୨୫୨୬. ଜଉତାବ - ଜଉରେ ତିଆରି କୁମ୍ଭାଭଳି ଏକ ପଦାର୍ଥ । ଏଥିରେ ଫଗୁ ରଖାଯାଇ ସଂସ୍କାର ପରେ ମୁଦିରଥ ତିନିବାଡ଼କୁ ଛାଡ଼ନ୍ତି । ତାବ ଫାଟି ଶ୍ରୀଅଙ୍ଗ ଫଗୁରେ ରଞ୍ଜିତ ହୁଏ ।

୧୨୫୨୭. ଜଗତୀ - ଉଚ୍ଚବେଦୀ । ପୃଥିବୀ । 'ଜଗତୀ ବିଳାସରେ ଥାଇ/ ଜଗତୀ ବିଳାସ କୁ ଦେଇ । '

୧୨୫୨୮. ଜଗନ୍ନାଥବଲ୍ଲଭ - ଅଟା, ଚିନି ଓ ଘିଅରେ ପ୍ରସ୍ତୁତ ଏକ ମିଷ୍ଟଦ୍ରବ୍ୟ । ଖଜା,ଜଗନ୍ନାଥବଲ୍ଲଭ, ଲୁଣ ଖୁରୁମା ନାଡ଼ି, ଝିଲି ଆଦି ଏକାଠି ଭୋଗ ହୋଇଥାଏ ।

ଶ୍ରୀମନ୍ଦିର ବହିର୍ଦେଶସ୍ଥ ଏକ ଉଦ୍ୟାନ, ଗ୍ରାମ ବିଶେଷ, ପିଷ୍ଟକ ବିଶେଷ । ରାୟ ରାମାନନ୍ଦ ବିରଚିତ ଏକ ସଂସ୍କୃତ ନାଟକ । ଜଗନ୍ନାଥ ବଲ୍ଲଭ ଉଦ୍ୟାନ ସହ ରାୟ ରାମାନନ୍ଦଙ୍କ ସ୍ମୃତି ଜଡ଼ିତ । ପ୍ରତାପରୁଦ୍ର ତାଙ୍କୁ ଏହି ଉଦ୍ୟାନ ଦେଇଥିବା କୁହାଯାଏ । ସେ ଏଠାରେ ଦେବଦାସୀଙ୍କୁ ନୃତ୍ୟାଦି ଶିକ୍ଷାଦେଇ ଜଗନ୍ନାଥଙ୍କ ସେବା ନିମନ୍ତେ ପ୍ରସ୍ତୁତ କରୁଥିଲେ । ମାଦଳାରେ ଅନଙ୍ଗଭୀମ ଦେବ ପୁରୁଷୋତ୍ତମପୁରରେ ଦେଉଳ ଦୁଇ ପାଖରେ ବଳଭଦ୍ରପୁର, ଜଗନ୍ନାଥପୁର କରି ଦୁଇ ଶାସନ ବସାଇବା ଉଲ୍ଲେଖରୁ ବଡ଼ଦାଣ୍ଡ ଦୁଇ ପାର୍ଶ୍ୱରେ ଜଗନ୍ନାଥ ବଲ୍ଲଭ ଓ ବଳଭଦ୍ର ବଲ୍ଲଭର କ୍ଷୀଣ ସୂଚନା ମିଳେ । ସଦାଶିବ ରଥଶର୍ମାଙ୍କ ତଥ୍ୟମତେ କୁଣ୍ଡେଇବେଣ୍ଟ ସାହିରେ ଜଗନ୍ନାଥ ବଲ୍ଲଭ, ବଳଭଦ୍ର ବଲ୍ଲଭ, ଗୋପୀନାଥ ବଲ୍ଲଭ ଓ ଗୋପାଳ ବଲ୍ଲଭ ଏହିପରି ଚାରୋଟି ଉପବନ ଥିଲା । ଜଗନ୍ନାଥ ବଲ୍ଲଭ ଶ୍ରୀମନ୍ଦିରର କେତେକ ନୀତି ସହ ଜଡ଼ିତ । ମକର

ସଂକ୍ରାନ୍ତି ପୂର୍ବଦିନ ଦୃକ୍ଷମେଲାଣ୍ଡ, ବେଣ୍ଡ, ଫଗୁଦଶମୀରୁ ଦୋଳପୂର୍ଣ୍ଣମୀ ପର୍ଯ୍ୟନ୍ତ ଚାଚେରୀ, ପଣାସଂକ୍ରାନ୍ତି ଦିନ ମହାବୀର ବିଜେ, ରାମଲୀଳା, ନୃସିଂହ ଚତୁର୍ଦ୍ଦଶୀ ଦିନ ନୃସିଂହ ବିଜେ, ଦଅଣା ଚୋରି, ଦଶହରା ଦିନ ରାମକୃଷ୍ଣ ଓ ଦୁର୍ଗାମାଧବ ବିଜେ ଆଦି ଏଠାରେ ହୁଏ । ବସନ୍ତ ଗୁଣ୍ଡିଚା ନୀତି ଯୋଗୁ ଏହାକୁ ବସନ୍ତ ଗୁଣ୍ଡିଚା ତୋଟା କୁହାଯାଏ ।

ମାଳତୀ ପାଟପୁର ଷ୍ଟେସନ ପାଖ ଜଗନ୍ନାଥ ବଲ୍ଲଭ ଗ୍ରାମରୁ ଗୁଣ୍ଡିଚା, ବାହୁଡ଼ା ଏକାଦଶୀରେ ମାଳଚୂଳ, ନବାଙ୍କ ଦିନ ବାରହାତିଆ ମାଳ, ଚନ୍ଦନ ବୟାଳିଶ ଦିନ ଅଳକା ଓ ସ୍ନାନ ପୂର୍ଣ୍ଣମୀ ଦିନ ଚୂଳ ଯାଏ । ଏହି ମାଳଚୂଳ ସେବା ପାଇଁ ଅମୃତ ମଣୋହି ସମ୍ପତ୍ତି ଓ ବିଭିନ୍ନ ଜାଗିରି ରହିଛି । ଧୋବା ଓ ଭଣ୍ଡାରୀ ଜାଗିରି ଭୋଗନ୍ତି । ମହାରଣା ମାଳଚୂଳ ପାଇଁ ନିଶୁଣି ଓ ପଞ୍ଜର ତିଆରି କରନ୍ତି । ବଜନ୍ତ୍ରୀ ବାଜା ବଜାଇ ଆଗରେ ଯାଆନ୍ତି । ମାଳୀମାନେ ବାଘମୁହାଁ ବାନ୍ଧି କଦଳୀପତ୍ର ଘୋଡ଼ାଇ ମାଳଚୂଳ ଶ୍ରୀମନ୍ଦିରକୁ ଆଣନ୍ତି ।

୧୨୫୨୯. ଜଗମୋହନ - ଗର୍ଭଗୃହ ସମ୍ମୁଖରେ ଦର୍ଶନାର୍ଥୀଙ୍କ ସମାବେଶ ଉଦ୍ଦେଶ୍ୟରେ ନିର୍ମିତ ମଣ୍ଡପ । ଅନ୍ୟ ନାମ - ମୁଖମଣ୍ଡପ । ଓଡ଼ିଶାର ପ୍ରଥମାବସ୍ଥାର ମନ୍ଦିରଗୁଡ଼ିକ କ୍ଷୁଦ୍ର, ଏକ ବଖରିକିଆ ଓ ସିଧାସଳଖ ପ୍ରବେଶଦ୍ୱାର ଥାଇ ମନ୍ଦିର । ପରବର୍ତ୍ତୀ କାଳରେ ଗର୍ଭଗୃହକୁ ଲାଗି ପୀଢ଼ ବା ଭଦ୍ର ମନ୍ଦିରମାନ ନିର୍ମିତ ହୋଇଛି । ଏହା ଜଗମୋହନ ଭାବରେ ଥିବା ପରିଦୃଷ୍ଟ । ଶ୍ରୀମନ୍ଦିର କ୍ଷେତ୍ରରେ ଦ୍ୱିତୀୟ ବଖରାକୁ ଜଗମୋହନ କୁହାନଯାଇ ତୃତୀୟ ବଖରା (ଷୋ'ଳଖମ୍ବ ବିଶିଷ୍ଟ କକ୍ଷ)କୁ ଜଗମୋହନ କୁହାଯିବା ଉଲ୍ଲେଖଯୋଗ୍ୟ । ଶ୍ରୀମନ୍ଦିରରେ ଜଗମୋହନ ଓ ନାଟ ମନ୍ଦିର ଏକ ।

୧୨୫୩୦. ଜଗିଆ - ଜଗୁଆଳି । ଜଗିଆ ମହାସୁଆର - ମହାସୁଆର ସେବକ ବିଶେଷ ।

୧୨୫୩୧. ଜଗିଆ ମହାସୁଆର /ରୋଷ ଅମିନ - ରୋଷରେ ବଡୁସୁଆରଙ୍କୁ କୋଠଭୋଗ ଜିନିଷ ଦେବା, ଘିଅ ପକାଇଲା ବେଳେ ଦେଖିବା, ମଧାହ୍ନ ଧୂପରେ ଘିଅ ଓ ପଣା ପଠାଇବା, ଥାଳୀରେ ଘିଅ, ପଣାରେ ଛାଚି ପଡ଼ିଲାବେଳେ ଜଗିବା, ଚୂଲି ପନ୍ତି ଗୋଳମାଳ ହେବା ଦେଖି ଦେଉଳ କରଣଙ୍କୁ ରିପୋର୍ଟ କରିବା, ପର୍ବଯାତ୍ରା ଭୋଗ ପ୍ରସ୍ତୁତି ନିମନ୍ତେ ଦେଉଳ କରଣଙ୍କଠାରୁ ଭୋଗଉଠିଆ ତାଲିକା ନେଇ ବଡୁସୁଆରଙ୍କୁ ବରାଦ କରିବା, ଲକ୍ଷ୍ମୀଙ୍କ ରୋଷରେ ଭୋଗର ତତ୍ତ୍ୱନେବା, ପ୍ରସ୍ତୁତି ସମୟରେ ଜଗିବା ଆଦି କରନ୍ତି ।

ମଧୁସୂଦନ ମହାସୁଆରଙ୍କ ପ୍ରଦତ୍ତ ତଥ୍ୟ ଅନୁଯାୟୀ ମହାସୁଆର ଚାରି ଗୋଷ୍ଠୀର । ୧-କମଳା, ୨-ଚିଙ୍ଗୁଡ଼ି ଚୋପା, ୩-ବଡ଼ଚିତା, ୪-ଗୋବର ପଣିଆ ।

(୧) କମଳା ମହାସୁଆର - ମହାସୁଆର ସେବକ ବିଶେଷ । ପୁରୁଷୋତ୍ତମ ଦାସଙ୍କ କାଞ୍ଚିକାବେରୀରେ ଏହି କିମ୍ବଦନ୍ତୀ ମିଳେ । ଦାଶରଥି ମହାସୁଆର ନାମରେ ଜଣେ ସୁଆର ଦିନେ ଟିକାଏ ଉତ୍ତମ ପକ୍ୱ କମଳା ଜଗନ୍ନାଥଙ୍କ ବାଡ଼ରେ ବାଢ଼ିଲା ବେଳେ ସେ ବଡ଼ ଠାକୁରଙ୍କ ବାଡ଼ରେ ବାଢ଼ିବା ପାଇଁ ଓ ବଡ଼ ଠାକୁରଙ୍କ ବାଡ଼ରେ ବାଢ଼ିବାକୁ ଗଲାବେଳେ ସେ ଜଗନ୍ନାଥଙ୍କ ବାଢ଼ିବା ପାଇଁ ନିର୍ଦ୍ଦେଶ ଦେଇ ଏହିଭଳି ଦୁଇଠାକୁର ବାରମ୍ବାର କୌତୁକ କରିବାରୁ ବିଳମ୍ବ ହୁଅନ୍ତେ ରାଜା ତାଙ୍କୁ ଧରି ଆଣିବା ପାଇଁ ଆଦେଶ ଦେଲେ । ଛଡ଼ିଦାର 'ଠାକୁରଙ୍କ ଆଜ୍ଞା ଆସ ବେଗେ' କହିବାରୁ ଦାଶରଥି 'ଜଗନ୍ନାଥଙ୍କ ଛଡ଼ା ଆଉ କେ ଠାକୁର ଅଛନ୍ତି ମୁଁ ଜାଣେନି' ବୋଲି

କହିଥିଲେ । ଏହି ଦୋଷରେ ସେ ବନ୍ଦୀ ହେଲେ । ତୃତୀୟ ରାତିରେ ମହାପ୍ରଭୁ 'ତାକୁ ଛାଡ଼ିଦେଲେ ଆମେ ମଣୋହି କରିବୁ' ବୋଲି ଆଜ୍ଞା ଦେବାରୁ ରାଜା ତାଙ୍କୁ ମୁକ୍ତ କରିଥିଲେ । ସେହିଦିନଠାରୁ ସେ କମଳା ମହାସୁଆର ନାମରେ ଖ୍ୟାତ ହେଲେ । ସକ୍ବଲିପିରେ ରାମଚନ୍ଦ୍ର ମହାସୁଆର, ବାମନ ମହାସୁଆର, କମଳା ମହଆ (ମହାସୁଆର ହୋଇଥିବ) ରାବେ ପ୍ରଥମ ଛେକ ଚନ୍ଦ୍ରକାନ୍ତି ସରା ନେବେ ବୋଲି ଉଲ୍ଲେଖ ଅଛି ।

(୨) ଚିଙ୍ଗୁଡ଼ି ଚୋପା - ଆମିଷ ଅଭାବରେ ଦିନେ କାହା ଦ୍ୱାରରୁ ଚିଙ୍ଗୁଡ଼ି ଚୋପା ସଂଗ୍ରହ କରି ତାକୁ ସୁସ୍ୱାଦୁ ବ୍ୟଞ୍ଜନ କରି ଦେଇ ଥିବାରୁ ଏହି ଭାବରେ ପ୍ରସିଦ୍ଧ ହେଲେ ବୋଲି କାହାଣୀ ରହିଛି । ଚିଙ୍ଗୁଡ଼ି ଚୋପା ଏକ ଅଳଙ୍କାରର ନାମ ।

(୩) ବଡ଼ଚିତା - ବଡ଼ଚିତା ଧାରଣ କରୁଥିବା ମହାସୁଆର ।

(୪) ଗୋବର ପାଣିଆ - ରୋଷ ମଧରେ ହୋମ ପୂର୍ବରୁ ଗୋବର/ଚୂନପାଣି ଓ ମହାପ୍ରଭୂଙ୍କ ପ୍ରତି ଭୋଗଶେଷରେ ଗୋବର ପାଣି ପକାଉଥିବା ମହାସୁଆର ସେବକ ।

୧୨୫୩୨. ଜଡ଼ଉତ - ଜରି ଜମ୍ବୁରାରେ ସାଜସଜ୍ଜା । ମଣ୍ଡନ ।

୧୨୫୩୩. ଜଣ୍ଟିଲ୍‌ମାନ - ଭଦ୍ରଲୋକ (ବିଶେଷ କରି ବିଦ୍ରୁପରେ) ଇଂରାଜୀ ଜେଣ୍ଟଲମ୍ୟାନରୁ ଆସିଛି ।

୧୨୫୩୪. ଜନକପୁରୀ/ ଜଁନକପର - ଗୁଣ୍ଡିଚାଘର । ଜନକପୁରୀ ଅର୍ଥ ଜନ୍ମସ୍ଥାନ । ଗୁଣ୍ଡିଚା ଅଞ୍ଚଳ ଚତୁର୍ଦ୍ଧାମୂର୍ତ୍ତିଙ୍କ ଆବିର୍ଭାବସ୍ଥଳ ଭାବରେ ପୁରାଣ ପ୍ରସିଦ୍ଧ । ଇନ୍ଦ୍ରଦ୍ୟୁମ୍ନଙ୍କ ଯଜ୍ଞ ସମୟରେ ସମୁଦ୍ରରେ ଅଲୌକିକ ଦାରୁର ଆବିର୍ଭାବ ହୋଇଛି । ମୂର୍ତ୍ତି ନିର୍ମାଣ ପରେ ଆକାଶବାଣୀ ହୋଇଛି - ନୀଳପର୍ବତୋପରି କଳ୍ପବୃକ୍ଷର ବାୟୁକୋଣରେ ନରସିଂହ ଦେବଙ୍କ ଉତ୍ତରରେ (ମୁକ୍ତିମଣ୍ଡପ ସମୀପସ୍ଥ ନୃସିଂହ ମନ୍ଦିରର ପ୍ରାଚୀନତାର ଏକ ସଙ୍କେତ

ଏଥରୁ ମିଳେ) ଥିବା ପ୍ରଶସ୍ତ ସ୍ଥାନରେ ପ୍ରାସାଦ ନିର୍ମାଣ କରି ଦେବତାଙ୍କୁ ସ୍ଥାପନ କରି, ଯେଉଁଠାରେ ଦିନେ ବିଶ୍ୱାବସୁ ଶବର ମାଧବଙ୍କୁ ଅର୍ଚ୍ଚନା କରୁଥିଲେ । ଗୁଣ୍ଡିଚା ଯାତ୍ରା ଜଗନ୍ନାଥଙ୍କର ସେହି ଜନ୍ମସ୍ଥାନକୁ ଏକ ବାର୍ଷିକ ଭ୍ରମଣନୀତି ।

୧୨୫୩୫. ଜଭର - ମୁହଁଖୋର (ନାରୀ ଉଦ୍ଦେଶ୍ୟରେ), ବଡ଼ । ଉ-ଜଭର ମାଇକିନିଆ । ଜଭର ଏକ ସାପ ।

୧୨୫୩୬. ଜମା - ବର୍ଦ୍ଧିତ ଅଣ୍ଡକୋଷ । (ଜମା ସଞ୍ଚୟ)

୧୨୫୩୭. ଜମାଉତ - ସାହିଯାତ୍ରାରେ ଜନସମାବେଶ । (ଆ-ଜମାଅତ୍-ମିଳନ ସଭା) ଆଡ଼ମ୍ବର ସହ (ଗାଈ, ଘୋଡ଼ା, ଓଟ, ହାତୀ, ଠାକୁରର ଛଡି କାହାଳୀ ଆଦି ସହ) ଦଳବଦ୍ଧ ହୋଇ ତୀର୍ଥାଟନ କରୁଥିବା ବୈରାଗୀଦଳଙ୍କୁ ଜମାଉତ କୁହାଯାଏ । ଏମାନେ କୌଣସି ସ୍ଥାନରେ ଡେରା ପକାଇଲେ ସ୍ଥାନୀୟ ଲୋକେ ଭକ୍ତି ବା ଭୟରେ ଏମାନଙ୍କୁ ଖାଦ୍ୟ ଯୋଗାନ୍ତି ।

୨୧୫୩୮. ଜରି ପଟୁକା - ଯାବତୀୟ ଜରି ଜଡ଼ଉତ କାମ କରୁଥିବା ସେବକ ।

୧୨୫୩୯. ଜଲଓଧ - ବୋକା ।

୧୨୫୪୦. ଜଲକବର/ ଜଳାକବରୀ ବେଣୀ - ଅଳକା ଭଳି କିନ୍ତୁ ଆକାରରେ ବଡ଼ ଏକ ମାଳ । ରଥ ଉପରେ ବଡ଼ ଏକାଦଶୀ, ନବାଙ୍କ ଓ ମକର ସଂକ୍ରାନ୍ତି ଦିନ ଲାଗେ । ଏହି ମାଳ ମଝିରେ ରାମାନନ୍ଦୀ ଚିତା ତିଳକ ମଧ ଖଞ୍ଜା ଯାଇଥାଏ ।

ବି.ଦ୍ର. - ପୁରୀ ନିକଟରେ ଜଲକବର ବୋଲି ଏକ ଗ୍ରାମ ରହିଛି । କପିଳେନ୍ଦ୍ରଦେବଙ୍କର ଜୟବିଜୟ ଦ୍ୱାରସ୍ଥ ଏକ ଶିଳାଲେଖରେ ବିଭିନ୍ନ ଅଳଙ୍କାର ଦାନ ପ୍ରସଙ୍ଗରେ ଠାଏ 'କାନ୍ତି ଜରକବର' ବୋଲି ଉଲ୍ଲେଖ ଅଛି । ଏଥିରୁ ଜରକବର ନାମରେ ସମ୍ଭବତଃ କିଛି ଅଳଙ୍କାର ଥିବା ଅନୁମେୟ । ଜଲକବର (ପୁଷ୍ପଭୂଷା)କୁ ଜଳାକବରୀ ବେଣୀ ମଧ କୁହାଯାଏ ।

୧୨୫୪୧. ଜଳକା ମେଣ୍ଢା - ବୋକା ଭଳି ଚାହିଁବା ।

୧୨୫୪୨. ଜଳହସ୍ତୀ - ଅତିରିକ୍ତ ସ୍ଥୂଳକାୟ ବ୍ୟକ୍ତି ।

୧୨୫୪୩. ଜଳିବା - ତୋଫା ଦିଶିବା, ଆକର୍ଷଣୀୟ ଦିଶିବା ।

୧୨୫୪୪. ଜୟବିଜୟ ଦ୍ୱାର - ଜଗମୋହନ ଭିତରକୁ ପ୍ରବେଶ ଦ୍ୱାର । ବିଷ୍ଣୁଙ୍କ ଦ୍ୱାରପାଳଦ୍ୱୟଙ୍କ ନାମରେ ଚିହ୍ନିତ ।ଏଠାରେ ପ୍ରତ୍ୟହ ଦ୍ୱାରପାଳ ପୂଜା ହୁଏ । ଏହି ଦ୍ୱାର କଳା ମୁଗୁନି ପଥରରେ ନିର୍ମିତ ଓ ମନୋହର ନାଗବନ୍ଧାଦି କାରୁକାର୍ଯ୍ୟ ଶୋଭିତ । ଏହାର ଆଉ ଏକ ବିଶେଷତ୍ୱ ହେଉଛି, ଏଠାରେ କେତେକ ଶିଳାଲେଖ (କପିଳେନ୍ଦ୍ରଙ୍କର ପାଞ୍ଚ, ପୁରୁଷୋତ୍ତମଙ୍କର ଚାରି, ପ୍ରତାପରୁଦ୍ରଙ୍କର ଦୁଇ ଏବଂ ଗୋବିନ୍ଦ ବିଦ୍ୟାଧରଙ୍କର ଏକ ଏପରି ସର୍ବମୋଟ ବାରଟି ) ରହିଛି । କପିଳେନ୍ଦ୍ରଦେବଙ୍କ ପ୍ରଥମ ଲେଖାରେ ସେ କୌଣସି ପଦବୀ ଧାରଣ କରି ନାହାନ୍ତି । ଦ୍ୱିତୀୟରେ ଗଜପତି ଗୌଡ଼େଶ୍ୱର ଓ ତୃତୀୟରେ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳବରଗେଶ୍ୱର ପଦବୀ ଧାରଣ କରିଛନ୍ତି । ତାଙ୍କର ପରବର୍ତ୍ତୀ ସୂର୍ଯ୍ୟବଂଶୀଗଣ ଏପରିକି ଗୋବିନ୍ଦ ବିଦ୍ୟାଧର ମଧ୍ୟ ଏହି ପଦବୀ ବ୍ୟବହାର କରିଛନ୍ତି । କପିଳେନ୍ଦ୍ରଙ୍କ ଏକ ଲେଖରେ ଲୁଣ ଓ କଉଡ଼ି ଉପରୁ କରଛାଡ଼ ଘୋଷଣା, ଏକ ଲେଖରେ ବିଜୟନଗରର ମଲ୍ଲିକାର୍ଜ୍ଜୁନଙ୍କ ସେନାକୁ ପରାସ୍ତ କରି ବାହୁଡ଼ା କଟକାଇ (ପ୍ରତ୍ୟାବର୍ତ୍ତନ କାଳର)ରେ ପୁରୀର ବୀରକିଶୋର ମଣୋହି କରିଥିବା, ଏକ ଲେଖରେ କୃତଘ୍ନ ସାମନ୍ତଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ପାଇଁ ଘୋଷଣା,ଏକ ଲେଖରେ ଠାକୁରଙ୍କୁ ବିଭିନ୍ନ ଅଳଙ୍କାର ଦାନର ବିବରଣୀ ରହିଛି । ପୁରୁଷୋତ୍ତମଙ୍କ ଏକ ଲେଖରେ

ଠାକୁରଙ୍କ ଅଳଙ୍କାର ଦାନ, ଏକ ଲେଖରେ ବ୍ରାହ୍ମଣଙ୍କ ପ୍ରତି ଉଦାର ଓ ଦୟାଶୀଳ ହେବାକୁ ରାଜାମାନଙ୍କୁ ନିର୍ଦ୍ଦେଶର ବିବରଣୀ ମିଳେ । ପ୍ରତାପରୁଦ୍ରଙ୍କ ଏକ ଲେଖରେ ଗୀତଗୋବିନ୍ଦର ପ୍ରବର୍ତ୍ତନ ପାଇଁ ଦୃଢ଼ ନିର୍ଦ୍ଦେଶ ରହିଛି ।

୧୨୫୪୫. ଜୟବିଜୟ ପ୍ରତିହାରୀ - ଗୋଛିକାର ।

୧୨୫୪୬. ଜୟମଙ୍ଗଳ ଆଳତି - ସନ୍ଧ୍ୟା ଆଳତି ପରେ ଅତିରିକ୍ତ ଦୁଇଟି ଆଳତି ।

୧୨୫୪୭. ଜୟମଙ୍ଗଳ ପତ୍ରୀ - ଜୟମଙ୍ଗଳ ଆଳତି ସାମଗ୍ରୀ ଯୋଗାଉଥିବା ପତ୍ରୀ ସେବକ ।

୧୨୫୪୮. ଜାଗର ହନୁ - ଭାଙ୍ଗ ଖାଇ ବା ରାତି ଅନିଦ୍ରା ହୋଇ ଆଖି ଢୁଳୁଢୁଳୁ କରୁଥିବା ବ୍ୟକ୍ତି ।

୧୨୫୪୯. ଜାଗାଘର - ଶରୀର ଚର୍ଚ୍ଚା, କ୍ରୀଡ଼ା, ନୃତ୍ୟ ସଙ୍ଗୀତ, ଆମୋଦ ପ୍ରମୋଦାଦି ଉଦ୍ଦେଶ୍ୟରେ ଗଠିତ ପୁରୀର କେତେକ ପ୍ରାଚୀନ ପ୍ରତିଷ୍ଠାନ ।

୧୨୫୫୦. ଜାଡ଼ଛଡ଼ା ମୁଆଁ କାହାକୁ ଚାହି,
ଦଉଡ଼ି ଆସରେ ଭାଇ ।
- ପୂର୍ବେ ଶୀତ ଦିନେ ମୁଆଁ ବିକାଳି ଏହି ପଦ ବୋଲି ବୋଲି ରାସ୍ତାରେ ବୁଲି ବୁଲି ମୁଆଁ ବିକ୍ରି କରୁଥିଲା ।

୧୨୫୫୧. ଜାଣିନୁ ମଣି,
କ୍ଷୀର ମରି ମରି ରାବିଡ଼ି ।
- ଯିଏ ନିଜର ବାନା ତଳକୁ ଖସିବା ସହ୍ୟ କରିପାରେ ନାହିଁ, ସେ ତତ୍‌କ୍ଷଣାତ୍ ଏହି ଉତ୍ତରଟି ଦେଇଥାଏ ।

୧୨୫୫୨. ଜାମା - ଶୀତର ଆଗମନ ଓ ଅପସାରଣ ସମୟରେ ଲାଗି ହେଉଥିବା ବସ୍ତ୍ର । ପ୍ରଥମାଷ୍ଟମୀରୁ ଓଢ଼ଣ ଷଷ୍ଠୀ ପର୍ଯ୍ୟନ୍ତ, ପୁଣି ବସନ୍ତ ପଞ୍ଚମୀରୁ ଦୋଳ ପୂର୍ଣ୍ଣିମା ପର୍ଯ୍ୟନ୍ତ ଏହି ଜାମା ଉପରପଟୁ ପିନ୍ଧାଇ ଦିଆଯାଏ । ଏହା କଟୀ ପାଖରୁ କୁଞ୍ଚ କୁଞ୍ଚ ହୋଇ ଘାଗରା ଭଳି ହୋଇଥାଏ ।

୧୨୫୫୩. ଜେଉଡ଼ ଭୋଗ - ଏକପ୍ରକାର ଖଟା ଭୋଗ । ରାମ ଓ କୃଷ୍ଣଙ୍କୁ ନୀତି ପୂର୍ବଦିନ ସନ୍ଧ୍ୟାଧୂପ ପରେ ଏହି ଭୋଗ ହୋଇଥାଏ । ଜେଉଟ ଫଳ, ତେନ୍ତୁଳି, ଗୁଡ଼, କଖାରୁ, କଦଳୀ ଆଦି ମିଶି ପ୍ରସ୍ତୁତ ହୁଏ ।

୧୨୫୫୪. ଜେନାମଣି - ଏକ ବିରି ପିଠା । ରାଜକନ୍ୟା ଓ ଯୁବରାଜଙ୍କ ପାଇଁ ଉଦ୍ଦିଷ୍ଟ ।

(ଜେନା, ଜେନାମଣି ଶବ୍ଦ ମୂଳତଃ ଦ୍ରାବିଡ଼ । ଚୋଡ଼ଙ୍ଗ ଦେବଙ୍କ ପୁତ୍ର କାମାର୍ଣ୍ଣବ ଦେବ ଯୁବରାଜ ଥିଲାବେଳେ 'ଜିୟନ' ଆଖ୍ୟା ଧାରଣ କରିଥିଲେ । ଏହିଥିରୁ ଜେନା, ଜେନାମଣି ହୋଇଥିବା ସମ୍ଭବ ।)

୧୨୫୫୫. ଜୋଗଣାହାରୀ - ଶ୍ରୀ ଜଗନ୍ନାଥଙ୍କର ସେବକ ବିଶେଷ; ଯେଉଁ ବ୍ୟକ୍ତି ସୁଆର ବା ପାଚକମାନଙ୍କୁ କଟା ପରିବା, ବଟାମସଲା ଆଦି ଯୋଗାଏ ।





୧୨୫୫୬. ଝକ ଝକ କରିବା ।

(ଦୀପ୍ତି, କାନ୍ତି, କଳହ, ଦରଦାମ ଉପରେ ଆପତ୍ତି ।)

୧୨୫୫୭. ଝକ୍‌ଝକ୍ ଜରି

ଏହା ପିନ୍ଧିଲେ କି ଦିନ ସରି ?

(ଜରି ସାଧାରଣତଃ ଜକ୍ ଜକ୍ ଦିଶେ । କିନ୍ତୁ ଅଳ୍ପ ଦିନରେ ମଳିନ ହୋଇଯାଏ । ଏହା ଅସ୍ଥାୟୀ । ଯାହା ସବୁବେଳେ ଝଟକେ, ତାହା ସ୍ଥାୟୀ ।)

୧୨୫୫୮. *ଏକାର୍ଥରେ* - ଝୁଟା ଜରି, ଏହା ପିନ୍ଧିଲେ କି ଦିନ ସରି ?

( ନକଲି ବା କମସଲ ବସ୍ତୁ ଚିରସ୍ଥାୟୀ ନୁହେଁ ।)

୧୨୫୫୯. ଝକ୍ ଝକ୍ ନାରୀ

ଯେ ପାଇବ ତା'ରି ।

(ସୁନ୍ଦରୀ ସ୍ତ୍ରୀ ଭାଗ୍ୟରେ ଥିଲେ ମିଳେ । କୌଣସି ଜିନିଷ ହଜିଥିଲେ ଖୋଜିବାବେଳେ ପିଲାମାନେ ଏହି ପଦଟି ଗାଉଥାନ୍ତି । ଏହାର ଅର୍ଥ,ଯେ ଖୋଜୁ ଖୋଜୁ ପାଇବ, ଜିନିଷଟି ତା'ର, ପ୍ରକୃତ ଅଧିକାରୀର ନୁହେଁ ।)

୧୨୫୬୦. ଝକ୍ ମାରିବା ।

(ବ୍ୟର୍ଥ ସମୟ କଟାଇବା ।)

୧୨୫୬୧. ଝକମାରିର (=ନିର୍ବୋଧ) ମାଶୁଲ (=ଗଚ୍ଚା/ଜୋରିମାନା) ।

(ନିର୍ବୋଧକୁ ସବୁ କ୍ଷେତ୍ରରେ ଜୋରିମାନା ଦେବାକୁ ପଡ଼ିଥାଏ ।)

୧୨୫୬୨. ଝଗଡ଼ା କଲା,

ଝଟକେ ଅନ୍ତ କରି କହିଲା ।

୧୨୫୬୩. ଝଗଡ଼ା କଲେ, ଜାବଡ଼ା (ଚଟକଣା) ମିଳେ ।

(ପ୍ରବଳ ବଳଶାଳୀ ହେଲେ ମଧ୍ୟ କଳିଗୋଳରେ ମାଡ଼ ବାଜିବା ନିଶ୍ଚିତ ଅଟେ ।)

୧୨୫୬୪. ଝଗଡ଼ା ଝଞ୍ଜଟ ।

(କଳି ତକରାଳ ।)

୧୨୫୬୫. ଝଗଡ଼ା ଝାଣ୍ଟି ।

(କଳି ତକରାଳ, ଲଢ଼େଇ ଝଗଡ଼ା ।)

୧୨୫୬୬. ଝଗଡ଼ା ଝାଣ୍ଟିର ହଦ୍ଦ (=ଚୁଡ଼ାନ୍ତ), ଭୂତ ବାପର ଶ୍ରାଦ୍ଧ ।

(ବିଶୃଙ୍ଖଳା ବ୍ୟାପାର)

୧୨୫୬୭. ଝଗଡ଼ା ତିନିଟି ଚେର,

ଜନ (=ଲୋକବଳ) ଜମିନ(=ଜମିବାଡ଼ି-ଧନ) ଜର (=ସ୍ତ୍ରୀ) ।

(ସ୍ତ୍ରୀ, ଜମିବାଡ଼ି -ଧନ , ଲୋକବଳ ଏହି ତିନୋଟି କାରଣରୁ ସଂସାରରେ ଲଢ଼େଇ ଝଗଡ଼ା ହୋଇଥାଏ ।)

୧୨୫୬୮. ଝଗଡ଼ାବାଜ ଝଗଡ଼ା କରେ, ଶିମୁଳି ଗଛରେ ଗାଣ୍ଡି ଘଷି ମରେ ।

୧୨୫୬୯. ଝଗଡ଼ାବାଜ ଯିଏ ଝଗଡ଼ି ନ ପାରେ

ବେଣା ଗଛରେ ଗାଣ୍ଡି ଘଷି ଘଷି ମରେ ।

୧୨୫୭୦. ଝଙ୍କଡ଼େ ସାରଳା ମାତା

ଲେଖିଜାଣ ତମେ କେତେ କବିତା, ହାତରେ କଲମ ଖାତା ।

୧୨୫୭୧. ଝଞ୍ଜଟ ମୁଲେଇ ନେବା ।

(ଗୋଳମାଳରେ ପଡ଼ିବା ।)

୧୨୫୭୨. *ଏକାର୍ଥରେ* - ଝଞ୍ଜଟ ଘୋଡ଼େଇ ହବା ।

୧୨୫୭୩. ଝଞ୍ଜଟ ହେବା ।

(ଝଗଡ଼ା ହେବା / ଛତିଶଗଡ଼ି ବୋଲାବୋଲି ହେବା ।)

୧୨୫୭୪. ଝଞ୍ଜା ବରଷାରେ ରସେ ରସା,

ରସାଳସା ନଭାଙ୍ଗେ ଭରସା ।

କରୁ କି ଘେନି ଏଡ଼େ ରୁଷା ।

ଧନ ଘନ ରସକୁ ବରଷା ।

୧୨୫୭୫. ଝଟକ ଝଟିଆ ବନା !

ଖାଉଥେ/ଥିଲୁ କୁଆ ଅଇଁଠା ସିନା,

ପୁରୁବ ଖଣ୍ଡିକି ଅନା /ସେଇଁ ମରୁଥେଲୁ ଦନା ।

(ବନମାଳୀ ନାମକ ପିଲାକୁ ଉପହାସ)

୧୨୫୭୬. ଝଟକ ଝଟିଆ ବନା
ଖାଉଥିଲୁ କୁଆ ଅଇଁଠା (=ଖୋଲାମେଲାରେ ଥିବା ଖାଦ୍ୟରେ କୁଆ ଥଣ୍ଟ ମାରି ଦିଏ) ସିନା
ପୃରୁପ ଖଣ୍ଡିକ ଅନା ।
(ଅବିଗୁଣିଆ ଟୋକା ବନାକୁ ଚିଡ଼ାଇବା ପଦ ।)

୧୨୫୭୭. ଝଟକା ଖାଇବା ।
(ସୁଖ ସମ୍ପଦର ଅଭାବ ହେବା । କ୍ଷତି ହେବା । ଗାଳି-ଗୁଲଜ ଶୁଣିବା । ଅସଫଳ ହେବା । ଭୁଲର ଖରାପ ପରିଣାମ ଭୋଗିବା ।)

୧୨୫୭୮. ଝଟକା ଦେବା ।
(ଧକ୍କା ଦେବା । କ୍ଷତି କରେଇବା ।)

୧୨୫୭୯. ଝଟତି ପଲ୍ଲବେ ଦାରୁରେ ସଖି
ଝଡ଼ି ପଡ଼ିବନି ମେରୁ
ଝାମ୍ପୁ ଯାଇ ପଖି ଉଡ଼ିଯାଇ ପଡ଼େ
କି ଛାର ଅବଳା ଭୀରୁ ।

୧୨୫୮୦. ଝଟପଟ ଧନୀ, ଅଧା ତେଲ ଅଧା ପାଣି ।
(ତରବରିଆ କାମରେ ଖଇଚା ରହିଯିବା ।)

୧୨୫୮୧. ଝଟ /ଚଟ ମଙ୍ଗନ ପଟ ବାହା (=ବିବାହ) ।
(କୌଣସି କାର୍ଯ୍ୟ ଅତି ତରବରରେ ହେଲେ ଏହିପରି କୁହାଯାଏ ।)

୧୨୫୮୨. ଝଠ (=ଝଟ) ଗାଧ (=ଗାଧାଅ), ମଠ (=ମଠେଇ ମଠେଇ) ଖାଅ ।

୧୨୫୮୩. ଝଡ଼ ଆଗରେ ଅଇଁଠାପତ୍ର ।

୧୨୫୮୪. ଝଡ଼ ଆଗରେ କଦଳୀ ଗଛ ।

୧୨୫୮୫. ଝଡ଼ ଆଗରେ ଧୂଳି ଉଡ଼େ ।

୧୨୫୮୬. ଝଡ଼ ଉତ୍ତାରୁ ଝାମ୍ପି, ବୟସ ଗଡ଼େଇ ବାହା ।

୧୨୫୮୭. ଝଡ଼ପ (=କଳି) ହେବା ।
(କଳି ତକରାଳ ହେବା । କ୍ରୋଧପୂର୍ଣ୍ଣ ବୋଲାବୋଲି ।)

୧୨୫୮୮. ଝଡ଼ ବରଷା
କାଠ ଚାଉଳ ଥିଲେ ଭରସା ।
(ଝଡ଼ ବର୍ଷାରେ ଦୋକାନ ବଜାର ବନ୍ଦ ହୋଇଗଲେ କାଠ-ଚାଉଳ ମିଳିବା କଷ୍ଟକର । ତେଣୁ ଆଗରୁ ଏହାକୁ ସାଇତି ରଖିବା ଉଚିତ୍ ।)

୧୨୫୮୯. ଝଡ଼ ମୁହଁରେ ଶୁଖିଲା ପତ୍ର ।

୧୨୫୯୦. ଝଡ଼ର ଆକାର ଝଗଡ଼ା ।

୧୨୫୯୧. ଝଡ଼ର କୁଆ / ଝଡ଼ର ଇଗଲ୍ ।

୧୨୫୯୨. ଝଡ଼ରେ କୁଆ ମରେ, ଫକିରର କରାମତି ବଢ଼େ ।

୧୨୫୯୩. *ଏକାର୍ଥରେ -* ବର୍ଷା ବତାସରେ ବଗ ମରେ,
ଫକିର କହେ କରାମତି ବଳେ ।

୧୨୫୯୪. ଝଡ଼ରେ ପଡ଼ିଲା କଲା (=କଦଳୀ),
ବୋହୂ ବୋଲେ-ମୋର ବେଳା ।

୧୨୫୯୫. *ଏକାର୍ଥରେ -* ବିଭାଘର ନୁହେଁ ପାଗଳଙ୍କ ମେଳ,
ହାଣ୍ଡିଖାଇ ବୋଲେ-ମୋର ବେଳ ।

୧୨୫୯୬. *ଏଜନ -* ଆମ୍ବ ଝଡ଼ିବା, କାଉ ଖୁମ୍ପିବା ।
(କାର୍ଯ୍ୟକାରଣ ସମ୍ପର୍କ ନ ଥାଇ ଘଟିବା ଘଟଣା । ଦୈବ ଯୋଗ ପଡ଼ିବା ।)

୧୨୫୯୭. *ଏଜନ -* ଆମ୍ବ ପାଚିଲା ବେଳକୁ କାଉ ଝାମ୍ପିଲା ।

୧୨୫୯୮. ଝଡ଼ ସମୟରେ ଖଇ (ମୁଢ଼ି) ଭାଜିବା ।

୧୨୫୯୯. ଝଡ଼ା ମହୁର,
ଝଡ଼ା ମହୁରରେ ଖଡ଼ାକୁ ଭର ।

୧୨୬୦୦. ଝଡ଼ିପୋକର ଭୋଗ ଅଢ଼େଇ ବେଳ ।

୧୨୬୦୧. ଝଡ଼ି ଲାଗିବା ।
(କ୍ରମାଗତ ବର୍ଷା ହେବା । କୌଣସି କାର୍ଯ୍ୟକୁ ନିରନ୍ତର ଚାଲୁ ରଖିବା ।)

୧୨୬୦୨. ଝଡ଼ିଲା ଫଳ ପଡ଼ିଲା ଜଳ
ବୁଦ୍ଧିଆ ଲୋକକୁ ରୋକିବ କିଏ ।
(ଝଡୁଥିବା ପାଚିଲା ଫଳ, ବର୍ଷାପାଣି ଅଟକାଇବା ଅସମ୍ଭବ । ବୁଦ୍ଧିବିବେକ ଥିବା ଲୋକଙ୍କୁ କୌଣସି କାର୍ଯ୍ୟରେ ରୋକିବା କଷ୍ଟକର । )

୧୨୬୦୩. ଝଡ଼େଇ ଖାଇଲା /ଖାଉଛି ବରକୋଳି ଗଛ
ଡରେଇ ଖାଇଲା /ଖାଉଛି ପୋଖରୀକ ମାଛ ।
(ବଳପୂର୍ବକ ଅନଧିକାର ପ୍ରବେଶ କରିବା ବା ଧମକରେ କାମ କରାଇନେବା ବ୍ୟକ୍ତି ପ୍ରତି । ଜମିଦାର ଆଖି ଦେଖାଇ ପ୍ରଜାବାଡ଼ିରୁ ଫୁଲଫଳ ତୋଳି ନେଉଥିଲେ, ପୋଖରୀର ମାଛ ମାରି ନେଉଥିଲେ । ତାଙ୍କ ଚରିତ୍ରକୁ ଉପଲକ୍ଷ୍ୟ କରି ରଚିତ । )

୧୨୬୦୪. ଝଣ୍ଡା ଉଡ଼େଇବା ।

(ଶ୍ରେଷ୍ଠତା ସ୍ଥାପିତ କରିବା । ପୂର୍ଣ୍ଣ ଅଧିକାର ଜମେଇବା ।)

୧୨୬୦୫. ଝଣ୍ଡା ଝୁକାଇବା ।

(ଦବିଯିବା / ହାର ମାନିବା ।)

୧୨୬୦୬. ଝଣ୍ଡା ଝୁକିବା ।

(ପ୍ରତିଷ୍ଠା ଉପରେ ଆଞ୍ଚ ଆସିବା / ପ୍ରଭାବ କମିଯିବା ।)

୧୨୬୦୭. ଝଣ୍ଡା ତଳକୁ ଆସିବା ।

(ନେତୃତ୍ୱ ସ୍ୱୀକାର କରିବା । ସଙ୍ଗଠିତ ହେବା । କୌଣସି ଏକ ପକ୍ଷର ଅଧୀନ ହେବା ।)

୧୨୬୦୮. ଝପକି ନେବା ।

(ଅଳ୍ପ ଶୋଇଯିବା /ଢୁଳାଇବା ।)

୧୨୬୦୯. ଝପ ଝପ ଚାଲି, ଝୁଣ୍ଟି ପଡ଼ିଲେ ଗାଳି,

ଝାଳ ଗମ ଗମ, ତବତ ବାଲି ।

(ସ୍ତ୍ରୀଲୋକ ପକ୍ଷରେ ଏହିସବୁ ପ୍ରକୃତି ଭଲ ନୁହେଁ । ଏହାକୁ ତତଲା ବାଲି ଏବଂ ଦେହର ଝାଳ ସହିତ ତୁଳନା କରାଯାଇଛି )

୧୨୬୧୦. ଝପଟା ମାରିବା ।

(ହଠାତ୍ ଆକ୍ରମଣ କରିବା ।)

୧୨୬୧୧. ଝପଟି ଅଇଲି ଝପଟି ଗଲି

ପତୁରି ମସିଣା ପଡ଼ିଛି

ସରୁ ଚୁଡ଼ାଖିଆ ମଉନମୁହାଁ

ଭାଉଜ ଶିଖାରେ ପଡ଼ିଛି ।

(ଭଲ ଖାଇବାକୁ ଦେଇ ଦିଅରକୁ ପାଲରେ ପକାଇଛି ବୋଲି ଭାଉଜଙ୍କୁ ଅପବାଦ କରାଯାଇଛି ।)

୧୨୬୧୨. ଝପଟି ନେବା ।

(ଛିନତାଇ କରିବା । ଚଟ କରି ଛଡ଼େଇ ନେବା ।)

୧୨୬୧୩. ଝପଟେ କୁତା ଦେଖି ବିଲେଇ

ଚିତା ଦେଖିଲେ ଆସେ ପଳାଇ ।

୧୨୬୧୪. ଝମକାଇ କରି ବିଜୁଳି ମାଇଲା
କଳାମେଘ ଢୁଲୁକିଲା
ଗମ୍ଭୀରି ଘରରେ ବେଳକାଳ ଜାଣି
ବୋହୂମୁଣ୍ଡ ଧମକିଲା ।
( ନିବୁଜ ଘରେ ମୁଣ୍ଡ ବିନ୍ଧୁଛି ବୋଲି ପେଶନା କରୁଥିବାରୁ ଅଭିସାରିକା ବୋହୂ ପ୍ରତି ବ୍ୟଙ୍ଗ ।)

୧୨୬୧୫. ଝମକା ଝାଡ଼ି, ଦେଉଛି ଝାଡ଼ି ।
(ବଳପ୍ରୟୋଗ କରି ଝାଡ଼ିଲେ,ମନକୁ ମନ ସବୁ ଝଡ଼ି ଯାଏ ।)

୧୨୬୧୬. ଝର ଝର ଝରଣା,
ଯେହୁ ଝରିବ, ସେହୁ ତରିବ,
ନ ଝରିଲେ କୁମ୍ଭାର ଉହାରେ ପୋଡ଼ି ମାରିବ ।

୧୨୬୧୭. ଝରଝର ଝରେ ନିଶି ପତିତ ତୁଷାର । (ମଧୁସୂଦନ : କବିତାବଳୀ)

୧୨୬୧୮. ଝରଣ(=ଝରଣା) ପାଣି ମରଣ ଦ୍ୱାର ।

୧୨୬୧୯. ଝରଣିଆ ଆମ୍ବ, ଝରଣ ପାଣି
ଖାଇଲେ ପିଇଲେ ପାରିବୁ ଜାଣି ।

୧୨୬୨୦. ଝରିଲେ ବିନ୍ଦୁ, ସୁଖେକି ସିନ୍ଧୁ ।
(ପାଣି ଝରିଲେ ବିନ୍ଦୁ ବିନ୍ଦୁ ହୋଇ ପଡ଼େ । ସିନ୍ଧୁ ନଦୀର ଅକାତ ପାଣି ଶୁଖେ ନାହିଁ ।)

୧୨୬୨୧. ଝରୁ ଆମ୍ବ କସି ଶୀତଳାରେ ବସି
ଦିହ ଯାକ ହେଲା ଲସି
ବସିଲା ଥାନରେ ଅମୃତ ଦେବି
ତା'ର ମନ ନେବି ତୋଷି
ବାଲିଫୁଲ ମ'ର ଘାଗୁଡ଼ି ମାଳ, ଆଉ ତୁ ହନି ବିକଳ ।

୧୨୬୨୨. ଝଲପ (= ପାତଳ ଝକଝକ) ଲୁଗା, ଝଲକା (=କାନର ଅଳଙ୍କାର) ସୁନା
ଝଷକେତୁର(=କାମଦେବଙ୍କ) ଉଡ଼ାଏ ବାନା ।

୧୨୬୨୩. ଝଲମଲି ଝକ ଝକ
ଝଲମଲୀ ସଙ୍ଗେ ଷାଠିଏ ଲୋକ ।
(ଧନୀ ସୁନ୍ଦରୀ ରସିକାକୁ ବହୁ ପୁରୁଷ ଅନୁସରଣ କରନ୍ତି । ଲଜ୍ଜା, ସଂକୋଚହୀନା ଧନୀ କନ୍ୟାପ୍ରତି ବ୍ୟଙ୍ଗ ।)

୧୨୬୨୪. ଝଁକ୍ ସମ୍ଭାଳିବା ।
(କ୍ଷତି ସହିଯିବା ।)

୧୨୬୨୫. ଝାଇଁ ଝଟକିଲା, ବିଜୁଳି ମାଇଲା
ଦାଣ୍ଡ ଧୂଳି ନେଲା ଉଡ଼ାଇ,
ଏଇ ବାଟେ ଗଲା, କଥା ନ କହିଲା
ସାଙ୍ଗରେ ଗଲିକି ଗୋଡ଼ାଇ ?
(ମାନରେ ମାନର ପ୍ରେମ ପ୍ରତିଶୋଧ ।)

୧୨୬୨୬. ଝାଉମରା (=ଝୋଲାମାରିବା) ଜର,
ଅରୁଚି ତୃଷାକୁ ଡର ।

୧୨୬୨୭. ଝାଏଁ କରି ଆସେ ଝାଏଁ କରି ଯାଏ ।
'ଝାଏଁ ଜୋଡ଼' ତେଣୁ ସେ ନଦୀ ବୋଲାଏ । (ପଶ୍ଚିମ ଓଡ଼ିଶା)

୧୨୬୨୮. ଝାଙ୍କୁ ନ ବୋଲ ପଦା ।
ଝାଡୁଆକୁ ନ ବୋଲ ଦାଦା ।

୧୨୬୨୯. ଝାଙ୍କର (=ଅନାର୍ଯ୍ୟଙ୍କର) ନାମ ଗଲାଣି ଉଠି ।
ଆଉ କେ କରିବ ପୋଲିସ ବେଠି ?

୧୨୬୩୦. ଝାଙ୍ଗଡ଼ ମାଇଲା ଝାଇଁ, ମୋ ଧନରେ
ବିଜୁଳି ମାଇଲା ଝାଇଁ
ଆସିବୁ ବୋଲିତୁ ଚନ୍ଦ୍ରମା ମୁହିଁଲୋ ଜାଇଫୁଲ
ବସିଛି ବାଟ ଅନାଇଁ । (ଡୁମ୍ପା ଗୀତ)

୧୨୬୩୧. ଝାଟିକି ଦେଲି ମାଟି;
ଉରାଲାଗି ଘର ପଥର କାନ୍ଥି /ଖୁଣ୍ଟି,
ବଇସି/ଛି ଗୁଣ୍ଡିଣି ହାତୀ ।

୧୨୬୩୨. ଝାଟିକି ମାଟି
କୁମ୍ଭାରୁଣୀର ଦି ପାଇଟି ।
*ଏକାର୍ଥରେ* - କୁମ୍ଭାରୁଣୀ ବୋହୂ, ଝାଟିକି ନଗଲେ ମାଟିକି ଯାଉ ।
(ମାଟିରେ ହାଣ୍ଡି ଗଢ଼ା ହୁଏ । ହାଣ୍ଡି ପୋଡ଼ିବା ଲାଗି ଝାଟି ଜଳାଯାଏ । ଏ ଦୁଇଟି ଜିନିଷ କୁମ୍ଭାରୁଣୀକୁ ସଂଗ୍ରହ କରିବାକୁ ହୋଇଥାଏ ।)

୧୨୬୩୩. ଝାଟିକୁ ସୁନ୍ଦର ମାଟି
ମୋ ଧନ ମୁଣ୍ଡରେ ଚନ୍ଦନ ପାଟି ଲୋ,
ଯାଉ ଦରବାର ଫାଟି ।

୧୨୬୩୪. ଝାଟି ଥିଲେ ମାଟି ଲାଗଇ ସିନା ।
(ମୂଳ ଅବଲମ୍ବନ ଥିଲେ କିଛି ଗଢ଼ି ହୁଏ ।)

୧୨୬୩୫. ଝାଟି ମାଟି କିଏ ଛାଣ୍ଡିଲା ଲୋ
ଝଡ଼ି ପଡ଼ିଅଛି ପାନ
କାନ୍ତଙ୍କ କଥାରେ କରିଛି ମାନ
ରହିବ କି ଦୁଇ ଦିନ ?
(ଦାମ୍ପତ୍ୟ କଳହ କ୍ଷଣସ୍ଥାୟୀ ।)

୧୨୬୩୬. ଝାଟି ମାଟି ଟାଳଘର
ନିଆଁ ପାଣିକି ସଦା ଡର ।
(ଟାଳଘର ପୋଡ଼ିଯିବା, ଅତି ବର୍ଷା ଓ ବନ୍ୟାରେ ଭାଙ୍ଗିଯିବା ଭୟ ସବୁବେଳେ ଥାଏ ।)

୧୨୬୩୭. ଝାଡ଼ ଜଙ୍ଗଲ, ଥିଲେ ମଙ୍ଗଳ ।
(ଘନ ଜଙ୍ଗଲ, ମଣିଷର ମଙ୍ଗଳକର ହୋଇଥାଏ ।)

୧୨୬୩୮. ଝାଡ଼(=ଜଙ୍ଗଲ) ନାହିଁ, ଝଡ଼ି (=ଲଗାଣବର୍ଷା) ନାହିଁ ।
(ଜଙ୍ଗଲ ନଥିବା ସ୍ଥାନମାନଙ୍କରେ ଭଲ ବର୍ଷାର ସମ୍ଭାବନା ନାହିଁ ।)

୧୨୬୩୯. ଝାଡ଼ ଫୁଙ୍କା ଅଙ୍କା ଦଗା,
ରୋଗ ଶାନ୍ତି ଦେଖି ବଇଦ ବଗା ।

୧୨୬୪୦. ଝାଡ଼ର କଣ୍ଟା କିଏ ଗୁଜକାଇ ଥାଏ ?
(ବଣର କଣ୍ଟା ସ୍ୱାଭାବିକ ଭାବେ ମୁନିଆ । ପରମ୍ପରାକ୍ରମେ କୌଣସି କୁଳର ମଣିଷ ବୁଦ୍ଧିଆ । ସେହିପରି କୌଣସି ଲୋକର ପ୍ରତିଭା ଭଗବଦ୍ ଦତ୍ତ ।)

୧୨୬୪୧. ଝାଡ଼ର ଦେବତାକୁ ପତ୍ର ବାଉଡ଼ୀ(=ପତ୍ର ସଉରା)ପୂଜାରୀ ।

୧୨୬୪୨. *ଏକାର୍ଥରେ* - ଯେମିତି ଦିଅଙ୍କୁ ସେମିତି ପୂଜା, ସେମିତି ପୂଜାହାରୀ ।

୧୨୬୪୩. ଝାଡ଼ା ଫେରିବ କପା ଆଟେ
ପାଣି ପିଇବ ମଝା ଘାଟେ

ଘରବାଡ଼ିରେ ପୋଖରୀ ଖୋଳିବ
ସେଇ ବାଡ଼ିରେ ବଜାର ବସିବ ।
(ବାଡ଼ିରେ ପୋଖରୀ ଖୋଳି ବଗିଚା କଲେ, ପରିବା କିଣିବା ଲାଗି ବଜାରକୁ ଯିବାକୁ ପଡ଼ିବ ନାହିଁ ।)

୧୨୬୪୪. ଝାଡ଼ି(= ଛୋଟ ଜଙ୍ଗଲ) ଖାଇଲା ବରକୋଳି ଗଛ,
ତରେଇ (=ପୋଖରୀ) ଖାଇଲା ପୋଖରୀକ ମାଛ ।

୧୨୬୪୫. ଝାଡ଼ିବ ଯେତେ ଝଡ଼ିବ ତେତେ ।

୧୨୬୪୬. ଝାଡୁଅ (=ବଣୁଆ) ଓଡ଼ିଆ ଓଡ଼ିଶାବାସୀ
ଝଗଡ଼ା କରୁଛ ଝାଡ଼ରୁ(=ଜଙ୍ଗଲରୁ) ଆସି ।

୧୨୬୪୭. ଝାଡୁଆ କାଟ,
ଓଡ଼ିଆ ବ୍ରାହ୍ମଣ ପଢ଼ ସେ ପାଠ ।

୧୨୬୪୮. ଝାଡୁ ମୁଠା ହାତେ ଧରି ନଥିଲି
ହାତରେ ମୁଁ ଭାତ ଖାଇ ନଥିଲି ।
ସକାଳ ଖିଆ ମୋ କିଏ ବୁଝିବ ?
ଶୋଇଥିଲେ କିଏ ଉଠାଇ ଦେବ ?
ଗାଧେଇବା ପାଇଁ କିଏ ତଡ଼ିବ ?
ପିଠିରେ ହଳଦୀ ଲଗାଇ ଦେବ ?
କାହା ସଙ୍ଗେ ଭାତ ଖାଇବି ବସି ?
କେ ଗେଲ କରିବ ପିଠି ଆଉଁସି ?
ମନ କଥା ମୋର କିଏ ବୁଝିବ ?
ପାନ ଭାଙ୍ଗି କିଏ ଖୁଆଇ ଦେବ ?
ସବୁ ସଉକି ତ ଆଜିଠୁଁ ଗଲା
ଚାନ୍ଦନୀ ରାତିତ ଅନ୍ଧାର ହେଲା ।

୧୨୬୪୯. ଝାଡ଼େ(=ଜଙ୍ଗଲରେ) ଥିଲେ ହାତୀ ରଜାଙ୍କର ।
(ମାଲିକ ନିଜ ଜାଗା ଉପରେ ମାଲିକାନା ସାବ୍ୟସ୍ତ କରିବା କ୍ଷେତ୍ରରେ ପ୍ରଯୁକ୍ତ । )

୧୨୬୫୦. *ଏକାର୍ଥରେ* - ଡିହ ପୁତି(=କୁକୁର) ଭୋ ଭୋ ।

୧୨୬୫୧. ଝାଣ୍ଟି ଲାଞ୍ଜୁଆ ସବୁଠାରୁ ଭଲ ।
(ଛାଞ୍ଚୁଣିପରି ଗୋଛାଏ ବାଳ ଯାହା ଲାଞ୍ଜରେ ଥାଏ ତାହା ସବୁଠାରୁ ଭଲ ।)

୧୨୬୫୨. ଝାମ୍ପୁରି ମୁଣ୍ଡୀ, ଓଲେଇ ତୁଣ୍ଡୀ
ଏମାନଙ୍କ ହାତେ ନଦେବ ହାଣ୍ଡି ।
(ଝାମ୍ପୁରିମୁଣ୍ଡୀ ରାନ୍ଧିଲେ ଭାତ ଚିଅଣରେ ବାଳ ପଡ଼ିପାରେ, ଓଲେଇତୁଣ୍ଡୀ ପାଟିରେ ପକାଏ । )

୧୨୬୫୩. ଝାର୍ (=ବଣ)ମଲ୍ ମଲ୍ ପିପଲ୍(=ଓସ୍ତଗଛ) ପତର
ପାଏନ୍(=ପାଣି)ମଲ୍ ମଲ୍(=ଅସ୍ଥିର) କେରାଳି (=କେରାଣ୍ଡିମାଛ)
ଗାଁ ମଲ୍ ମଲ୍ ରାଆଁଡ଼ୀ(=ବିଧବା) ଛାଡ଼ିରୀ (=ପରିତ୍ୟକ୍ତା ସ୍ତ୍ରୀ)
ସଭା ମଲ୍ ମଲ୍ ଭଣ୍ଡାରୀ ।
(ବଣରେ ଓସ୍ତଗଛ ପତ୍ର, ପାଣିରେ କରାଣ୍ଡି ମାଛ, ଗାଁରେ ପରିତ୍ୟକ୍ତା ଓ ବିଧବା ସ୍ତ୍ରୀ, ସଭାରେ ବାରିକ ସବୁବେଳେ ଅସ୍ଥିର ଓ ଫରଫର୍ ହେଉଥାନ୍ତି ।)

୧୨୬୫୪. ଝାଳ ଗମଗମ ବୋହୁଛି,
ଶ୍ରୀଅଙ୍ଗକୁ ବାଧା ହେଉଛି ।
(ତନୁପାତେଳୀ ସ୍ତ୍ରୀଲୋକକୁ କଟାକ୍ଷ ।)

୧୨୬୫୫. ଝାଳ ବହୁଥିବ ଅଙ୍ଗେ ଲାଗି ଝାଞ୍ଜି ଖରା,
ଶ୍ରମ ପାଇ ତରୁତଳେ ବସିଥିବୁ ପରା, କଳାମାଣିକରେ ।
(ଅଭିମନ୍ୟୁଙ୍କ ବାଲ୍ୟରଚନା)

୧୨୬୫୬. ଝାଳବୁହା ଧନ ।
(କଠୋର ଶ୍ରମରେ ଅର୍ଜିତ ଧନ ।)

୧୨୬୫୭. ଝାଲ (=ରାଗ), ପୋଛା (= ତଳତଳିଆ) ମାଲ (=ଦ୍ରବ୍ୟ) ।
(ତଳତଳିଆ ଖାଦ୍ୟପଦାର୍ଥ ସାଧାରଣତଃ ରାଗ ଲାଗେ ।)

୧୨୬୫୮. ଝାଲିଆ ମୟୂର ଝାଲିଟା ସୁନ୍ଦର
ଆଡ଼କି ଚରିଲା ଖତେ (= ଗୋବର ଖତ)
ତମେ ଆମେ ଆସ ପ୍ରୀତି କରିବା
ଜୀବ ଥିବା ପରିଯନ୍ତେ
ଆସ ବାବୁଧନ ! କେଳି କରିବା, ହସି ମାତି ଦିନ ନେବା ।

୧୨୬୫୯. ଝିଅ ଅଲିଅଳ ହୋଇ ବଢ଼ିଛନ୍ତି
ଭାତ ଟୋକି ଟୋକି ଖାଉଛନ୍ତି
ହାତ ମୁଠି ମୁଠି କରୁଛନ୍ତି
ଖଟ ପଲଙ୍କରେ ଗଡୁଛନ୍ତି
ହଂସୁଲୀ ତୂଳୀରେ ହସୁଛନ୍ତି ।
(ଗେଲବସରରେ ବଢ଼ିଥିବା ଝିଅ ବୋହୂ ଭାବରେ କୁଟା ଖଣ୍ଡକ ଦି'ଖଣ୍ଡ ନକରିବାରୁ ଶାଶୂ ନଣନ୍ଦଙ୍କ ପରିହାସ ।)

୧୨୬୬୦. ଝିଅ କଥାରେ ଜୋଇଁ ଚାଲିଲେ
ମାଆର ଆନନ୍ଦ ଦେଖେ କିଏ ?
ବୋହୂ କଥାରେ ପୁଅ ଚାଲିଲେ
ମାଆର ମନ ବିଦାରି ହୁଏ ।
(ସମାଜରେ ଶ୍ୱଶୁରଘର ଉପରେ ନିର୍ଭରଶୀଳ ବ୍ୟକ୍ତିର ସମ୍ମାନ ଊଣା । ସ୍ୱାଧୀନଚେତା ବ୍ୟକ୍ତିର ପୌରୁଷ ପ୍ରଶଂସନୀୟ । ସେ ସ୍ତ୍ରୀ କଥାରେ ପଡ଼ି ନିଜ ମା' ପ୍ରତି ଅବହେଳା କରେ ନାହିଁ ।)

୧୨୬୬୧. ଝିଅ କାହାର ପୁଅ କାହାର
ଢୋଲ ବାଜୁଛି ମଝି ବାହାର ।

୧୨୬୬୨. *ଏକାର୍ଥରେ* - ଝିଅ କାର ପୁଅ କାର
ବାଇଦ ବାଜୁଛି ଯାର ତାର ।
(ପୋଷା ପୁଅ,ପୋଷା ଝିଅ, ଦୁଇ ପକ୍ଷର ଆଡ଼ମ୍ବରରେ ବିବାହଉତ୍ସବ ହେଲେ ଏହି ବ୍ୟଙ୍ଗ ପ୍ରଯୁକ୍ତ ।)

୧୨୬୬୩. ଝିଅକୁ ଦେଇ ଜୋଇଁକି ଉପକାର ଲଦିବା ।
(ନିଜର ସ୍ୱାର୍ଥସିଦ୍ଧି କରି ଆଉ ଜଣଙ୍କର ଉପକାର କରିଥିବାର ଆସ୍ଫାଳନ । )

୧୨୬୬୪. ଝିଅକୁ ପୁଅ ବୋଲି କହିଲେ କି ଦିନ ସରିବ ?
(ଝିଅ ଶାଶୁଘରର ସ୍ୱାର୍ଥ ଦେଖେ । ବାପଘରର ଭଲମନ୍ଦ ବୁଝିବା ସମ୍ଭବ ହୁଏ ନାହିଁ । ପୁଅ ନଥିବା ଲୋକ ଝିଅକୁ ପୁଅ ବୋଲି କହି ଅଶାନ୍ତ ମନକୁ ଶାନ୍ତ କରିଥାଏ ।)

୧୨୬୬୫. ଝିଅକୁ ମାରି ବୋହୂକୁ ଶିଖାଏ ।
(ଜଣକୁ ଶାସ୍ତି ଦେଇ ଅନ୍ୟଜଣକୁ ସତର୍କ କରାଇ ଦିଆଯାଏ ।)

୧୨୬୬୬. ଝିଅକୁ ଯମ/ବାଘ ନେଲେ ଯେ, ଜୋଇଁ ନେଲେ ସେ ।
(ପୂର୍ବକାଳରେ କନ୍ୟା ଶାଶୁଘରକୁ ଯାଇ ବାପଘରକୁ ଫେରୁ ନଥିବା ପ୍ରଥା ପ୍ରତି କଟାକ୍ଷ)

୧୨୬୬୭. ଝିଅ ଖୋଜେ ବର, ମା' ଖୋଜେ ଘର ।

୧୨୬୬୮. ଝିଅ ଘରେ ରହିଲେ ଅଡୁଆ ।
ଘିଅ ଘରେ ରହିଲେ କଡୁଆ(= ରହଣିଆ) ।

୧୨୬୬୯. ଝିଅ, ଘିଅ ବହୁତ ଦିନ ଘରେ ରହିଲେ ସମ୍ଭାଳି ହୁଏ ନାହିଁ ।
( ଘିଅ ବେଶି ଦିନ ରହିଲେ କଡୁଆ ପଡ଼ିଯାଏ ସେହିପରି ବଢ଼ିଲା କନ୍ୟା ବାପଘରେ ବାହା ନ ହୋଇ ବେଶିଦିନ ରହିଲେ ପ୍ରମାଦ ପଡ଼େ ।)

୧୨୬୭୦. ଝିଅ ଘିଅ ଭାତ ଦେଖି ଦିଅ ।

୧୨୬୭୧. ଝିଅ, ଘିଅ ରହିଲେ ଗନ୍ଧାଏ ।
(ଘିଅ ଯେତେ ଖାଣ୍ଟି ହୋଇଥିଲେ ମଧ ବେଶୀଦିନ ରହିଲେ ରହଣିଆ ହୋଇ ଗନ୍ଧାଏ । ସେହିପରି ଝିଅ ବିଭା ନହୋଇ ବେଶୀଦିନ ରହିଲେ ବାପର ଏକ ସମସ୍ୟା ହୋଇଥାଏ ।)

୧୨୬୭୨. ଝିଅ ଜନମ ତୁଛା ଚୂଲୀ ମୁଣ୍ଡକୁ ।

୧୨୬୭୩. ଝିଅ ଜନମ ପର ଘରକୁ ।

୧୨୬୭୪. ଝିଅ ଜନ୍ମ କରି ଦେଲି ଜ୍ୱାଇଁକୁ,
ପୁଅ ଜନ୍ମ କରି ଦେଲି ବୋହୁକୁ ।

୧୨୬୭୫. ଝିଅ ଜନ୍ମ ପଥର,
ପୁଅ ଜନ୍ମ ପତର ।

୧୨୬୭୬. ଝିଅ ଜନ୍ମ ହେଲେ କୋଡ଼ ତୁଛା,
ଲାଉ ଲଗାଇଲେ ପିଢ଼ା ତୁଛା ।

୧୨୬୭୭. ଝିଅ ଝିଆଣି,
ଦବା ନବା ଯାଏଁ ମୁହଁ ଚାହାଁଣି /ନ ଦେଲେ କରନ୍ତି ବାଙ୍କ ଚାହାଁଣୀ ।
(ଝିଅ ଶାଶୁଘରୁ ଫେରି ବାପଘରକୁ ଆସିଲେ ବାପଘରୁ ବିଦାୟ ହେବା ସମୟରେ ଝିଅ ସଙ୍ଗେ ଅନେକ ପଦାର୍ଥ ଯୌତୁକ ଦିଆଯିବା ପ୍ରଥା ପ୍ରତି କଟାକ୍ଷ ।)

୧୨୬୭୮. ଝିଅଟିର ପାଦ ଟଳମଳ
ଗୋଡ଼ ଖସିଗଲା ବାଟରେ
ଝିଅଟିର ମନ ଫରଫର
ଉଡ଼ିଗଲା କାହା ସାଥିରେ ।

୧୨୬୭୯. ଝିଅ ଦୁଇ କୁଳକୁ ପିତା,
ଝିଅ ଦୁଇ କୁଳକୁ ହିତା ।
( ଝିଅ ସନ୍ତାନ ପ୍ରସବ କରି ପିତୃକୁଳ ଓ ଶ୍ୱଶୁରକୁଳକୁ ଉଦ୍ଧାର କରେ)

୧୨୬୮୦. ଝିଅ ଦେଇଥିବ ଯାହାକୁ/ଯେଉଁଠି
ନଇଁ ପଡ଼ିଥିବ ତାହାକୁ/ସେଇଠି ।
(ସମାଜରେ ସ୍ତ୍ରୀର ଆସନର ନ୍ୟୁନତା ପ୍ରତି କଟାକ୍ଷ । କନ୍ୟାପିତା ବିନୀତ ନ ହେଲେ କନ୍ୟା ନିପୀଡ଼ିତା ହେବାର ଶଙ୍କା ଥାଏ । )

୧୨୬୮୧. ଝିଅ ଦେଇ ବଇରୀ, କି ଋଣ ଦେଇ ବଇରୀ ।

୧୨୬୮୨. ଝିଅ ଦେଇ ବାଡ଼ କନିସିରି ଶାଗକୁ ସରି ନୁହେଁ ।
(ଝିଅ ବିଭାଦେଇଥିବା ଘରୁ ସ୍ୱଳ୍ପ ଉପକାର ମଧ ଆଶା କରିବା ବୃଥା ।)

୧୨୬୮୩. ଝିଅ ଦେଇ ବାପ ବୋଲଣା,
ଅକାଳେ ସକାଳେ ଉଇଁ ଆସିଥିଲା, ଛତା ବେଣ୍ଟ କଲି ଗୋଜଣା ।

୧୨୬୮୪. ଝିଅ ଦେଇ ଯେ କଉଡ଼ି ଦିଏ
ଇହ ଜନ୍ମରୁ ମୁକ୍ତ ହୁଏ
ଝିଅ ଦେଇ ଯେ କଉଡ଼ି ନିଏ
ସାତ ଜନ୍ମ ଯାଏ ଘୁଷୁରି ହୁଏ ।
(କନ୍ୟା ଦାନ ସହିତ ଯାନି ଯୌତୁକ ଦେବା ଧର୍ମ । କନ୍ୟା ଦେଇ ପଣ ଗ୍ରହଣ ମହାପାପ ।)

୧୨୬୮୫. ଝିଅ ଦେଖିବ ଗୋଡ଼େଇ ଗୋଡ଼େଇ
ବୋହୂ ଦେଖିବ ଆଡ଼େଇ ଆଡ଼େଇ ।
(ଝିଅ ବିବାହ ପରେ ଦୂରକୁ ଚାଲିଯାଏ, ଆଉ ଦେଖିହୁଏ ନାହିଁ, ତେଣୁ ବିଦା ହେବା ଆଗରୁ ଗୋଡ଼େଇ ଗୋଡ଼େଇ ଝିଅ ଦେଖିବ । ବୋହୂ ସବୁଦିନେ ପାଖରେ ରହିବ । ଯେତେବେଳେ ହେଲେ ଦେଖିପାରିବ । ତେଣୁ ବୋହୂ ଦେଖିବାକୁ ବ୍ୟଗ୍ର ହେବା ଅନାବଶ୍ୟକ ।)

୧୨୬୮୬. ଝିଅ ଦେଲେ ବି ଜୁଆଇଁ ନୁହେଁ
ମା' ଦେଲେ ବି ବାପ ନୁହେଁ
(ଝିଅକୁ ଦିଆଗଲେ ମଧ୍ୟ ଜୁଆଇଁ ଆପଣାର ହୁଏ ନାହିଁ । ସେହିପରି ମା ଯେତେ ଦେଲେ ମଧ୍ୟ ବାପ ପରି ହୋଇ ପାରେ ନାହିଁ । ବାପ ବାପ, ମା' ମା' ହୋଇ ରହେ ।)

୧୨୬୮୭. ଝିଅ ନାହିଁ ଯାର ପଠାଇ ମନ
ବୋହୂ ନାହିଁ ଯାର ଖଟାଇ ମନ ।
(ଯାହାର ବହୁତ ଝିଅ, ସେ ଦୁଃଖେ ସୁଖେ ଦେଇ ଦାଇ ସେମାନଙ୍କୁ ଶାଶୂଘରକୁ ପଠାଏ । ଯାହାର ଝିଅ ନାହିଁ, ଥିଲେ ବହୁତ ଦେଇଥାନ୍ତା ବୋଲି କହେ । ଯାହାର ବୋହୂ ନଥିଲେ ଭଲ ଭାବେ ତା କଥା ବୁଝୁଥାନ୍ତା ବୋଲି କହେ । ଏ ଉଭୟ କ୍ଷେତ୍ରରେ ଏହି ପ୍ରବାଦଟି ପ୍ରଯୁକ୍ତ । ବାଞ୍ଝୀ ସ୍ତ୍ରୀ ଜନ୍ମ କରୁଥିବା ମାଆର କଷ୍ଟ ଦେଖି କହେ - ମୁଁ ହୋଇଥିଲେ ସହଜରେ ଜନ୍ମ କରି ଦେଇଥାନ୍ତି । ଅନୁଭବୀ ବିନା କେହି କଷ୍ଟ ବୁଝିପାରେ ନାହିଁ । )

୧୨୬୮୮. ଝିଅ ନୁହେଁ ସେ ଘିଅ
ତାକୁ ଗମ୍ଭିରୀ ଶିକାରେ ଥୁଅ ।
(ବଢ଼ିଲା ଝିଅକୁ ପରଦା ମଧ୍ୟରେ କାଇଦା କଟକଣାରେ ରଖିବା ଲାଗି ଉପଦେଶ । ସେତେବେଳେ ପରଦା ପ୍ରଥା ପ୍ରଚଳିତ ଥିଲା ।)

୧୨୬୮୯. ଝିଅ ନେଲେ ଘର ସରଇ ନାହିଁ
ବୋହୂ ନେଲେ ଘର ପୂରଇ ନାହିଁ ।
(ଝିଅକୁ ଦେଲେ ବାପଘରକୁ ବାଧେ ନାହିଁ । ବୋହୂ ଯୌତୁକ ଭାର ଘେନି ଆସିଲେ ଶାଶୂଘର ବଡ଼ଲୋକ ହୋଇଯାନ୍ତି ନାହିଁ । )

୧୨୬୯୦. ଝିଅ ପଛେ ମରୁ ରାଣ୍ଡ ନ ହେଉ,
ମାଠିଆ ପଛେ ଭାଙ୍ଗୁ କଣା ନହେଉ ।

୧୨୬୯୧. ଝିଅ ପୋଇଲୀ
ଆମ୍ବ ଟାକୁଆରେ ଥାଏ କୋଇଲି ।
( ଝିଅ ଶାଶୂଘରକୁ ନ ଯାଇ ବାପଘରେ ଦୀର୍ଘକାଳ ରହି କାମଧନ୍ଦା କରିବା ପ୍ରତି କଟାକ୍ଷ । ବାପଘର ଆମ୍ବ ଟାକୁଆ, ଝିଅ ତା ଭିତରର କୋଇଲି ଭଳି ଥାଏ ।)

୧୨୬୯୨. ଝିଅ ବିଭାପାଇଁ ଧାଇଁ
ଅଣ୍ଟାରେ କାଣି କଉଡ଼ି /ଫଟା ପାହୁଲା ନାହିଁ ।

୧୨୬୯୩. ଝିଅ ବିଭାପାଇଁ /ବାହା କରି ମନ, ହାତରେ ନାହିଁଟି ଧନ ।

୧୨୬୯୪. *ଏକାର୍ଥରେ* - ଝିଅ ବିଭା/ବାହା ପାଇଁ ଧପଡ଼ ଧାଇଁ
ଅଣ୍ଟାରେ କାଣିକଉଡ଼ି/ଫଟା ପାହୁଲା ନାହିଁ ।

୧୨୬୯୫. -*ଏଚନ* - ଅଣ୍ଟିରେ ନାହିଁ ଧନ, ପୁଅ ବାହାକରି ମନ ।
(ଟଙ୍କା ପଇସା ନଥାଇ ବିବାହ ବ୍ରତଘର ପରି ବ୍ୟୟବହୁଳ ଉତ୍ସବ କରିବା ହାସ୍ୟକର ।)

୧୨୬୯୬. *ଏକାର୍ଥରେ* - ହାତରେ ନଥାଇ ଧନ, ପୁଅ ବାହାକରି ମନ ।

୧୨୬୯୭. ଝିଅ ବିହାଣ ପିତା ତିଅଣ ।

୧୨୬୯୮. ଝିଅ ବେଧାଇ ମାଇପୋ ଚଣ୍ଡ;
ପୁଅ ଅପାଣ୍ଠୁକ (ମୂର୍ଖ) ବାପର ଦଣ୍ଡ ।

୧୨୬୯୯. ଝିଅ ବୋହୂଙ୍କର ଲାଗଇ କଳି
ନିତି ପଡୁଥାଏ ଘରେ ବୋବାଳି ।
(ନଣନ୍ଦ ଭାଉଜଙ୍କ କଳହ ଯୋଗୁଁ ଗୃହରେ ଅଶାନ୍ତି ଘଟେ ।)

୧୨୭୦୦. ଝିଅ ମରଣ, ପିତା ତିଅଣ, ନ ମିଳେ ରଣ
ଆଗେ ଦୁଃଖ ପଛେ ସୁଖ ।
(ଝିଅକୁ ବିଭା ଦେବାର ବହୁ ବ୍ୟୟ ଯୋଗୁଁ ଆତଙ୍କ ପ୍ରକାଶ ପାଇଛି । ପିତା ତିଅଣ ପାଟିକି ପିତା, ପେଟକୁ ଉପକାରୀ, କୃମିନାଶକ । ଋଣ ନ ମିଳିଲେ କୌଣସିମତେ ଚଳେଇ ନିଆଯାଏ, ମିଳିଲେ ବହୁ କଷ୍ଟରେ ଶୁଝିବାକୁ ହୁଏ ।)

୧୨୭୦୧. ଝିଅ ମଲେ ଜୋଇଁ କାହାର ଗୋତ ?
(ଝିଅ ମଲାପରେ ଜୋଇଁ ପ୍ରତି ଶ୍ୱଶୁରଘରର ଆଦର ଊଣା ହୁଏ ।)

୧୨୭୦୨. ଝିଅ ମୋର ଚାଲି ନ ଜାଣଇ ଲୋ,
ଗୋଡ଼ କରୁଥାଏ ବଙ୍କା ।

୧୨୭୦୩. ଝିଅ ମୋର ଉଦଣ୍ଡିଆ
ଚକା ଦରପଣ ମୁଣ୍ଡ କୁଣ୍ଡିଆ
ଝିଅ ବାପ ଘର ଯାଆନ୍ତି ନାହିଁ
ଶୁକୁଲା(=ଶୁଖିଲା) ସିନ୍ଦୂର ନାଆନ୍ତି ନାହିଁ ।

୧୨୭୦୪. ଝିଅ ଯିବେ କି ନାହିଁ ଶାଶୂଘର
ଲୁଗା ପଡୁଛି ଧୋବାଘର ।
(ଅନିଶ୍ଚିତ କଥା ଲାଗି ସଜବାଜ ହେବା ପ୍ରତି କଟାକ୍ଷ ।)

୧୨୭୦୫. ଝିଅର କ୍କାଳା ବୁକୁର ଖୁଞ୍ଚା,
ପୁଅର କ୍କାଳା ଭୂତର ବୋଝ ।

୧୨୭୦୬. ଝିଅର ଝିଅ କରିବ କିସ ?

୧୨୭୦୭. ଝିଅ ସଙ୍ଗେ ଘିଅ ନ ଦିଅ ।
(ପୂର୍ବକାଳେ ଝିଅ ଗଲାବେଳେ ସାଙ୍ଗରେ ଘିଅ ତେଲ ଦିଆ ନଯିବାରପ୍ରଥା ଥିଲା ।
ଅଧୁନା ଏଭଳି ପ୍ରଥାକୁ କେହି ମାନନ୍ତି ନାହିଁ । )

୧୨୭୦୮. ଝିଅ ସିନା କାଣୀ
ନା' ତ କଟକିଆଣୀ ।

୧୨୭୦୯. ଝିଅ ହୋଇ ଯେବେ ଚୂଲୀ ମୁଣ୍ଡକୁ ଯୋଗ୍ୟ
ନ ହେଲା ତା' ଜନମଟା ବୃଥା ।

୧୨୭୧୦. ଝିଅଲୋ ତୋ କରମେ ଥିଲା
ଅଣ୍ଟାସୂତା ଭାଙ୍ଗି ପାଉଡ଼ କଲା
ଛଅଣା କଉଡ଼ି ବଅଣା(=ବଇନା/ଅଗ୍ରିମ) ଦେଲା ।
(ମା ଝିଅକୁ କହୁଛି - ଝିଅ ତୋ ଭାଗ୍ୟ ଭଲ, ତୋଇଁ ନିଜ ଅଣ୍ଟାସୂତା କାଢ଼ି ତୋ
ଲାଗି ପାହୁଡ଼ ଗଢୁଛି, ବଣିଆକୁ ସେଥିଲାଗି ବଇନା ଦେଇଛି ।)

୧୨୭୧୧. ଝିକ ଝିକ କରିବା ।
(ଗଣ୍ଡଗୋଳ କରିବା ।)

୧୨୭୧୨. ଝିକିବା ବୁଢ଼ାକୁ ଦୁଇ ଡାଙ୍ଗ (=ପାହାର)
ନ ଝିକିବା ବୁଢ଼ାକୁ ଦୁଇ ଡାଙ୍ଗ ।

୧୨୭୧୩. ଝି(=ଦାସୀ)କୁ ମାଡ଼ଦେଇ ବୋହୂକୁ ଶିଖେଇବା ।

୧୨୭୧୪. *ସମାର୍ଥରେ* - ଝି(=ଦାସୀ) କୁ ମାରି ବୋହୂକୁ ଶିକ୍ଷା,
ବୋହୂକୁ ମାରିଲେ ନାହିଁ ରକ୍ଷା ।

୧୨୭୧୫. ଝିଙ୍କାରୀ ଝଙ୍କାର, ମେଘ ଓଁକାର ।
(ଝିଙ୍କାରୀମାନେ ରାବିଲେ, ଘଡ଼ଘଡ଼ି ମାରି ମେଘ ବର୍ଷେ ।)

୧୨୭୧୬. ଝିଙ୍କାରି ବିଲରେ କଲେଣି ସ୍ୱର,
ଆରେ ଚଷା ଭାଇ ହୁଅ ତୁ ଖର ।
(ପହିଲି ଅସରା ବର୍ଷା ହେଲେ ବିଲରେ ଝିଣ୍ଟିକାମାନେ ବୋବାନ୍ତି, ଏହି ସମୟରେ
ବିଲରେ ପହିଲି ଓଡ଼ ଚାଷ କରିବା ବିଧେୟ ।)

୧୨୭୧୭. ଝିଙ୍କିଲେ କେହି ଝୁଙ୍କି ଯା,
ରୁକିଲେ କେହି ରୁକି ଯା ।
(ଯେ ଯେପରି ବ୍ୟବହାର କରେ, ତା' ସହିତ ଅନୁରୂପ ବ୍ୟବହାର କରିବା ଉଚିତ ।)

୧୨୭୧୮. ଝିଙ୍ଗା (=ଜହ୍ନି) ଫୁଲ ଫୁଟିବା ।
(ସନ୍ଧ୍ୟା ହେବା, ଆୟୁଷ ସରିଯିବା ଅର୍ଥରେ ପ୍ରୟୋଗ ହୁଏ ।)

୧୨୭୧୯. ଝି (=ଦାସୀ) ଜଦ୍ଦ ଶିଳରେ,
ମାଇପ ଜଦ୍ଦ କିଳାରେ ।
ସାଇ ପଡ଼ିଶା ଜଦ୍ଦ ହୁଅନ୍ତି ଦେଲେ ଆଙ୍ଗୁଳି ଆଖିରେ ।

୧୨୭୨୦. ଝିଝକ୍ (=ସଙ୍କୋଚ) ଛାଡ଼ିବା ।
(ସଙ୍କୋଚ ବା ସରମ ଦୂରେଇ ଯିବା ।)

୧୨୭୨୧. ଝିଣ୍ଟିକା ମାରି ବଣି ପୋଷିବା ।
(ବଡ଼ ଜୀବ ଗୋଟିକୁ ପୋଷିବା ନିମନ୍ତେ ବହୁ କ୍ଷୁଦ୍ର ଜୀବ ମାରିବା ।)

୧୨୭୨୨. ଝିନ ପାଟ ଶାଢ଼ୀ ପିନ୍ଧିକରି ରାଣୀ
ଉଆସରୁ ବାହାରିଲେ
ଯେତେବେଳେ ରାଣୀ ଉଆସକୁ ଗଲେ
ଧରମକୁ ସାକ୍ଷୀ କଲେ ।
(ଗୋବିନ୍ଦ ଚନ୍ଦ୍ର ଗୀତିକା)

୧୨୭୨୩. ଝିପି ଝିପି ବରଷା ଦାଣ୍ଡ ବିଗାଡ଼ଇ
ଘର ବିଗାଡ଼ଇ ରାଣ୍ଡ
କ୍ଷେତ ବିଗାଡ଼ଇ ନାଗରୀ ମଥା
ସଭା ବିଗାଡ଼ଇ ଭାଣ୍ଡ ।

୧୨୭୨୪. ଝିମିଟି ଖେଳରୁ ମହାଭାରତ ।
(ସାମାନ୍ୟ ଝିମାଣି (ଜୁଆଖେଳ)ରୁ ପାଣ୍ଡବ ଓ କୌରବମାନଙ୍କ ମଧ୍ୟରେ ବିବାଦର ସୂତ୍ରପାତ ହୋଇ ସେଥିରୁ ଭୀଷଣ ମହାଭାରତ ଯୁଦ୍ଧର ଉଦ୍ଭବ ହୋଇଥିଲା । ସେହିପରି ସାମାନ୍ୟ ବିଷୟ ବା ଘଟନାରୁ ଦେଶକ୍ଷୟକାରୀ ତୁମୂଳ ବ୍ୟାପାରର ସୂତ୍ରପାତ ହୁଏ ।)

୧୨୭୨୫. ଝିମିଟେ ମୋତେ ଅନ୍ତର ନ କରିବୁ ଆଲୋ ଝସ ବିଲୋଚନା
ଝୀନବାସେ ଝାଳ ପୋଛି ଦେଉଥିବି ଆହା ମୋ ନବ ଅଙ୍ଗନା ।

୧୨୭୨୬. ଝିଲି ଝାଲ କଲା ମିଳିମାଲ କଲା
ପିଆର ପଡ଼ିଲା କଲା
ତୁମର ବଚନ ଶୁଣିବାରୁ ସରି
ସାଙ୍ଗେ ମନ ଗୋଡ଼ାଇଲା
ଡୁକିଯା'ରେ ବାବୁ ଢୁକିଲା ବେଳେ
ନ ମିଳିବ ସବୁ କାଳେ ।

୧୨୭୨୭. ଝୁଙ୍କ ଆସିବା ।
(ନିଦ ଆସିବା ଯୋଗୁ ଝୁଙ୍କି ପଡ଼ିବା । ନିଶାଯୋଗୁ ଟଳମଳ ହେବା ।)

୧୨୭୨୮. ଝୁଙ୍କା ଖାଇବା ।
(କୌଣସି ଆକସ୍ମିକ ଆଘାତ ସହିଯିବା । କ୍ଷତି ସହିଯିବା । ଆପଦ ବିପଦକୁ ସମ୍ଭାଳି ଯିବା । ନିଦ ବା ନିଶାରେ ଟଳମଳ ହେବା । ଖୁବ୍ ଜୋର ହଲିବା ବା ଦୋହଲିବା ।)

୧୨୭୨୯. ଝୁଟ କହିବାକୁ ପଇସା ପଡ଼େନି ।
(ମିଛ କହିବା ପାଇଁ କିଛି ଖର୍ଚ୍ଚ କରିବାକୁ ପଡ଼େ ନାହିଁ ।)

୧୨୭୩୦. ଝୁଟ (=ମିଛ) କହିବା ଓ ଜୁଠା (=ଅଇଁଠା) ଖାଇବା ବରାବର ।
(ମିଛ କହିବା ଅଇଁଠା ଖାଇଲା ଭଳି ଅତ୍ୟନ୍ତ ଖରାପ ।)

୧୨୭୩୧. ଝୁଟକୁ(=ମିଛକୁ) ଝଟେଇ(=ଓଲେଇ) ରଖିବା ଘର କଣକୁ ।
(ମିଥ୍ୟାବାଦୀ ସହିତ ସେ ପର୍ଯ୍ୟନ୍ତ ତର୍କ ବିତର୍କ କରିବା ଅନୁଚିତ, ଯେ ପର୍ଯ୍ୟନ୍ତ ସେ ସତ ନ କହିଛି ।)

୧୨୭୩୨. ଝୁଟ ଓ ସଚା ମଧରେ ଚାରି ଆଙ୍ଗୁଳି ଫରକ ।
(ଆଖି ଆଉ କାନ ମଧରେ ଚାରି ଆଙ୍ଗୁଳିର ଫରକ ।)

୧୨୭୩୩. *ଏକାର୍ଥରେ* - ଝୁଲି ପଡେଇବା ।

୧୨୭୩୪. ଝୁଟ ପାଦହୀନ ।
(ମିଥ୍ୟାବାଦୀ ଯୁକ୍ତିତର୍କରେ ରହିପାରେ ନାହିଁ, ତାକୁ ହାର ମାନିବାକୁ ପଡ଼େ ।)

୧୨୭୩୫. ଝୁଟର ନୌକା ମଝିଦରିଆରେ ବୁଡ଼େ ।
(ମିଥ୍ୟା ଆଚରଣ ବେଶିଦିନ ଚାଲେ ନାହିଁ ।)

୧୨୭୩୬. ଝୁଟର ମୁହଁ କଳା, ସଚ୍ଚା ବୋଲକରା(ଆଜ୍ଞାପାଳନ) ।
(ଶେଷରେ ସଚ୍ଚାଲୋକର ବିଜୟ ପ୍ରାପ୍ତ ହୋଇଥାଏ ।)

୧୨୭୩୭. ଝୁଟ (=ମିଛ କଥାରେ) ଲୁଟତରାଜ ।

୧୨୭୩୮. ଝୁଣ ଝୁଣା ବାଜିବା ।
(ପ୍ରସନ୍ନତା ବ୍ୟକ୍ତ ହେବା ।)

୧୨୭୩୯. ଝୁଣ୍ଟିଆ ନାଦ
କମ୍ପେଇ ଦେଉଛି ତିନି ବ୍ରହ୍ମାଣ୍ଡ ।
(ବହୁ ଅଳଙ୍କାର ପିନ୍ଧିଥିବା ସ୍ତ୍ରୀ ପ୍ରତି କଟାକ୍ଷ ।)

୧୨୭୪୦. ଝୁଣ୍ଟି ପଡ଼ିଲେ ଉଠି ପାରିବୁ ନାହିଁ,
ଝଡ଼ିଲା ପତ୍ର ବୃକ୍ଷେ ଲାଗିଛି କାହିଁ ?

୧୨୭୪୧. ଝୁଣ୍ଡ କୁ ଝୁଣ୍ଡ ।
(ପଶୁ ବର୍ଗପାଇଁ ପ୍ରଯୁଜ୍ୟ ।) (ଯେପରି ମେଣ୍ଢା ଏକା ସାଙ୍ଗରେ ଝୁଣ୍ଡକୁ ଝୁଣ୍ଡ ହୋଇ ଚାଲନ୍ତି । ଅର୍ଥାତ୍ ପଲ ପଲ ହୋଇ ଚାଲନ୍ତି ।)

୧୨୭୪୨. ଝୁମୁକି କଠଉ ମଡ଼ା
ଝିପି ଝିପି ଯେଉଁ ମେଘ ବରଷା
ତହିଁକି ଖାରିଆ ଖଡ଼ା ।
(ବଡ଼ ଲୋକକୁ କଟାକ୍ଷ ।)

୧୨୭୪୩. ଝୁମ୍ପା ଲଗା ଗୋଜିକାଠି
ନ ଦେଖିଲେ ମୁହଁ କରିବେ ଏଡ଼େ
ବୋଲିବେ ନିମୁଲୀ-ଖୁଣ୍ଟି (=ଯାହାର ଆତ୍ମୀୟ କେହି ନାହିଁ) ।
(ଝିଅକୁ ବାପଘର ପ୍ରଚୁର ଅଳଙ୍କାର ନ ଦେଇ ଥିଲେ ଶାଶୂଘର କଥାକେ କଥାକେ ଖୁଣ୍ଟା ଦିଅନ୍ତି । ଏହା ଝିଅର ଅନୁଚିନ୍ତା ।)

୧୨୭୪୪. ଝୁମ୍ପି ଚଉଁରୀଭୁଣ୍ଡ* କାଢ଼ିଣ ଥୋଇ
କଣ୍ଟା ଫୋଡ଼ିଲେ ମୁଣ୍ଡେ ଦର୍ପଣ ଚାହିଁ ।
ପଠାଣ ଘର ବେଣୀ ବାନ୍ଧିଲେ
ମୁଣ୍ଡ ବାନ୍ଧିଲେ ସୁନା ପାନିଆ ଦେଇ ।

ରୂପେଲୀ ଫୁଲକୁ ଲୋ ସୁନା କାକେରା*
ତା ପାଖେ ବସାଇଲେ ଜହ୍ନ ଓ ତରା ।

* ଚଉଁରୀଭୁଣ୍ଡି - କେଶଦ୍ୱାରା ନିର୍ମିତ କେଶବନ୍ଧନ ରଜ୍ଜୁଗୁଛର ମୂଳଗଣ୍ଠି ଉପରେ ଜଉଦ୍ୱାରା ଦୃଢ଼ ହୋଇ ବସାଯାଇଥିବା ଅଳଙ୍କାର ବିଶେଷ ।

* କାକେରା- ମୁଣ୍ଡର ସୁନା ଅଳଙ୍କାର ବିଶେଷ ।

୧୨୭୪୫. ଝୁମ୍ପୁଡ଼ିରେ ରହି ମହଲର ସ୍ୱପ୍ନ ଦେଖିବା ।
(ଅସମ୍ଭବ କଥା କଳ୍ପନା କରିବା । ନିଜ ସାମର୍ଥ୍ୟରୁ ଅଧିକ କାମନା କରିବା ।)

୧୨୭୪୬. ଝୁରନା ଝୁରନା ଝୁରିଲେ ମରିବୁଟି
କପୂର ପରି ସହଣିକ ହେଲେ
କପୂର ଚୂରିବୁଟି !
(ଘର କଲେ ନାନା ଦୁଃଖ, ନାନା ସମସ୍ୟା । ସେସବୁ ଭାବିବସିବା କ୍ଷତିକାରକ । ଧୈର୍ଯ୍ୟ ଓ ସହିଷ୍ଣୁତା ବଳରେ ଲୋକ ଜୀବନରେ ସୁଖୀ ହୁଏ । )

୧୨୭୪୭. ଝୁରି ମରିବାକୁ ବିଧାତା କଲା ।
(ପୁତ୍ର ଶୋକରେ ବିଧୁର ପିତାର ଉକ୍ତି ।)

୧୨୭୪୮. ଝୁରି ମରୁଥିଲା ଜହ୍ନୀ
ଅକାଳେ ସକାଳେ ଉଇଁ ଆସୁଥିଲା
କାକୁଡ଼ି ପୁଞ୍ଜାଏ ଘେନି ।
(ଯତ୍ ସାମାନ୍ୟ ଦ୍ରବ୍ୟ ଘେନି ଆସିଥିବା ବନ୍ଧୁ ପ୍ରତି କଟାକ୍ଷ ।)

୧୨୭୪୯. ଝୁରିଲେ ଝୁରୀ, ଭାଜିଲେ ମାଛ ।
କଟକି ଭାଇ କି କଥା ପୁଛ ?

୧୨୭୫୦. ଝୁଲ ପଣ୍ଡା
ଝୁଲୁ ଝୁଲୁ ଖାଏ ଛେନା ମଣ୍ଡା
ନ ଝୁଲିଲେ ଖାଏ ଗୁଳି ଗେଣ୍ଡା ।

୧୨୭୫୧. ଝୁଲ (=ହାତୀ ପିଠି ଉପର ଚିତ୍ର ହାଉଦା) ପିନ୍ଧିଛି ହାତୀ
ଝୁଲୁ ଝୁଲୁ ଏବେ ପାହିଲା ରାତି ।
(ବେଶପୋଷାକ ପିନ୍ଧି ଆଡ଼ାଚୌଡ଼ା କରୁଥିବା ବ୍ୟକ୍ତି ନିଜକୁ ଦେଖେଇ ହଉ ହଉ ଦିନ ସରିଯାଏ ।)

୧୨୭୫୨. ଝୁଲରେ ହାତୀ ଝୁଲ୍
ବାଆ ପାଣି ଖାଇ ଫୁଲ୍
ବାଆ' ପାଣି ଖାଇ ଝୁଲ୍ ।

୧୨୭୫୩. ଝୁଲ୍ ହାତୀ ଝୁଲ୍‌ରେ
ବାଆ ପାଣି ଖାଇ ଫୁଲରେ ।

୧୨୭୫୪. ଝୁଲ ଲିଭେଇବା/ଝୁଲି ଲିଭେଇବାକୁ ଆସିବା ।
(କାମ ସରିଯିବା ପରେ ତାକୁ କରିବା ପାଇଁ ତିଆର ହେବା । କୌଣସି କାର୍ଯ୍ୟ ସମ୍ପନ୍ନ ହୋଇ ଗଲାପରେ ତାକୁ କରିବା ପାଇଁ ଆସିବା ।)

୧୨୭୫୫. ଝୁଲା ମାଳି ଧରି କାହାକୁ ଜପୁଛୁ ,
କାଟୁଛୁ ଅଙ୍ଗରେ ଚିତା,
ବଅସ ଦିନରେ ନ କଲୁ ଚେତା
ବୁଢ଼ୀଦିନେ ହେଲା ଚିନ୍ତା ।
(ବୟସର ସବୁ ସ୍ତରରେ ଧର୍ମ ଚିନ୍ତା କର୍ତ୍ତବ୍ୟ । ଜୀବନଯାକ ପାପ ଅର୍ଜି ବୁଢ଼ାଦିନେ ଧର୍ମ ଆଚରଣ ପାଇଁ ଚିନ୍ତା କରିବା ବୃଥା ।)

୧୨୭୫୬. ଝୁଲି ଧରିବା ।
(ଭିକ ମାଗିବାକୁ ଯିବା । ଚାନ୍ଦା ମାଗିବାକୁ ଯିବା ।)

୧୨୭୫୭. ଝୁଲି ମୁଣା କଳି ସଜାଇ ।
ନାରଦେ ନାଚନ୍ତି ବୀଣା ବଜାଇ ।।

୧୨୭୫୮. ଝୁଲି ଭରିବା ।
(ଭରପୁର ଭିକ୍ଷା ଦେବା । ଲାଳସା ପୂର୍ଣ୍ଣ କରିବା ।)

୧୨୭୫୯. ଝୁଲୁଣିଆ ଆମ୍ବ ଝୁଲତେ ରେସି
ମାୟାକାନେ ଲାଗି ରେସି ।

୧୨୭୬୦. ଝୁଲୁ ହାତୀ
ଝୁଲୁ ଝୁଲୁ ଖାଏ ଛେନା କାନ୍ତି
ନ ଝୁଲିଲେ ଖାଏ ବିରାଡ଼ି ବାନ୍ତି

୧୨୭୬୧. ଝୋଟକୁ ନିଆଁ ଖର୍ ଖର୍
ପୋଡ଼ି ଯାଉଥାଏ ଚର୍ ଚର୍ ।
(କଥା କଥାକେ ରାଗି ନିଆଁ ହୋଇ ଯାଉଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।)

୧୨୭୬୨. ଝୋଟକୁ ନିଆଁ ବାଇ । (ନ୍ୟାୟ)
(ଯୁବକ-ଯୁବତୀଙ୍କର ସହାବସ୍ଥାନ ପ୍ରତି କଟାକ୍ଷ-ବଚନ ।)

୧୨୭୬୩. ଝୋପ (=କ୍ଷୁଦ୍ର ଗଛ/ବୁଦା) ବୁଝି କୋପ (=ଆଘାତ) ମାରିବା ।
(ବୁଝି ବିଚାରି ଆଘାତ କରିବା ।)

୧୨୭୬୪. ଝୋଳ ଆମ୍ବିଳାକୁ ଏକାଠି କରିବା ।
(ଦୁଇଟି ସୁଖାଦ୍ୟକୁ ଏକାଠି ମିଶାଇଲେ ଅଖାଦ୍ୟ ହୁଏ ।)

୧୨୭୬୫. ଝୋଳ, ଝାଲ(=ରାଗ) ଆମ୍ବିଳ
ବାଇଗଣର ସବୁ ଠେଇଁ ଚଳ ।
(ଓଡ଼ିଆମାନେ ଏକ ରକମ ବାଇଗଣ କହିଲେ ଚଳେ କାରଣ ଯେଉଁଠି କୁହ ସେଇଠି ଅଛନ୍ତି ।)

୧୨୭୬୬. ଝୋଳ ଝୋଳ ମତେ ଦବୁ (ଦେବୁ),ଫଳ ଫଳ ତୁ ଖାଇବୁ ।
(ବ୍ୟଙ୍ଗ)

୧୨୭୬୭. ଝୋଳର ଲାଉ, ଆମ୍ବିଳର ଲାଉ ।

୧୨୭୬୮. ଝୋଲ (=ଛୁଆ) ବାହାର କରିବା ।
(ଛୁଆ ଜନ୍ମ କରିବା ।)

୧୨୭୬୯. ଝୋଲୀ (=ଚର୍ବି ବା ମେଦ) ବଢ଼ିବା ।
(ଶରୀରର ଚର୍ବି ବା ମେଦ ବଢ଼ିବା । ପେଟ ବାହାରିବା ।)

୧୨୭୭୦. ଝୁଂ କରି ମୋତେ ନେବରେ ଚଢ଼େୟା
ତୁ ଯେ ମୋର ଗୁଣବନ୍ତ
ତୋତେ ଘେନି ମୁହିଁ କୁଆଡ଼େ ପଶିବି
ଚଢ଼େୟାରେ
ଚାରିଆଡ଼େ ପରବତ । (ଚଢ଼େୟା ଚଢ଼େୟାଣୀ ଗୀତ ।)



## -ଦୋଳିଗୀତ-

୧୨୭୭୧. ଝଟ ଝଟ ଦୋଳି ଝୁଲା ସଙ୍ଗାତ ଲୋ
ଝଟ ଝଟ ଝୁଲା ଦୋଳି
ଭାଇ ବନ୍ଦିବା ମୋ ହୋଇଛି ଧାଳି ଲୋ
ନୂଆ ବୋହୂ କଲା କଳି ।
ଲାଜକୁରୀ ନୂଆ ବୋହୂ ସଙ୍ଗାତ ଲୋ
ଲାଜକୁରୀ ନୂଆବୋହୂ
ହୁଳ ହୁଳି ଦିଏ କଣରେ ଥାଇ ଲୋ
ଜଳେ ଦୀପ ଦାଉ ଦାଉ ।

୧୨୭୭୨. ଝାଇଁ ପିଟେ ଝାଇଁ ଝାଇଁ
ତୁମ ଆମ ଭାବ ଯୁଗକ ଥିବ, ବଚନ ଭୁଲିବ ନାହିଁ ।

୧୨୭୭୩. ଝୁଲଣି ଖେଳିବା ହୋଇ ହରଷ
ଆସ ଗୋ ସଙ୍ଗାତ ଆସ,
ମନରେ କିମ୍ପା ବିରସ ।
ଆସ ଆସ ଗୋ ବଉଳ
ଝୁଲଣିରେ ବସ ହୋଇ ଚଞ୍ଚଳ ।
ଆସ ଆସ ଗୋ ଅଭଡ଼ା
ଝୁଲଣିରେ ବସ ବାନ୍ଧିଣ ଜୁଡ଼ା
ମୋ ପେଣ୍ଠି ଅଭଡ଼ା
ଆଣ୍ଠୁ କରି ଧର ଦଉଡ଼ା ।
ଆଜିତ କୁଆଁରୀ ଚାନ୍ଦ
ଯୁବତୀମାନଙ୍କ ପ୍ରେମ ଆନନ୍ଦ
ମୋ କଷି ପିଆଜ
ଏଥିପାଇଁ କିଆଁ ଲାଜ ।

## -ହଳିଆ ଚଉତିଶା-

୧୨୭୭୪. ଝଗଡ଼ାରେ ଅସୁରଙ୍କୁ କରିବେ ନିପାତ
ଝାଡ଼ିଦେବେ ଶତ୍ରୁ ଦର୍ପ କରି ଚୂର୍ଣ୍ଣୀଭୂତ
ଝର ଝର ଝରି ଝରି ଢ଼ାଳେ କ୍ଷୟ ଯିବେ
ଝାମ କଲା ପରି ଆଉ ଜଣେ ନ ରହିବେ ।
ଝାଡ଼ ବିନୋଦିଆ ଶ୍ରୀରାମ, ଝଗଡ଼େ ପ୍ରାଣ ନେବେ ।

## -ହଳିଆ ଗୀତ ମୃଗୁଣୀ ସ୍ତୁତି-

୧୨୭୭୫. ଝାଡ଼କୁ (=ଜଙ୍ଗଲକୁ) ଶବର ବାହାରିଲା ବେଳେ
ମୃଗୁଣୀ ଚରୁଥିଲା ମଢ଼ିଆ (=ପତ୍ରକୁଡ଼ିଆ) ଦୁଆରେ ।
ତାହା ଦେଖି ଶବର ଉଷତ ଭାବ ବହି
ଚଉକତି ଜାଲ ବେଢ଼ାଇଲା ନେଇ ।
ଆଗେ ଗଲେ ଶବର ବିନ୍ଧିବ ମୋତେ ଶର
ପଛକୁ ଗଲେ ପୋଡ଼ି ମରିବି ଅଗ୍ନିର ।
ଆନ ଦିଗେ ଗଲେ ପଡ଼ିବି ଜାଲେ ଯାଇ
ରହିଥିଲେ ଶ୍ୱାନ ଧରିବ ମୋର ଦେହି (=ଦେହ) ।
ମୋହର ମରଣାନ୍ତେ ମରିବେ ବେନି ପୋଏ
ଆବର ମରିବେ ଗର୍ଭର ତନୟେ ।
ଗର୍ଭରେ ଦଶମାସ କୋଳରେ ବାଳଶିଷ
ଆତଙ୍କେ ମୃଗୁଣୀ ହୋ ଡାକିଲା ହେ ରଖ ପୀତବାସ ।
ରଖିଲୁଁ ବୋଲି ପ୍ରଭୁ ଟେକି ଦେଲେ ଭୁଜ
ଜଳରେ ଛେଦିଲେ କଳା କୁମ୍ଭୀର ନିସ୍ତରି ଗଲା ଗଜ ହୋ ।
୧୨୭୭୬. ଝୁରି ଝୁରି ଜୀବନ ଯିବ ଆଗୋ ମାଈଁ
ଝିମିଟି କଥାକୁ ଡ଼ରୁଛୁ କାହାପାଇଁ
ଝିଅ ଜନ୍ମକଲେ ସଂସାରେ ପରକୁ ଦ୍ୟନ୍ତି ନେଇ ।

## -କାନ୍ଦଣା-

୧୨୭୭୭. ଝିଅ ହୋଇଲେ କି ମନେ ପଡ଼ିବ
ଫୁଲ ହୋଇଲେ ଯେ ମଉଳିଯିବ ।

୧୨୭୭୮. ଝିଅ ଦାନ କଲ ନୀଚ ହାତରେ
ଗୋରୁ ଦାନ କଲ ଶିରୀ କ୍ଷେତ୍ରରେ
ସେ ଯେଉଁ କଂସେଇ ଘରର ଠାଣି
ବାନ୍ଧିଲା ଗୋରୁକୁ ନଦିଏ ପାଣି
ଜୀଅନ୍ତା ଗୋରୁକୁ ଦିଏ ସେ ହାଣି
ମଲା ଗୋରୁକୁ ସେ ଯାରେ ତୋରାଣି ।

୧୨୭୭୯. ଝିଅ ମଉଳଇ କଥା ପଦକୁ
ଫୁଲ ଯେ ମଉଳେ ଖରା ତେଜକୁ ।
ଝିଅ ଖାଏ ଭାତ ଦୁଆରେ ବସି,
କୁଆ ଖାଏ ଧାନ ପିଢ଼ାରେ ବସି ।
ଝିଅଙ୍କ ମେଳନ ବାପ କୋଠାରେ
କୁଆଙ୍କ ମେଳନ ଆମ୍ବ ତୋଟାରେ ।

୧୨୭୮୦. ଝିଅର ସ୍ନେହ କି ଝିଆରୀ ଠାରେ
ଆଖିର ରସକି ପତର ଠାରେ ।
ଝିଅ ନୋହି କଅଣ ଝିଆରୀ ହେବ ?
ଆଖି ନୋହି ଆଖି ପତର ହବ ?
ଝିଅର ପରିକି ଝିଆରୀ ହେବ ?

୧୨୭୮୧. ଝିଅ ସମ୍ପି (=ସମର୍ପଣ) ବାପା କି ଯଶ କଲେ ?
କଂସେଇ ହାତରେ ଅରପି ଦେଲେ ।

୧୨୭୮୨. ଝୁରି ଦିନ ନ ସରିବ
ନୟନରୁ ନୀର ନାହିଁ ଶୁଖିବ ଲୋ
ଯାହା ଲେଖିଛି ଭାଲେ ଦଇବ, ମୋ ତାରା ଲୋ ।

ବଡ଼ି ସକାଳୁ ଉଠିବୁ
ଘରଦ୍ୱାର ସବୁ ଖଡ଼କି (=ଓଳେଇବା) ଦେବୁ ଲୋ
ବେଗେ ଗୋବର ପାଣି ଛିଞ୍ଚିବୁ, ମୋ ତାରା ଲୋ ।

ଯୁଆଡୁ ବର୍ଷିବ ଜଳ
ସିଆଡୁ ଧରିବୁ ଛତା ସୁଢ଼ଳ ଲୋ
ତେବେ ଲୋକେ ବୋଲିବେଟି ଭଲ, ମୋ ତାରା ଲେ ।

ଠଣ ସୁନ୍ଦରୀ ବୋଲିଣ
ଠାବେ ଠାବେ ବସି ଗାଇବେ ଗୁଣ ଲୋ
ଠିଆ ନୋହିବୁ କାହା ଆଗେଣ, ମୋ ତାରା ଲୋ ।

ସୁନା ଗିଲାସରେ ପଣା
କ୍ଷଣେ ନ ଦେଖିଲେ ହୁଏ ମୁଁ ବଣା ଲୋ
ତୁ ମୋର ପ୍ରାଣ ଦୁଲାଣ (=କନ୍ୟା), ମୋ ତାରା ଲୋ ।

## -ମାଇପିଛଟା-

୧୨୭୮୩. ଝାଇଁ ଝଟକିଲା ବିଜୁଳି ମାଇଲା
ଦାଣ୍ଡଧୂଳି ନେଲା ଉଡ଼ାଇ
ଏଇ ବାଟେ ଗଲା କଥା ନ କହିଲା
ସାଙ୍ଗେ ସାଙ୍ଗେ ଗଲି ଗୋଡ଼ାଇ ।

୧୨୭୮୪. ଝାଣ୍ଟିଲାଞ୍ଜୁଆ ସବୁଠାରୁ ଭଲ ।
ଭୁଦିଆଁ ଗାଈ ଗୋସେଇଁ ଖାଇ ।
(ଗାଈ ଚିହ୍ନିବାର ଲକ୍ଷଣ ।)

୧୨୭୮୫. ଝୁମ୍ପିରି ମୁଣ୍ଡୀ, ଓଲେଇ ତୁଣ୍ଡୀ
ଏମାନଙ୍କ ହାତେ ନ ଦେବ ହାଣ୍ଡି ।

## -ଚଇତପର୍ବ ଗୀତ-

୧୨୭୮୬. ଝରଣା ଶୁଖିଲା ଝକର ଝାଇଁ
ପାଣି ଗଲା ନାଳେ ନାଳେ
ତମର ଆମର ଭାଷା ଛିଡ଼ିଗଲା
ସବୁଲୋକ ଥିଲା ବେଳେ
ଆଲୋ ଗୋରାଧନ ବିଚାର କର, ହୃଦେ ପାଞ୍ଚି କୋଳେ ଧର ।
୧୨୭୮୭. ଝରଣା ଶୁଖିଲା ଝକର ଝାଇଁ
ମୁନିଙ୍ଗା ଧଇଲା ଛୁଇଁ
ତମର ଆମର ପୀରତି ଲାଗିଲେ
ଛାଡ଼ିବାକୁ ମନ ନାଇଁ
ବାଉଳି କୁମୁଣ୍ଡା ବକଳ ରତା, ତମେ ବିଚାରିବା କଥା ।
୧୨୭୮୮. ଝାଡ଼ବଣ ପରେ ଜୟନ୍ତଗିରି
ତାହା ପାଖେ ବରିଗୁମ୍ଫା
ନିଶ୍ଚେ ଗୋରିଧନ ମୋହରି ହେଲେ
ଦେଉଥିବି ଲାଡ଼ ଚୁମା
ଆସ ଆସ ଧନ ମୋ' ପାଖେ ବସ, ଶିଖାଇବି ରସ କିସ ।
୧୨୭୮୯. ଝାଲିଆ (=ପୁଚ୍ଛ ବିଶିଷ୍ଟ) ମୟୁର ଝାଲିଟା ସୁନ୍ଦର
ଆଡ଼କି (=ପାଖଦେଇ) ଚରିଲା ଖେତେ
ତମେ ଆମେ ଆସ ପ୍ରୀତି କରିବା
ଜୀବ ଥିବା ପରିଯନ୍ତେ ।
ଆସ ବାବୁ ଧନ, କେଳି କରିବା, ହସି ମାତି ଦିନ ନେବା ।
୧୨୭୯୦. ଝିଲି ଝାଲ କଲା ମିଳ ମାଲ କଲା
ପିଆଲା (=ପାଳ) ପଡ଼ିଲା କଲା
ତୁମର ବଚନ ଶୁଣିବାରୁ ସରି
ସାଙ୍ଗେ ମନ ଗୋଡ଼ାଇଲା ।
ତୁକିଯା'ରେ ବାବୁ ତୁକିଲା ବେଳେ, ନ ମିଳିବ ସବୁ କାଳେ ।

## -ଶଗଡ଼ିଆ ଗୀତ-

୧୨୭୯୧. ଝର ଝର ହୋଇ ବହୁଛି ମକରନ୍ଦ
ଝରକୁ ଲୟ କରିଅଛନ୍ତି ସଦାନନ୍ଦ
ଏଡ଼ିଣ ଗୁରୁ ଆଶ୍ରେକର
ଝର ଲୟ କଲେ ତୁ ମୂଢ଼ରେମନାଇଁ
ଜଗତୁ ହେବୁ ପାର ।

୧୨୭୯୨. ଝାଡ଼ ମଧୁବନ ତ ପକାଉଅଛି ଫେଡ଼ି
ଝଗଡ଼ ଗଣ୍ଡିରାକୁ ସମତୁଲ କରି
ଲୋଭିଆ ନାମେ ତହିଁ ଏକଇ ବିନ୍ଧାଣି
ନିର୍ଭର ହୋଇ ବସିରେ ମନୁଆଁ
ଦେଉ ଅଛି ପଣି ।

୧୨୭୯୩. ଝୁରଇ ଭ୍ରଥବୀର ସୁମରି ରଘୁସାଇଁ
ଝର ଝର ନୟନୁ ଅଶ୍ରୁ ଯାଏ ବୋହି
ଝାଡ଼ପଶୁ ସଙ୍ଗେ ରାମ ହୋଇଲେ ଗଣତା
ଝାଡ଼ଖଣ୍ଡେ କଷ୍ଟ ତ ସହିଲେ ମୋ
ଲକ୍ଷଣ ରାମ ସୀତା ।

## -ବିଭାଘର ଗୀତ- (ବ୍ୟଙ୍ଗ)

୧୨୭୯୪. ଝରିବୁ ନାହିଁ ଲୋ ତୁହି
ଝରାକାଠି ଆଣି ଦେବି ତୋ ପାଇଁ ।
ଝୁଣ୍ଟିଆ ଦେଇ, ଝୁରା ମଳକଢ଼ି ଦେବି ଗଢ଼ାଇ
ଝରା ଶିଙ୍କୁଳି ଲୋ ତୋର ମଥାରେ ଖୋସିବା ପାଇଁ

୧୨୭୯୫. ଝିଅ ଜନ୍ମ କଲୁ ସରଗ ତରା
ଖପରେ (=ଖପରୁଲି) ଉଦୟ ତାରା
ସଖୀ ଲୁଏଁ କଲୁ ଦରମରା ।

୧୨୭୯୬. ଝିଅ ବାହାଘର, ପୁଅ ବାହାଘର
ବାହାଘର ଦିନ ସକେଇ କାନ୍ଦେ,
ଲୁହ ବୋହୁଥାଏ ଝର ଝର ।
ଯେଉଁ କରିଥିଲେ ବିରି ଡାଲି
ଅଧେ ଫାଳ ଅଧେ ନଈ ବାଲି
ଧୋବା ନପାଇଲେ ଭଣ୍ଡାରୀ ପାଇଲେ,
ଗାଆଁ ଯାକ କଲେ ହାଲ ହୋଳି ।
ଯେଉଁ କରିଥିଲେ ପିଠାମାନ
ଅଧଲା ପାହୁଲାଠାରୁ ସାନ
ଝିଅ ଖାଉଥାଏ ଜୋଇଁ ଚାହିଁ ଥାଏ,
ଭଣ୍ଡାରୁଣୀ ମନ କନ କନ ।
ଯେଉଁ କରିଥିଲେ ଖିରୀମାନ
ପତରେ ନ ରୁହେ ସେହୁ ପୁଣ
ଭାସି ଯାଇ ଗ୍ରାମ ମୁଣ୍ଡରେ ଲାଗିଲା
କାଉ କୁକୁର ଖାଇଲେ ଜାଣ ।
ଯେଉଁ କରିଥିଲେ ପାଟ ପାଞ୍ଚ୍
ଚଉଦ ମଉଳା ବାଛି ବାଛି
ହାତେ ଲମ୍ୱ ଚାଖଣ୍ଡେ ଓସାର
ଝିଅ ପିନ୍ଧିଥାଏ ଟେକି ଟାକି
ଜୋଇଁ ପିନ୍ଧିଥାଏ କୁଞ୍ଚ୍ କାଞ୍ଚ୍ ।

୧୨୭୯୭. ଝୁପି ଝୁପି ବାଲେ (=ବୁଦେ) ପୁଟିଛି ମଲ୍ଲୀ
ଲାଲ ଧାନ ରସର କେଳି
ଚାଲ ସାଙ୍ଗ ହୋଇ ଯିବା ତୋଳି ।

୧୨୭୯୮. ଝୁମୁ ଝୁମୁ ନିଦ ଆସୁଛି ମାଡ଼ି,
କେ ଦେବ ପଲଙ୍କ ପାରି ।



## -ଡାମୁଡ଼ାଳୀ-

୧୨୭୯୯. ବିନ୍ଧିଦିଏ ବୁଢ଼ା, ଭଟ୍ ଭଟ୍,
ବେଟି ଆରେ ଚଟ୍ ଚଟ୍ ।
ମୁଇଁ ନେଇ ନାରେ କହୁଛେ ତତେ,
ଖରିଆ ଖେବେଡ଼ି ଯାହାକେ ଯେତେ ।
ବନର ଜୀବ ସବ୍‌କୁ ମାରେ,
ଅନ୍ନ ପେଡ଼ାରେ ଭର୍ତ୍ତି କରେ ।
ଶବର୍ ଚାଲେ ସଅଲ୍ ସଅଲ୍,
ଚଢ଼େଇ ପେଚା ଦଲ ଦଲ୍ ।
ଆସୁଥିଲା ଭାଇ ଶବର ବୁଢ଼ା,
ମାଡ଼ି ଦେଲା ଗୁଣ୍ଡରୁଗୁଡ଼ା
ତାର ତଳେ ଅଛି ବିଚନା(=ବିଛଣା) ଗୁଡ଼ା ।
ବିଚନା ମାଛି କଲିଆଟା,
ଶବର ବୁଢ଼ା ଲଲିହାଟା
ବିଚନା ମାଛି ମାଇଲେ ଲାତ,
ଶବର ପୁଡ଼େ ଛଟ୍ ପାଟ୍ ।
ଉଠିକରି ବୁଢ଼ା ଦେଲା ହଲାଇ,
ବିଚନା ମାଛି ଗଲେ ପଲାଇ ।
ଡାମୁଡ଼ି ଦେଖିଲା ବିଚନା ମହୁଫେନା ଫରି
ତାର ଘର୍ କେ ଆଇସନ୍ କନିଆ କରି
ଲମ୍‌ତେଣ୍ଡାଥୁଁ ପୁଟୁଲି ପାଲି ।
ତାର ଝିଅର ନାଁ ମାଳତୀମାଲା,
ପାନି ଗଡୁ ଦେଇ ଓଲଗି ହେଲା ।
ଉଲେଆ ମାଆ ବଲି ବଇଲେ,
ତୋର ବୁଆମାଆ କାହିଁକି ଗଲେ ।

ତାହା ଶୁନି କହେ  ଶବର ଝିଅ,
କାହିଁର ଲାଗି ଆଇଛା କହ ।
ବୁଢ଼ା କହିଲା ଅନ୍ ମଲିଆଁ,
ମୋର ପୁଅର ଲାଗି ଦେଖି ଆଇଛେ କନିଆଁ ।
ତା ଶୁନି ଟୁକେଲ ବଏଲ ହେଲା,
କଥାର ମରମ କେନ୍ତା ଗଲା ।
ଭିତରି ବାହାରି ଠୁକିଛେ ତାଲା,
ଯାହା କହିଲ ମୋର ମନ୍‌କେ ଗଲା ।
ତମର୍ ପୁଅଟା କେନ୍ତା ପିଲା,
ମୋର ପୁଅଟା ବନେ ପିଲା,
ସଲରୁ ସରପଟ୍ ବିଷମ ଢଲା ।
କଥା କହିଲେ ଅଟକୁଛେ,
ଗୁରୁନାଇଁ ଲିଆ ଲଟକୁଛେ
ଦର୍ପନ ପଡ଼ି ଝଟକୁଛେ ।

## –ପତର ସଉରା (ସଉରା ବୋଲି)–

୧୨୮୦୦. ଝିଙ୍କ ଝିଙ୍କାରି
ମାରଇ ଫେରି,
କପୋତ ପାରୁଆ ହଂସ ମୟୂରୀ
ମୋର କୁଟୁମ୍ବ ପୋଷା ଏପରି ।
ଭାରିଜା କୁଟୁମ୍ବ ମୋହର ଯେତେ
ଝଡ଼ିପୋକ ପରି କହିବି କେତେ
ଶଶୁର-ଝିଅ, ଶଳା-ଭଉଣୀ
ପୁଅର ମା, ଯେ ଭଣଜା ମାଇଁ
ମୋର ପିଣ୍ଡ ପରାଣ ଅଟଇ ।

ହସ୍ତରେ ଧରିଛି କାଣ୍ଡ ବାଉଁଶ
ତହିଁରେ ରାବଣ ଯାଇଛି ନାଶ
ଶ୍ରଦ୍ଧାରେ ମୁରଲୀ କଲେ ଗୋବିନ୍ଦ
ଗୋପୀ ଯେ ନଦେଖି ହୋଇଲେ ଅନ୍ଧ
ଆମେ ନ ଜାଣୁଚି ଛନ୍ଦମନ୍ଦ ।
ମୟୂର, ଚକୁଆ, ସାରସ, ଚିଲ
ସବୁ ପକ୍ଷୀଯାକ କରିଛି ଠୁଳ
ବଗପକ୍ଷୀ ବାନା ବାନ୍ଧିଛି ମୁହିଁ
ମୋ ସମାନେ କ୍ଷେତ୍ରି କିଏ ସେ ନାହିଁ ।
ବ୍ରହ୍ମା ଦେଇଛନ୍ତି କଟି ଘଣ୍ଟିକି
ଗରୁଡ଼ ଅଣ୍ଡାକୁ ଦେଲେ ପେଟିଟି
ବିଷ୍ଣୁ ଦେଇଛନ୍ତି ଜପାମାଳକୁ
ଜପିଲେ ଜିଣିବି ଯମପୁରକୁ
ବ୍ରହ୍ମା ଦେଇଛନ୍ତି କାନ୍ଧେ ପଇତ
ଆଜ୍ଞା ଦେଲେ ଡାକିବି ମୋହ କାନ୍ତ ।
ବଜାରେ ବଜା
ଢୋଲିଆ ରତନ ବାଇଦ ବଜା
ଆହୁରି ବଜା
ନବଖଣ୍ଡ କରି ବାଇଦ ବଜା,
ମୁଁ ତ ପତର ସଉରା ରାଜା ।

## -ଯୋଗୀର ରୂପ ଲକ୍ଷଣ-

୧୨୮୦୧. ଝୁଲା ଭାର କାନ୍ଧ ପରେ,
ଲାଉ ତୁମ୍ୱା ଧରି କରେ,
ଚନ୍ଦନ ଟୋପା ମସ୍ତକେ
ଫୁଟି ଦିଶଇ

ଗଳାରେ ରୁଦ୍ରାକ୍ଷ ମାଳ,
କର୍ଣ୍ଣରେ ତମ୍ବା କୁଣ୍ଡଳ,
ରାମ ନାମ ଜପୁଛନ୍ତି
ନିରତେ ଧ୍ୟାଇ
ଯନ୍ତ୍ର ମନ୍ତ୍ର ବିଦ୍ୟା ଶେଷେ,
ଗୁଣି ବିଦ୍ୟା କିଛି ଆସେ,
ଦ୍ୱାରେ ଦ୍ୱାରେ ବୁଲି ସେହୁ
ଭିକ୍ଷା ମାଗଇ ।
ଜାଣଇ ପ୍ରୀତି ପାଠକୁ,
ନ ଛାଡ଼ଇ କପଟକୁ,
ଯୁବା ଜନଙ୍କର ମନ
ନିଏ ସେ ମୋହି ।
ବୟସ ଷୋଳ ସତର ତାକୁ ଅଟଇ ।



## ଦନାଇ ବଚନ

୧୨୮୦୨. ଝଡ଼ା ଆମ୍ବ ବା ବାଟ ବରକୋଳି,
ନଦୀ ମଧ୍ୟେ ଭାସିଯିବା ପଟାଳି (=କାଠ/ବାଉଁଶ ଭେଳାକୁ ବନ୍ଧିନଣରେ ଭସାଇବା) ।
ମହାପ୍ରସାଦ ଦାତା ଦେବା ଦାନ,
ସଦାବର୍ତ୍ତ (=ଦାନ-ଖୈରାତ୍)ରେ ଯେବଣ ଭୋଜନ ।
କୋଠ ପୋଖରୀରେ ଯେ ମାଛ ମରା,
ଅଠାକାଣ୍ଡିଆ(=ପକ୍ଷୀଧରା ଫାଶ)ରେ ଚଢ଼େଇ ଧରା ।
ହାଟ-ବାଟଜୁର(= ଉତ୍ସବରେ ରାଜା ହାଟ ଲୁଟ୍ ଆଦେଶ ଦେଇ ଏହାର କ୍ଷତିପୂରଣ କରୁଥିଲେ)
ଦନାଇ କହି,
ଯେତିକି ପାଇଲି ସେତିକି ସହି ।

୧୨୮୦୩. ଝଡ଼ା ମହୁଲ ଗୋଟିଆ,
ଚାରି ପୁଡ଼ିଆ ବଟୁଆ,
ଆଖି ଛଟକ ନାଟୁଆ,
ପଢ଼ାଣ ଗୁରୁ ଝେଟୁଆ (=ପିଲା ପାଠ ମନେ ରଖିବା ପର୍ଯ୍ୟନ୍ତ ଯେଉଁ ଶିକ୍ଷକ ଲାଗିଥାଏ ।),
ନିରଳସୀ କୋଠିଆ,
ମୋଟୀ କାଳୀଗାଈ ଛୋଟିଆ,
ଅତି ସରସ ବୋଲି କହଇ,
ଦନା ଭାଇ ମନ ମୋଟିଆ ।

୧୨୮୦୪. ଝଡ଼ିଲା ବିଆଳି (= ଆଶୁଧାନ) ନୁହଁଇ କଟା,
ଘରେ ଭାତ ନାହିଁ ପୁଅ ଛଅଟା ।
ଯାର ଘର ପାଖେ ଶିଆଳି (=ଭୂଇଁ ବରକୋଳି) ଲଟା
ପରିବା ନ ସିଝୁ ପକାଏ ଖଟା ।
ମନ୍ତର ନବୋଲି ଖାଲି ଠ' ଠା,
ହାତରେ ଲାଗିଲେ ପଣସ ଅଠା ।
ଅନ୍ଧାର ବାଟରେ ପଡ଼ିଲେ କଣ୍ଟା,
ଉଭା ସରୁ ନାରୀ ଅଣ୍ଟାଟା ମୋଟା ।
ଭାରୁଆ ବାଟରେ ହୋଇଲେ ଛୋଟା,
ଶାଳୀ ମେଳରେ ଯେ ଖେଳଇ ଥଟ୍ଟା ।
ଟୋକୀଙ୍କର ପିନ୍ଧା କାନିଟା ଫଟା,
ବୋଲେ ଦନାଇ କର୍ମେ ହଟହଟା ।

(କେତେକ କର୍ମରେ ପଡ଼ିଲେ ଲୋକେ ହଟହଟାର ସମ୍ମୁଖୀନ ହୁଅନ୍ତି ।)

୧୨୮୦୫. ଝାଡ଼ି କରି ନ ପକାଏ ଯେ ଶୋଇଲା ହେଂସ,
ପୁରାଣ ବୋଲଇ ଯେହୁ ନ କରୁଣ୍ଡୁ ଶେଷ,
ସଂକରାନ୍ତି ଅମେଇସାରେ (= ଅମାବାସ୍ୟା) ଯେ ବାନ୍ଧଇ କେଶ
ସ୍ୱାମୀ ବିଦେଶରେ ଥିଲେ ଯେ ହୁଅଇ ବେଶ

ବୈତରଣୀ ଦାନ ପରେ ମନ୍ଦିରେ ପ୍ରବେଶ
ଘରଦେବତା ନ ପୂଜି ବୁଲେ ଦେଶଦେଶ
ଅତି ଗୁଆଁର ବୋଲି ଦନାଇ ଭାଷ ।
(ସାମାଜିକ ଚଳଣୀ ଜ୍ଞାନ ଅଭାବୀ ଲୋକେ ମୂର୍ଖ ବୋଲି କୁହାଯାଇଛି । )

୧୨୮୦୬. ଝିଅ-ପୁଅ ସୁନ୍ଦର ପକ୍କା ଘର,
ଆଜ୍ଞାକାରୀ ନାରୀ, ଧନ ପ୍ରଚୁର,
ନିରୋଗ ଶରୀର, କାମିକା ଭୃତ୍ୟ,
ଅର୍ଥକାରୀ ବିଦ୍ୟା, ଅଖଳ ମିତ୍ର,
କ୍ଷୀରବତୀ ଧେନୁ, ବାଡ଼ି ବଗିଚା,
ହରି କଥାରେ ମନ ଥିବ ସଚ୍ଚା,
ଗୃହସ୍ଥ ଇଚ୍ଛଇ ସଦା ଏ ମାନ,
ଦନାଇ ଇଚ୍ଛଇ ନାମ ସ୍ମରଣ ।
(ଗୃହସ୍ଥ କ'ଣ ଚାହେଁ ସେଗୁଡ଼ିକରୁ କେତେକ ସୂଚିତ କରାଯାଇଛି ।)

୧୨୮୦୭. ଝିଅ ବିଭାକରି ନିଅନ୍ତି ଧନ,
ଝଗଡ଼ି ହୋଇଣ ଯେବଣ ଜନ,
ଝିଙ୍କିଣ ନିଅଇ ଅଳପ ଧନ,
କହେ ଦନାଇ ପ୍ରପଞ୍ଚମାନ ।
(କନ୍ୟା ଦାନ କରି ଜ୍ୱାଇଁଠାରୁ ପଣ ନେବାର ଲଜ୍ୟା ଓ ନିନ୍ଦାକାରକ ।)

୧୨୮୦୮. ଝିଅ ହୋଇ ଯେବେ ପକାଏ
ବାପ ଘରର ନାଆଁ,
ଧୋବା ଭଣ୍ଡାରୀ ନ ଥାଇଣ
ଯେଉଁ ଗହଳି ଗାଆଁ,
ଡାହାଣିଆକୁ (=ଡାହାଣରେ ଯୋଚା ହୋଇଥିବା ବଳଦ ବାଆଁରେ ଚାଲେ ନାହିଁ )ମାଗିଆଣି
ଯେହୁ ଯୋଚଇ ବାଆଁ,
ପର କଳିରେ ପଶଇ ଯେ
ଯାଇ ଆପଣା ଛାଆଁ,

ବୋଲେ ଦନାଇ ହଇରାଣ
ଆଗ ପଛକୁ ଧାଆଁ ।

୧୨୮୦୯. ଝିପିଝିପି ହୋଇଣ ବରଷା
ସେ ଯେଉଁ ପାଳକ,
ପରପୁଅକୁ ପୋଷିଆ ଆଣି
ସେ ଯେଉଁ ବାଳକ,
ଭାତ ନଥାଇ ତୋରାଣି କଂସା
ସେ ଯେଉଁ ବେଳକ,
ମୁଠି କନଶିରି ଶାଗ ଖରଡ଼ା
ସେ ଯେଉଁ କାଳକ(=ଦୁର୍ଭିକ୍ଷ),
ନାମ ନ ଧରି ଦନାଇ ପିଅଇ
ସେ ଯେଉଁ ଚଳକ ।

୧୨୮୧୦. ଝୁଅ ଜନମ ପର ପାଇଁ,
ବୁଆର(= ବାପ) ପୁଅ ଘର ପାଇଁ,
ଆଷାଢ଼ ଚାଷ କର ପାଇଁ,
ଦଶମୂଳ ଯେ ଜର ପାଇଁ,
ଦନାଇ ପହଳି ତର (= ଅବକାଶ) ପାଇଁ ।



# ପ୍ରହେଳିକା, ପହଳି, ଢେଗ (ନାଆଁ ଦିଆ)

୧୨୮୧୧. ଝକମକି ପଥର, ତହିଁରେ ଅଛି ରାଜକୁମାର
ପାଞ୍ଚ ଲୋକ ନିଅନ୍ତି ପଚିଶ ଲୋକ ଢୋକନ୍ତି । ........ (ତବଲା, ହାତଆଙ୍ଗୁଳି)

୧୨୮୧୨. ଝଙ୍ଗି ଅଛି ମଙ୍ଗି ନାହିଁ, ଝିକି ରୋପିଲେ ଜୀଏ ନାହିଁ । .......... (ଛତୁ)

୧୨୮୧୩. ଝବର ଝାଲି ପାକଲା ତମେ
ଶୁଇଲକି ମୁଁ ଏକଲା । .........(ଲଙ୍କାମରିଚ, ହଳଦୀ । )

୧୨୮୧୪. ଝାଇଁକି ଝର, ତୁମ ରାଇଜରେ ନାହିଁକି ଖୁର । ....... (ମେଣ୍ଢା, ଭାଲୁ)
କାଦୁଅ ରାଣୀ ତୁମ ରାଇଜରେ ନାହିଁକି ପାଣି ? .......... (କଙ୍କଡ଼ା)
ପ୍ରଥମ ପ୍ରଶ୍ନରେ ଭାଲୁକୁ ବା ମେଣ୍ଢାକୁ କଙ୍କଡ଼ା ପଚାରୁଛି । ''ତୁମର ଏତେ ବାଳ କାହିଁକି ? ତୁମ ରାଇଜରେ ଖୁର ନାହିଁକି ?'' ଏ ପ୍ରଶ୍ନରେ ଭାଲୁ ବା ମେଣ୍ଢା କହୁଛନ୍ତି, ''ତୁମ ରାଇଜରେ ପାଣି ନାହିଁକି ?''

୧୨୮୧୫. ଝାଇଁ ଝାଇଁ, ମୁଣ୍ଡରେ ବାଳ ନାହିଁ । .......... (କଂସା)

୧୨୮୧୬. ଝାଡ଼କୁ ଯାଇଥିଲି ଝାଡ଼ ଚାରିପାଖ ଓଳେଇ ଦେଲି
ଝାଡୁଆଣୀ ମୋ ମାଆ
ସୁନ୍ଦର କଳା ଦେଇ ଆସିଲି, ଦେହଯାକ ଘାଆ । ...... (ବିଣାକାଠିବା ବିଣାକାଠ)

୧୨୮୧୭. ଝାମ୍ପୁଡ଼ି ଭାଲୁ,
ଦିକଡ଼ ମୁଣ୍ଡେଇ ଛାଲୁ ଛାଲୁ । ...........( ଘର )

୧୨୮୧୮. ଝାଲର ଦେଖାଇ କରଇ ନୃତ୍ୟ
କଳା ମେଘ ଦେଖି ମୟୂରୀ କାନ୍ତ
ସେବେଳେ ଖସଇ ତାହାର ରେତ
କିଏ ଭକ୍ଷି ଗର୍ଭ କରେ ଉଦିତ । .......... (ମୟୂରୀ)

୧୨୮୧୯. ଝିଅ ଆସୁଛି, ବୋହୂ ଯାଉଛି । .......... (ଦୁର୍ଗାଷ୍ଟମୀ)

୧୨୮୨୦. ଝିକିଲେ ଜିଇଁବ, ରୋପିଲେ ମରିବ ।
..........(ପିକା,ବିଡ଼ି,ଗଞ୍ଜେଇ ଚିଲମ, ସିଗାରେଟ୍ )

୧୨୮୨୧. ଝିତିରିମୁଣ୍ଡୀ ହଗି ବସିଛି
ପାତାଳକୁ ଲେଣ୍ଡ ପଡ଼ିଛି । ............(ମୂଳା)

୧୨୮୨୨. ଝୁଲ ଘୋନା, ଗୋଡ଼ରେ ଠେସୁଛି ପଇସା ପରା
ପିଇ ପାଣି, ଖରାରେ ବସିଛି ଧରଣୀ ରାଣୀ ।.......... (ଗୋଡ଼ ତେଣ୍ଡା)

# ରୁଢ଼ିପ୍ରୟୋଗ

୧୨୮୨୩. ଝକ୍‌ଝକିଆ - କଳିହୁଡ଼ା/ଦରଦାମରେ ଝକଝକ ଲଗାଉଥିବା/ ମୂଳଚାଲରେ ନଛୋଡ଼ ବନ୍ଧା ବ୍ୟକ୍ତି/ ଝଟକୁଥିବା ।

୧୨୮୨୪. ଝକଦେହା - ଉଜ୍ଜଳ ଦେହକାନ୍ତିବିଶିଷ୍ଟା ସ୍ତ୍ରୀ ।

୧୨୮୨୫. ଝକମାରି/ଝଅକମାରି - ଭୁଲ/ ଦୋଷ/ନିଜକୃତ ଅପରାଧ /ଅବିବେଚନାର କାର୍ଯ୍ୟ/ନିର୍ବୋଧତା/ ବୋକାମି /ଅନୁତାପ / ନାଚାରୀ/ ଅନ୍ୟ ଉପାୟ ନଥିବା ଅବସ୍ଥା /ନିଜକୃତ ଦୋଷ ବା ତ୍ରୁଟିର ସ୍ୱୀକାର /ତ୍ରୁଟିଯୁକ୍ତ/ ଅବିବେଚକ/ ବିଚାରଶୂନ୍ୟ କର୍ମ ।

୧୨୮୨୬. ଝକମାରିବା - ବୋକାମି କରିବା/ସମୟ ବୃଥା ନଷ୍ଟ କରିବା ।/ ନିଜର ତ୍ରୁଟି ସ୍ୱୀକାର କରିବା /ନିଜ ଦୋଷ ବା ଅପରାଧ ନିମନ୍ତେ ଅନୁତାପ କରିବା /ନିଜର କାର୍ଯ୍ୟ ବା କଥାକୁ ପ୍ରତ୍ୟାଖ୍ୟାନ କରିବା ।

୧୨୮୨୭. ଝକାଝକ୍ - ଝିଙ୍କାଝିଙ୍କି/ ଭିଡ଼ାଭିଡ଼ି/ ଟଣାଓଟରା/ ତୁମୁଳ ବିବାଦ/ ଫଉଜଦାରୀ/ଉତ୍ତେଜନାପୂର୍ଣ୍ଣ ଗଣ୍ଡଗୋଳ/ କଳିକଜିଆ ବା ଉଚ୍ଚସ୍ୱରରେ ବିବାଦ /ମଲ୍‌ଚାଲବେଳେ ବାଦ ପ୍ରତିବାଦ ଦରଦାମ୍ ତୁଟାଇବା ବେଳେ ଲାଗିବା ତର୍କ ବିତର୍କ /ବିବାଦ /ବହୁଳ/ ପ୍ରଚୁର ।

୧୨୮୨୮. ଝକାଝକି - ଜାକଜମକପୂର୍ଣ୍ଣ/ ଆଡ଼ମ୍ବରମୟ ।

୧୨୮୨୯. ଝଗଡ଼ଝାଟି /ଝଗଡ଼ାଝାଟ - କଳିତକରାଳ/ କଳିକଜିଆ ।

୧୨୮୩୦. ଝଗଡ଼ାଝାଟିଆ - କଳିହୁଡ଼ା/ଝଗଡ଼ା/ କଳିକଜିଆ ।

୧୨୮୩୧. ଝଙ୍ଝଙ୍ - ପବନ ବହିବା ଶବ୍ଦ ।

୧୨୮୩୨. ଝଙ୍କାଝଙ୍କ୍ - ଟଣାଓଟରା/ ଟଣାଓଟରା ହୋଇ /ପ୍ରଚୁର/ପ୍ରଚୁର ପରିମାଣରେ ।

୧୨୮୩୩. ଝଙ୍କାଝଙ୍କି - ଟଣାଓଟରା ।

୧୨୮୩୪. ଝଙ୍କାଝୋର - ନିଶାରେ ବିଭୋର ।

୧୨୮୩୫. ଝଙ୍କା ମାରିବା - ଝାମ୍ପୁଲା ହୋଇ ବଢ଼ିବା ।

୧୨୮୩୬. ଝଜକି ହେବା - ଧନ୍ଦି ହେବା ।

୧୨୮୩୭. ଝର୍ଝରା - ବାରନାରୀ/ବେଶ୍ୟା ।

୧୨୮୩୮. ଝଟଝଟ - ଚକଚକିଆ ।

୧୨୮୩୯. ଝଟଝଟି - ଉଷା, ଭୋର୍ ।

୧୨୮୪୦. ଝଟଝଟିଆ - ବଢ଼ିଭୋର /ତରବରିଆ / ଦୀପ୍ତିମାନ ।

୧୨୮୪୧. ଝଟପଟ୍ - ତ୍ୱରିତ ।

୧୨୮୪୨. ଝଟ୍‌ପରା - ଅତିଶୀଘ୍ର ।

୧୨୮୪୩. ଝଟପୋଶି - ତରବରିଆ ।

୧୨୮୪୪. ଝଟାଝଟ୍/ଝଟ୍‌ଝଟ୍ - ଉଜ୍ଜ୍ୱଳ/ ଦୀପ୍ତିମାନ /ଅତି ଶୀଘ୍ର/ତୁରନ୍ତ ।

୧୨୮୪୫. ଝଟାପଟା - କଳିକଜିଆ/ଧରାପରା/ ପରସ୍ପର ମରାମରି/ ପରସ୍ପର ଗୁଡ଼େଇ ତୁଡ଼େଇ ହୋଇ ଲାଗିଥିବା ।

୧୨୮୪୬. ଝଡ଼ତିପଡ଼ତି - ପଣ୍ୟଦ୍ରବ୍ୟ ଓ ଶସ୍ୟାଦି ସ୍ଥାନାନ୍ତରିତ କଲାବେଳେ ଯାହା ତଳେ ପଡ଼ି ନଷ୍ଟ ହୋଇଯାଏ ।

୧୨୮୪୭. ଝଡ଼ାଝପଟ - ସଫାସୁତୁରା, ଝଡ଼ାଝଡ଼ି, ଦଉଡ଼ ।

୧୨୮୪୮. ଝଡ଼ାବେସର - ସିଝା ମାଛରୁ କଣ୍ଟାଯାକ ବାହାର କରାଯାଇ ତହିଁରେ ବଟା ସୋରିଷ ଦେଇ କରାଯିବା ଏକପ୍ରକାର ତରକାରୀ ।

୧୨୮୪୯. ଝଡ଼ା ମହୁର - ଯେଉଁ ମହୁର ତିଅଣରୁ ମାଛକଣ୍ଟା କଢ଼ା ହୋଇଥାଏ ।

୧୨୮୫୦. ଝପଟାଝପଟି - ଗୋଡ଼ିଆଗୋଡ଼ି ।

୧୨୮୫୧. ଝମାଝମ୍ - ଧମାଧମ ।

୧୨୮୫୨. ଝମ୍ପଲମ୍ପ କରିବା - ଡେଇଁବା ଓ କୁଦିବା, ମୁହଁ ହାତ ହଲାଇ ଆସ୍ଫାଳନ କରିବା ।

୧୨୮୫୩. ଝମ୍ପାଝାଲର - ବସ୍ତ୍ରାଦିର ଅଳଙ୍କାର ।

୧୨୮୫୪. ଝରଝରା - ଝର୍ଝରା/ବେଶ୍ୟା/ଏକପ୍ରକାର ବାଦ୍ୟ ।

୧୨୮୫୫. ଝଁକିଯିବା - ଠକାମିରେ ପଡ଼ିବା ।

୧୨୮୫୬. ଝାଇଁକିଝାଇଁ - ଘଣ୍ଟା ପିଟିବା ତାଳ ।

୨୧୮୫୭. ଝାଇଁପଖାଳ - ଗରମ ପଖାଳ/ ଚାଇଁ ପଖାଳ/ସଚ ପଖାଳ ।

୧୨୮୫୮. ଝାଇଁ ପାଣି - ଯେଉଁ ପାଣିରେ ତାତିଲା ଲୁହା ଓ ଖଡ଼ିକା ଆଦି ପୁରାଇ ଗରମ କରାଯାଏ ।

୧୨୮୫୯. ଝାଇଁମରା - ଅଂଶୁଘାତ/ଉତ୍ତାପ ଜନିତ ଅତ୍ୟଧିକ କ୍ଳାନ୍ତି ।

୧୨୮୬୦. ଝାଇଁ ମାରିବା - ବହୁକାଳ ଏକ ଅବସ୍ଥାରେ ବସିବା ଯୋଗୁଁ ଶରୀରର କୌଣସି ଅଙ୍ଗରେ ଯେଉଁ ଝିମିଝିମି ଅନୁଭୂତ ହୁଏ / ଝୋଲା ମାରିବା ।

୧୨୮୬୧. ଝାଇଁ ମୀନ - ଅତି ଛୋଟ ମାଛ ।

୧୨୮୬୨. ଝାଉଁ ନଡ଼ିଆ - ଖୁରୁଡ଼ ନଡ଼ିଆ ।

୧୨୮୬୩. ଝାଏଁ ମାର୍‌ବା - ଝୋଲା ମାରିବା ।

୧୨୮୬୪. ଝାଁକ୍ ଛଡ଼ାବା - ଗାଳି ବର୍ଷଣ କରିବା ।

୧୨୮୬୫. ଝାଙ୍କ ଛଡ଼େଇବା - କୌଣସି ବ୍ୟକ୍ତିକୁ ଅତିରିକ୍ତ ପରିଶ୍ରମ କରାଇ ଆକ୍ରାନ୍ତ କରାଇବା /କଳି ଆଦିର ହସ୍ତା ଉଠାଇବା। ।

୧୨୮୬୬. ଝାଙ୍କ ବାନ୍ଧିବା - ଦଳଭୁକ୍ତ ହୋଇ ରହିବା/ ଦଳ ବାନ୍ଧିବା ।

୧୨୮୬୭. ଝାଙ୍କି ମାରିବା - ଲୁଚିକରି ବାରମ୍ବାର ଚାହିଁବା/ଉଚ୍ଚ ସ୍ଥାନର ଅନ୍ତରାଳରୁ ଚାହିଁବା ।

୧୨୮୬୮. ଝାଙ୍କେଝାଙ୍କେ - ଦଳ ଦଳ ହୋଇ ।

୧୨୮୬୯. ଝାଟୁଆ ଗଦା - ଅଳିଆ ଗଦା/ଯେଉଁ ଅଳିଆମାନ ଗଦା କରାଯାଏ ।

୧୨୮୭୦. ଝାଡ଼ଗୁରୁଡ଼ି - ଛୋଟ ବନ୍ୟ ଆମ୍ବ ।

୧୨୮୭୧. ଝାଡ଼ମାଲି - ଡାଆଣୀ ଓ ଭୂତ ଛଡ଼ାଇବା ପାଇଁ ବ୍ୟବହୃତ ଗୁଣିବିଦ୍ୟା ।

୧୨୮୭୨. ଝାଡ଼ାକଇ - ହଇଜା/ ବିସୂଚିକା/ଝାଡ଼ାବାନ୍ତି ।

୧୨୮୭୩. ଝାଡ଼ାକଇଆ - ହଇଜା-ଆକ୍ରାନ୍ତ/ ଓଲାଉଠା ରୋଗାକ୍ରାନ୍ତ / 'ଓଲାଉଠାରେ ମର ବୋଲି' ଗାଳିଦେବା ।

୧୨୮୭୪. ଝାଡୁଆ ବ୍ରାହ୍ମଣ - ସମ୍ବଲପୁରବାସୀ ଆରଣ୍ୟକ ବ୍ରାହ୍ମଣ /କଥିତ ଅଛି - ଝାଡୁଆ ବ୍ରାହ୍ମଣମାନେ ସମ୍ବଲପୁରର ଆଦିମ ନିବାସୀ । ଓଡ଼ିଆ ବ୍ରାହ୍ମଣମାନେ ସମ୍ବଲପୁରକୁ ଆସିବା ପୂର୍ବରୁ ଏମାନେ ସମ୍ବଲପୁରର ସ୍ଥାୟୀ ଅଧିବାସୀ ହୋଇଥିଲେ । କେହି କେହି କହନ୍ତି ଯଯାତିକେଶରୀ କାନ୍ୟକୁବ୍ଜରୁ ଯେଉଁ ବ୍ରାହ୍ମଣମାନଙ୍କୁ ଅଣାଇଥିଲେ ଏମାନେ ସେମାନଙ୍କର ବଂଶଧର । ଏମାନେ ପ୍ରଥମେ ଓଡ଼ିଶାକୁ ଆସି ସମ୍ବଲପୁର ଅଞ୍ଚଳରେ ବସତି କରୁଥିଲେ । ପରେ ଯେଉଁ ବ୍ରାହ୍ମଣମାନେ ଉପକୂଳ ଅଞ୍ଚଳରୁ ଆସିଲେ ସେମାନେ ଆପଣାକୁ ଓଡ଼ିଆ ବ୍ରାହ୍ମଣ ଓ ପୂର୍ବାଗତବ୍ରାହ୍ମଣମାନଙ୍କୁ ଝାଡୁଆ ବ୍ରାହ୍ମଣ ବୋଲି କହିଲେ ।

ମତାନ୍ତରରେ ଝାଡୁଆ ବ୍ରାହ୍ମଣମାନେ ରାଜପୁତ ରାଜାମାନଙ୍କ ସାଙ୍ଗରେ ଉତ୍ତର ଭାରତରୁ ସମ୍ବଲପୁରକୁ ଆସିଥିଲେ । ସମ୍ବଲପୁର ଅଞ୍ଚଳ ପୂର୍ବେ ଜଙ୍ଗଲ ଥିବାରୁ ଏହି ଜଙ୍ଗଲ ବା ଝାଡ଼ ଶବ୍ଦ ଅନୁସାରେ ଏ ବ୍ରାହ୍ମଣମାନଙ୍କୁ 'ଝାଡୁଆ' ବୋଲାଯାଏ ।

୧୨୮୭୫. ଝାଡୁବର୍‌ଦାର୍ - ମେହେନ୍ତର ।

୧୨୮୭୬. ଝାନାକଇଆ - ଝାଡ଼ାରୋଗରେ ବା ଝାଡ଼ାବାନ୍ତିରେ ମରିବା ପାଇଁ ଗାଳି ।

୧୨୮୭୭. ଝାପ୍‌ଟାମାରିବା - ବର୍ଷା ଜୋରରେ ଛିଞ୍ଚଡ଼ା ମାରିବା ବା ଛାଟିବା ।

୧୨୮୭୮. ଝାମ ମାରିବା - ମୁଣ୍ଡ ବୁଲାଇବା/ ଝୋଲା ମାରିବା ।

୧୨୮୭୯. ଝାର୍‌ବିଲେଇ - ବଣବୁଆ/ କଟାସ ।

୧୨୮୮୦. ଝାଳବୁହା ଧନ /କଉଡ଼ି - କଠୋର ପରିଶ୍ରମଦ୍ୱାରା ଉପାର୍ଜିତ ଧନ ।

୧୨୮୮୧. ଝିଙ୍କରଘର - ଖପରଲୀ ଘର ।

୧୨୮୮୨. ଝିଟ୍‌କା ମାରିବା - ହଠାତ୍ କ୍ଷଣକାଳ ପାଇଁ ବଳପୂର୍ବକ ଝିଙ୍କିଦେଇ ପୁନର୍ବାର ଶିଥିଳ କରିଦେବା ।

୧୨୮୮୩. ଝିଣଝିଣିଆ - କଙ୍କି ।

୧୨୮୮୪. ଝିମେଇ ଝିମେଇ - ଅତି କ୍ଷୀଣଭାବରେ, ଧୀରେ ଧୀରେ ।

୧୨୮୮୫. ଝିଲିପିଲି ପେଞ୍ଚ - କୂଟବୁଦ୍ଧି ।

୧୨୮୮୬. ଝିଲିମିଲିକରି ଚାହିଁବା - ଆଖି ମିଟିମିଟି କରିବା/ ଅନବରତ ଆଖିର ପଲକକୁ ଉଠାଇବା ।

୧୨୮୮୭. ଝୁରାଭଜା - କଣ୍ଟା ବାହାର କରାଯାଇ ଚୂନା ଚୂନା ହୋଇ ଭଜା ହୋଇଥିବା ମାଛ ।

୧୨୮୮୮. ଝୁଲ୍‌ପୁଲ୍ - ବଡ଼ିସକାଳ, ଉଷା ।

୧୨୮୮୯. ଝୋଳଝୋଳ - ପାଣିପାଣିଆଁ (ବ୍ୟଞ୍ଜନାଦି)/ଯେଉଁ ତିଅଣରେ ଜଳର ଭାଗ ଅଧିକ ଥାଏ ।

୧୨୮୯୦. ଝୋଲମରା - ଅଚେତନ ଅବସ୍ଥା /ମୂର୍ଚ୍ଛା /ମଥାଭ୍ରମ ।

୧୨୮୯୧. ଝୋଲାମାରିବା - ଅଚେତନ ହେବା/ ମୁଣ୍ଡ ବୁଲାଇ ହେବା ଦୁର୍ବଳତା/ କ୍ଷୁଧା ବା ରୋଗଯୋଗୁଁ ମୂର୍ଚ୍ଛିତ ହେବା ।



# ପୁରୀବୋଲି

୧୨୮୯୨. ଝଡ଼ା/ଝାଡ଼ ଶୋଧ - ଝଡ଼ାଝଡ଼ି କରି ତନଖ୍।
୧୨୮୯୩. ଝଡ଼େଇ ନେଦା - ପିଷ୍ଟକ ବିଶେଷ /ଚଡ଼େଇ ନେଦା.
୧୨୮୯୪. ଝମ୍ପାଣ - ଉପରୁ ହଠାତ୍ ଆକ୍ରମଣ।
୧୨୮୯୫. ଝରି - ନଳଖଞ୍ଜା ଗଡ଼ୁ। ଝରିବା କ୍ରିୟାରୁ ନିଷ୍ପନ୍ନ ବିଶେଷ୍ୟ ପଦ।
୧୨୮୯୬. ଝଲକ - ଫାଳିକିଆ ସାୟା (ନାରୀଙ୍କ ଅନ୍ତର୍ବାସ ଭଳି) କୁଞ୍ଚ କୁଞ୍ଚ ହୋଇ ଏକ ରେଶମ ବସ୍ତ୍ର। ସାତଦିନ ପାଇଁ ସାତ ରଙ୍ଗର ଝଲକ ରହିଛି। ଶୀତଦିନେ ବ୍ୟବହୃତ ହୁଏ।
୧୨୮୯୭. ଝଲକ ବୋଳା - କୁଞ୍ଚ କୁଞ୍ଚ ହୋଇ ଏକ ସିଲ୍କ ବସ୍ତ୍ରର ଅଳଙ୍କରଣ।
୧୨୮୯୮. ଝାଁଟ୍ ଉଖାଡେ ଲାଖପତି - (ଭାଙ୍ଗ ପୁରୀ ଜୀବନଚର୍ଯ୍ୟାର ଅବିଚ୍ଛେଦ୍ୟ ଅଙ୍ଗ। ପୁରୀର ଜନଜୀବନରେ ଏହା କେବେଠାରୁ ତା' ଆସନ ଦୃଢ଼ କରିଛି ତାହା ନିରୂପଣ କରିବା କଠିନ। ଏହା ଏକ ଭାଙ୍ଗ ବୋଲି। ଏହି ପଦଟି ଧନିଲୋକ ପ୍ରତି ଏକ ତାଚ୍ଛଲ୍ୟ। କ୍ଷମତାସୀନ ବ୍ୟକ୍ତି ପ୍ରତି ଏକ ଶାଣିତ କଟାକ୍ଷ।)
୧୨୮୯୯. ଝାଡ଼ିବା - ଭର୍ତ୍ସନା କରିବା।
୧୨୯୦୦. ଝାମଝାଡ଼ା - ଆଡ଼ମ୍ବରପୂର୍ଣ୍ଣ।
୧୨୯୦୧. ଝାଲି ମଠାଣ - ଝଳେଇ, ମରାମତି।
୧୨୯୦୨. ଝୁମ୍ପା - ଶ୍ରୀମୁଖର ଚିବୁକ ଠାରୁ ନାସାଗ୍ର ପର୍ଯ୍ୟନ୍ତ ଲମ୍ବିତ ଏକ ପୁଷ୍ପଭୂଷା।
୧୨୯୦୩. ଝୋବା - ଠାକୁରଙ୍କ କଟୀଦେଶ ନିମନ୍ତେ ଏକ ଅଳଙ୍କାର।
୧୨୯୦୪. ଝୋଲିଲୁଗା - ଏକ ସୂତାକନା। ପ୍ରାଚୀନ ଉତ୍କଳ ଓ ବିବିଧରତ୍ନ ସଂଗ୍ରହ ଆଦିରେ ଜଗନ୍ନାଥଙ୍କ ପୂଜାବିଧି ପ୍ରସଙ୍ଗରେ ଏହି ଶବ୍ଦଟି ଆସେ। ଶ୍ରୀମୁଖ ସିଂହାରୀ ସୁନା କୋପରାରେ କର୍ପୂର ମିଶ୍ରିତ ଜଳରେ ଝୋଲିଲୁଗା ବୁଡ଼ାଇ ଶ୍ରୀମୁଖମାନ ପୋଛି ଶଙ୍ଖ, କଳା, ହିଙ୍ଗୁଳ ଆଦି ରଙ୍ଗ ଶ୍ରୀମୁଖରେ ଲାଗି କରନ୍ତି।
୧୨୯୦୫. ଝୋଲି ଲୁଗା - ବସ୍ତ୍ର ବିଶେଷ।





ମୂଲ୍ୟ -୪୫/- ଟଙ୍କା
୨୦ଟି ସଚିତ୍ର ହସକୁରା ଗଳ୍ପ ।




ମୂଲ୍ୟ -୩୨/- ଟଙ୍କା
ଲୋଧାମାନଙ୍କ ସମ୍ପର୍କରେ ସୂଚନା
ସହ ୯ଟି ସଚିତ୍ର ମୌଳିକ ଗଳ୍ପ
ସଙ୍କଳନ ।



## ବିନୋଦବିହାରୀ ଦାସ

୫୦ ବର୍ଷ ଧରି ଜଣେ ଆଡ୍‌ଭୋକେଟ୍ ତଥା ଟିକସ ଆଇନ୍ ପରାମର୍ଶଦାତା ଭାବରେ ପ୍ରତିଷ୍ଠିତ । ସେ ଓଡ଼ିଶା ରାଜ୍ୟ ବାର୍ କାଉନ୍‌ସିଲ୍‌ର ପ୍ରାକ୍ତନ ଉପସଭାପତି, ନିଖିଳ ଭାରତ ଟିକସ ଆଇନ୍‌ଜୀବୀ ମହାସଙ୍ଘର ଜାତୀୟ କାର୍ଯ୍ୟକାରୀ କମିଟି ଓ ଆନ୍ତର୍ଜାତିକ ବାର୍ ଆସୋସିଏସନ୍‌ର ସଦସ୍ୟ ଅଛନ୍ତି ।

ଆନ୍ତର୍ଜାତିକ ଆଇନ୍‌ଜୀବୀ ସମ୍ମିଳନୀମାନଙ୍କରେ ସେ ପାଞ୍ଚ ଥର ଭାରତୀୟ ପ୍ରତିନିଧି ଦଳର ନେତୃତ୍ୱ ନେଇ ଆଇନ୍ ଅନୁଧାନ କାର୍ଯ୍ୟରେ ୟୁରୋପ୍, ବ୍ରିଟେନ୍, ଆମେରିକା, କାନାଡ଼ା ଆଦି ଦେଶ ମହାଦେଶ ଗସ୍ତ କରିଛନ୍ତି ।

ବିପିନବିହାରୀ ହାଇସ୍କୁଲ୍, ବିପିନବିହାରୀ ଏଜୁକେସନାଲ୍ ଆଣ୍ଡ ପବ୍ଲିକ୍ ଚାରିଟେବଲ୍ ଟ୍ରଷ୍ଟ (ବାଗଲପୁର), ତ୍ରିଭାଷୀ ଏକତା ସ୍କୁଲ୍ (ବାରିପଦା), ଗୋବିନ୍ଦ ନାରାୟଣ ଦାତବ୍ୟ ଟ୍ରଷ୍ଟ୍ (ବାଲେଶ୍ୱର)ର ପ୍ରତିଷ୍ଠାତା ।

ସେ ଜଣେ ସୁ-ଶିକ୍ଷକ, ମଞ୍ଚଶିଳ୍ପୀ, ସଂସ୍କୃତି ସଂପନ୍ନ ସାହିତ୍ୟ ସାଧକ ଓ ଗବେଷକ ଏବଂ ବହୁ ଗ୍ରନ୍ଥର ରଚୟିତା ।

ସାହିତ୍ୟ କୃତି ପାଇଁ ବହୁ ସାଂସ୍କୃତିକ ସଂଗଠନ ଦ୍ୱାରା ସେ ସମ୍ମାନିତ ।

-ପ୍ରକାଶକ